# ସୂଚୀ

# ଉପକ୍ରମଣିକା

ମୁଁ ଯେ ମୋର କାହାଣୀ ଲେଖିବାକୁ ବସିଛି ତଦ୍ଦ୍ୱାରା ଯେ କାହାର କିଛି ଶିଖିବାର ଅଛି, ସେ ଉଦ୍ଦେଶ୍ୟରେ ଲେଖୁନାହିଁ । ଗଳ୍ପ ଉପନ୍ୟାସ ପରି ଲେଖିବାକୁ ଇଚ୍ଛା ହୁଏ କିଛି ଗୋଟାଏ କାହାଣୀ ଯେଉଁଥିରେ ଉନ୍ମାଦନା ଥିବ, ଆଶା ଥିବ, ଆକାଙ୍‌କ୍ଷା ଥିବ, ହତାଶ ଓ ନୈରାଶ୍ୟ ଥିବ, ପ୍ରେମ ଓ ବିରହ ଥିବ, ବାତ୍ସଲ୍ୟ ଓ ତ୍ୟାଗ ଥିବ, ଯାହା ପଢ଼ିଲେ ମନ ଶିହରି ଉଠିବ, ପଢ଼ିଲାଠାରୁ ଉଠିବାକୁ ମନହେବନି । ଶେଷରେ ଯାହା ପଢ଼ିସାରି କିଛି ଗୋଟାଏ ଶିକ୍ଷା ହେଲା ବୋଲି ମନେହେବ ଏବଂ ବୃଥାରେ ସମୟ ନଷ୍ଟ ହେଲା ବୋଲି ଭାବିବାକୁ ହେବ ନାହିଁ । କିନ୍ତୁ ଅନେକ ସମୟରେ ମନେହୁଏ ଏତେ କଳ୍ପନାରେ ସମୟ ନଷ୍ଟ କରି ଲାଭ କଣ ? ସତ ମିଛ ଯୋଡ଼ି କିଂଭୂତକିମାକାର ଗୋଟିଏ ରୂପ ଗଢ଼ିବା ଆବଶ୍ୟକ କଣ, ଅଙ୍ଗେ ତ ଯାହା ନିଭେଇଛି ତାକୁ ଲେଖିଲେ କଳ୍ପନାଠୁ ବଳିଯିବ । ଏଥିରେ ଅହମିକା ନାହିଁ କି ପ୍ରୌଢ଼ି ନାହିଁ । ଅଛି ଜୀବନର ପୁରୁଣା ପୃଷ୍ଠା ଓଲଟାଇବାର ଗୋଟିଏ ଆନନ୍ଦ । ଅନ୍ୟମାନଙ୍କର ଏଥିରୁ କିଛି ଆନନ୍ଦ ବା ଶିକ୍ଷା ହେବ କି ନାହିଁ କହିପାରିବି ନାହିଁ, କିନ୍ତୁ ନିଜର ଆନନ୍ଦ ସକାଶେ ଲେଖିଛି ଏବଂ ଆଜିକାଲିକାର କର୍ମମୟ ଜୀବନରେ ପାଠକମାନେ ଯେପରି ମନେ ନ କରନ୍ତି, ଏହା ପଢ଼ି ସେମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ ହେଲା ।

ଗୋଦାବରୀଶ ବାବୁଙ୍କ ଜୀବନୀ ମୋତେ ମଧ୍ୟ ଏହା ଲେଖିବାରେ ବହୁତ ଉତ୍ସାହ ଦେଇଛି । ତାଙ୍କ ଲେଖାର ପରିପାଟୀ ଓ ସାବଲୀଳତା ଏଥିରେ ନାହିଁ । ତାଙ୍କର ମହନୀୟତା, ସ୍ୱାର୍ଥତ୍ୟାଗ, ଦେଶସେବା ଏବଂ ଦେଶ ସକାଶେ ଜୀବନ ଉତ୍ସର୍ଗ ଏଠାରେ ନାହିଁ । ତାଙ୍କ ସଙ୍ଗେ ଏହି ନଗଣ୍ୟର ତୁଳନା ହୋଇ ନ ପାରେ । ତେବେ ତାଙ୍କ ଜୀବନୀ ସଙ୍ଗେ ମୋର କେତୋଟି ସାମଞ୍ଜସ୍ୟ ଅଛି; ଯଥା—ବାଲ୍ୟକାଳୀନ ଦାରିଦ୍ର୍ୟ, କିଶୋର ବୟସରେ ମାଟ୍ରିକ୍ୟୁଲେଶନ ପଢ଼ିବା ଅବସ୍ଥାରେ ପିତାମାତା ଉଭୟଙ୍କର ବିୟୋଗ ଏବଂ ସେହି ବୟସରୁ ପାଠ ପଢ଼ିବା ସାଙ୍ଗେ ସାଙ୍ଗେ କୁଟୁମ୍ବ ପରିପୋଷଣର ଭାର । ତାଙ୍କର ଥିଲା ପ୍ରତିଭା ଯାହା

ବଳରେ ସେ ପଢ଼ାରେ ବେଶୀ ପରିଶ୍ରମ ନ କରି ପିଲାଙ୍କୁ ଦେଶସେବାରେ ବେଶୀ ସମୟ ଦେଉଥିଲେ । କିନ୍ତୁ ଏ ହତଭାଗ୍ୟ ଦାରିଦ୍ର୍ୟର କଷାଘାତରୁ ଗୋଟିଏ କଥା ଶିଖିଥିଲି ଯେ କଠୋର ପରିଶ୍ରମ କରି ନିଜ ଗୋଡ଼ରେ ନିଜେ ଠିଆ ନ ହେଲେ ତାକୁ ସାହାଯ୍ୟ କରିବାକୁ କେହି ନାହାଁନ୍ତି । ଯାତ୍ରା, ପର୍ବ, ନାଟ ତାମସାରେ ବଡ଼ ବଡ଼ ଲୋକେ ଆଗରେ ବସିଥିବାବେଳେ ଏ ଅକିଞ୍ଚନ ପଛରେ ଠେଲାପେଲା ହୋଇ ଠିଆହୋଇ ଉଙ୍କିମାରି ଦେଖିବାକୁ କେବେ ପସନ୍ଦ କରୁ ନ ଥିଲି ଏବଂ ଭାବୁଥିଲି କଠୋର ପରିଶ୍ରମ କରି ସମାଜରେ ନିଜର ପ୍ରତିଷ୍ଠା ଲାଭ କଲାପରେ ଯାଇ ଯାତ୍ରା ନାଟ ଦେଖିବି । ତେଣୁ ଗୋଦାବରୀଶ ବାବୁ ପ୍ରତିଭାଶାଳୀ ଥିଲାବେଳେ ମୁଁ ଥିଲି ଘୋଷବନ୍ତ ବଳବନ୍ତ । ସେ ସ୍ୱାର୍ଥତ୍ୟାଗୀ ଥିଲାବେଳେ ମୁଁ ଥିଲି ସ୍ୱାର୍ଥାନ୍ୱେଷୀ । ଦେଶମାନ୍ୟ ଗୋପବନ୍ଧୁବାବୁଙ୍କ ସଂସର୍ଗରେ ଆସି ନ ଥିଲେ ତାଙ୍କର ଜୀବନ ଯେ ମୋର ମାର୍ଗରେ ଗଲା ନ ଥାନ୍ତା କହିହେବ ନାହିଁ । ଅବସ୍ଥାଚକ୍ରରେ କୁହ ବା ନିୟତିର ଇଙ୍ଗିତକ୍ରମେ କୁହ ଆକସ୍ମିକ ଭାବରେ ମନୁଷ୍ୟର ଜୀବନଧାରା ନିୟନ୍ତ୍ରିତ ହୁଏ । ଗୋଦାବରୀଶବାବୁଙ୍କ ଜନ୍ମସ୍ଥଳୀ ବାଣପୁରରେ ଦୁଇବର୍ଷ ରହି ମାଇନର ପଢ଼ିଥିବାରୁ ଏବଂ ତାଙ୍କର ସହକର୍ମୀ ଶ୍ରୀଯୁକ୍ତ ରଘୁନାଥ ମହାପାତ୍ରଙ୍କର ଶିଷ୍ୟ ହୋଇଥିବାରୁ ତାଙ୍କର ଜୀବନର ମାର୍ଗ ପିଲାଦିନୁ ମୋର ଜୀବନ ଉପରେ ବହୁତ ପ୍ରଭାବ ପକାଇଛି । ଯେଉଁମାନେ ଯୁଗପ୍ରବର୍ତ୍ତକ ସେମାନଙ୍କ ସମୟରେ ଯେତେ ଲୋକ ଜନ୍ମଲାଭ କରିବେ ତାଙ୍କ ପ୍ରଭାବରୁ ମୁକ୍ତ ହୋଇପାରିବେ ନାହିଁ । ଯେପରି କବିବର ରାଧାନାଥଙ୍କ ଯୁଗରେ ଏପରି କେହି କବି ନାହିଁ ଯେ କି ତାଙ୍କ ଦ୍ୱାରା ପ୍ରଭାବିତ ହୋଇନାହାଁନ୍ତି । କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ବା ରବୀନ୍ଦ୍ରନାଥଙ୍କ ସମୟରେ ଏପରି କେହି କବି ବା ଲେଖକ ନ ଥିଲେ ଯେ କି ତାଙ୍କ ପ୍ରଭାବରୁ ମୁକ୍ତ । ତେଣୁ ଅନ୍ତତଃ ବାଣପୁର ଏବଂ ତତ୍‌ସଂଲଗ୍ନ ଇଲାକାର ସମସ୍ତ ଛାତ୍ର ଗୋଦାବରୀଶ ବାବୁଙ୍କର ପ୍ରତିଭା ଓ ଆଲୋକରେ ଯେ ପ୍ରଭାବିତ ହୋଇଥିଲେ ଏଥିରେ ସନ୍ଦେହ ନାହିଁ । □□□

## ଜନ୍ମସ୍ଥାନ

ଚିଲିକା ମଧ୍ୟରେ ମାଲୁଦ ପ୍ରଗଣା ଅନ୍ତର୍ଗତ ବୁର୍ଡ଼ୀବର (ବର୍ତ୍ତମାନ ନାମ ବୁଢ଼ିବର) ନାମରେ ଗୋଟିଏ ଅଜ୍ଞାତ କ୍ଷୁଦ୍ର ପଲ୍ଲୀରେ ମୋର ଜନ୍ମ । ଏହା ହେଉଛି ସ୍ୱନାମଧନ୍ୟ କବି ଡକ୍ଟର ମାୟାଧର ମାନସିଂହଙ୍କ ଜନ୍ମସ୍ଥାନ ନନ୍ଦଳା ଗ୍ରାମଠାରୁ ପ୍ରାୟ ୫ ମାଇଲ । ତାଙ୍କ ଜାଗାଟି ବାଲୁକାମୟ ସମୁଦ୍ରକୂଳରେ ଅବସ୍ଥିତ । ସେ ସେହି ମରୁଭୂମିରୁ ଜନ୍ମଲାଭ କରି ଭବିଷ୍ୟତ ଜୀବନରେ ସମଗ୍ର ଓଡ଼ିଶାକୁ ପ୍ରେମନିର୍ଝରିଣୀ ଦ୍ୱାରା ପ୍ଲାବିତ କରିଥିଲେ । ସେଥିରୁ ଅନେକ ସମୟରେ ମନେହୁଏ ନନ୍ଦଳା ଯେପରି ନନ୍ଦରାଜାଙ୍କ ନଗରୀ ଏବଂ ପ୍ରେମମୟ ଭଗବାନ ଶ୍ରୀକୃଷ୍ଣଙ୍କ କଳା ନେଇ ଯେପରି ମାୟାଧର ଜନ୍ମ ଲାଭ କରିଥିଲେ । ସେ ମୋର ପିଲାଦିନରୁ ସହପାଠୀ ଓ ସାଙ୍ଗ । ମୋଠାରୁ ତାଙ୍କର ଅବସ୍ଥା ଆଉ ଟିକିଏ ସ୍ୱଚ୍ଛଳ ଥିଲେ ମଧ୍ୟ ସେ ଅଭାବର ଉପରେ ନ ଥିଲେ ଏବଂ ଆମେ ଉଭୟେ ଏହି ଅଭାବ ମଧ୍ୟରେ କଲେଜର ଶେଷ ପଢ଼ା ପର୍ଯ୍ୟନ୍ତ ଲଢ଼େଇ କରି ଆସିଛୁ ।

ମୋର ଜନ୍ମ ୧୯୦୭ ମସିହା ଜୁଲାଇରେ । ପିତା ସାମାନ୍ୟ ପ୍ରାଥମିକ ସ୍କୁଲ ଶିକ୍ଷକ । ଜମି ଦୁଇ ଏକର ମଧ୍ୟରେ; କିନ୍ତୁ ସେତେବେଳେ ଲୋକର ପ୍ରାଧାନ୍ୟ ଧନ ସମ୍ପତ୍ତିର ମାପକାଠିରେ ବିଚାର ହେଉ ନଥିଲା । ଏହି ଗାଁରେ ଅନ୍ୟ ଧନାଢ୍ୟ ଲୋକମାନେ ଥିଲେ । କିନ୍ତୁ ସେମାନଙ୍କ ଅପେକ୍ଷା ଆମ ବଂଶର ପଦମର୍ଯ୍ୟାଦା ବହୁତ ବେଶୀ ଥିଲା । ଆମମାନଙ୍କର ପ୍ରଥମ ବାସସ୍ଥାନ ଥିଲା ଖଲ୍ଲିକୋଟ ଷ୍ଟେସନ ନିକଟସ୍ଥ ଓ ବର୍ତ୍ତମାନ ଜାତୀୟ ରାଜପଥର ଛକପାଖରେ ଥିବା ଲୋଂଘର ଶ୍ରୀକୃଷ୍ଣଶରଣପୁର ଶାସନ । ଏହା ପାଖରେ ସ୍ୱନାମଧନ୍ୟ ସିଦ୍ଧେଶ୍ୱର ମହାପ୍ରଭୁଙ୍କ ବିଜେସ୍ଥଳୀ, ଯେଉଁଠାରେ କି ମୁଁ ଏହି ପବିତ୍ରତା ଯୋଗୁଁ ଏବଂ ଜାଗାଟିର ମନୋରମ ପରିବେଶ ଓ ଜଳବାୟୁ ଯୋଗୁଁ ଗୋଟିଏ ମଫସଲ ଘର କରିଛି । ବାର ଏକର ଖଣ୍ଡେ ଜମି ନେଇ ଗୋଟିଏ ଫାର୍ମ ମଧ୍ୟ କରିଛି । ଏହି ଜାଗାଟି ନେବାର ଆଜକୁ ୩୦ ବର୍ଷ ହେଲାଣି ଏବଂ ଏଥିରେ ବହୁତ ପଇସା ଖର୍ଚ୍ଚ କଲିଣି, କିଛି ଆଖିଦୃଷ୍ଟିଆ ଲାଭ ହୋଇନାହିଁ । କିନ୍ତୁ ସେଠାକୁ ଗଲେ ମନରେ ନିଜର ପୂର୍ବ ପୁରୁଷର ସ୍ମୃତିଯୋଗୁଁ ଏବଂ ମନୋରମ ଅବସ୍ଥିତି ଓ ଜଳବାୟୁ ଯୋଗୁଁ ଏକ ଅପୂର୍ବ ଆନନ୍ଦ ଜାଗରୂକ ହୁଏ । ସେଠାରେ ପ୍ରତି ମାସରେ ୪/୫ ଦିନ ନିରୋଳାରେ କଟାଇବା ବଡ଼ ପ୍ରୀତିକର ହୁଏ । ଏହି ଜାଗାରେ କିଛି ଜମି ନେଇ ଗୋଟିଏ କୁଟୀର କରିବାର ଆଉ ଗୋଟିଏ କାରଣ ହେଉଛି ମୋର ଜନ୍ମସ୍ଥାନ

ବୁଦ୍ଧିବରକୁ ବର୍ଷର ସବୁସମୟରେ ଯିବାକୁ ବହୁତ ଅସୁବିଧା କାରଣ ଚାଲିକା ପାରି ହେବାକୁ ପଡ଼ିବ ଏବଂ ବଡ଼ି ବତାସର ଭୟ ଅଛି । ଦେହର ବଳ ଓ ମନର ସାହସ ମଧ୍ୟ ଆବଶ୍ୟକ । ତେଣୁ ଗାଁରେ ଗୋଟିଏ ଘର କଲେ ସବୁବେଳେ ଯାଇହେବ ନାହିଁ ଏବଂ ମୁଁ ଗଲେ ମଧ୍ୟ ପିଲାମାନେ ଯିବେନାହିଁ । ଏଣେ ଗାଁ ଲୋକେ ସେମାନଙ୍କ ଅଜସ୍ର ପ୍ରୀତିଯୋଗୁ ସେଠାରେ କିଛି ଗୋଟାଏ ନ କଲେ ଛାଡ଼ିବେ ନାହିଁ । ତାପରେ ମୋର ପିତା ତାଙ୍କର ଶିକ୍ଷକ ଜୀବନର ପ୍ରାୟ କୋଡ଼ିଏ ବର୍ଷ ଖଲ୍ଲିକୋଟ ତାଲୁକା ଅନ୍ତର୍ଗତ ସୁରମ୍ୟ କୃଷ୍ଣଗିରି ପର୍ବତ ତଳେ ଅବସ୍ଥିତ ତଳରାମପଲ୍ଲି ଗ୍ରାମରେ ଶିକ୍ଷକତା କରି ସେଠାରେ କାର୍ଯ୍ୟତଃ ଗୋଟିଏ ଦ୍ୱିତୀୟ ବାସସ୍ଥାନ ସ୍ୱରୂପ ରହୁଥିଲେ । ସେଠାରେ ପର୍ବତ ତଳେ ଥିବା ଝାଡ଼େଶ୍ୱର ଠାକୁର ଓ ରାମଚଣ୍ଡୀ ଠାକୁରାଣୀ ଏବଂ ମନୋରମ ବାରମାସୀ ଝର ଓ କୁଣ୍ଡ ତାଙ୍କୁ ସେ ଜାଗା ସହ ଗୋଟିଏ ସ୍ନେହଡ଼ୋରରେ ବାନ୍ଧି ରଖିଥିଲା । ସଂସ୍କୃତ ଓ ଦେବଦେବୀ ପୂଜାରେ ଅଗାଧ ପାଣ୍ଡିତ୍ୟ ତାଙ୍କୁ ରାମଚଣ୍ଡୀ ଠାକୁରାଣୀଙ୍କଠାରୁ ମୁହୂର୍ତ୍ତିକ ସକାଶେ ଅଲଗା କରି ରଖିପାରୁ ନ ଥିଲା । ସେ ଗ୍ରାମସ୍କୁଲର ଶିକ୍ଷକତା କଲାପରେ ବାକୀ ସମୟ ସବୁ ଏହି ଠାକୁରାଣୀଙ୍କ ପାଖରେ କଟାଉଥିଲେ ଏବଂ ଶେଷରେ ତାଙ୍କର ଏହି ଠାକୁରାଣୀଙ୍କ ସେବାରେ ମୃତ୍ୟୁହେଲା । ଏହି ଗାଁର ସ୍ତ୍ରୀ ପୁରୁଷ ଓ ପିଲାମାନଙ୍କର ମୋ ପ୍ରତି ଏତେ ସ୍ନେହ ଓ ଦରଦ ଯେ ସେମାନେ ଏହି ଗାଁରେ ଯେଉଁଠାରେ କି ମୋର ଶୈଶବ ଓ କିଶୋର ଜୀବନର କୋଡ଼ିଏ ବର୍ଷ କଟିଯାଇଛି, ଯେଉଁ ଜାଗାର ଜଳବାୟୁ ସହ ମୋର ବାଲ୍ୟ ଜୀବନ ଏବଂ କିଶୋର ଜୀବନର ସ୍ୱପ୍ନ ଓ ପ୍ରଥମ ନୈସର୍ଗିକ ପ୍ରେମ ଓତପ୍ରୋତ ଭାବରେ ଜଡ଼ିତ ସେହିଠାରେ ମୁଁ କିଛି ଗୋଟିଏ ଚିହ୍ନ ନ ରଖି ଚାଲିଯିବା ଠିକ୍‌-ହେବନାହିଁ ବୋଲି ଜିଦ୍ ଧରି ବସିଲେ । ମୁଁ ଲୋଂଘର ଛକ ପାଖରେ ଯେଉଁ ଘର କରିଛି ସେ ହେଉଛି ମୋର ଜନ୍ମସ୍ଥାନ ବୁଢ଼ୀବର ଓ ବାଲ୍ୟସ୍ଥାନ ତଳରାମପଲ୍ଲୀର ମଧ୍ୟବର୍ତ୍ତୀ ସ୍ଥାନ ଏବଂ ଉଭୟ ଗ୍ରାମର ରେଲବାଇ ଷ୍ଟେସନ । ଏହି ଉଭୟ ଗ୍ରାମର ଲୋକମାନେ ବାହାରକୁ ଯିବାକୁ ହେଲେ ଏହି ସ୍ଥାନ ଦେଇ ଯାଆନ୍ତି । ତେଣୁ ଏହି ଉଭୟ ଗ୍ରାମର ଅତି ଆଦରଣୀୟ ଲୋକମାନଙ୍କୁ ମୋତେ ବୁଝାଇବାକୁ ବିଶେଷ ଅସୁବିଧା ହେଲାନି ଯେ ଭବିଷ୍ୟତ ଜୀବନରେ ମୋତେ ଓ ମୋର ପିଲାମାନଙ୍କୁ ସେମାନଙ୍କର ସୁଦୂର ପଲ୍ଲୀକୁ ଆସିବାକୁ ବହୁତ ଅସୁବିଧା ହେବ । ତେଣୁ ଉଭୟ ଗ୍ରାମର ଲୋକମାନଙ୍କ ସଙ୍ଗେ ଘନିଷ୍ଠ ସଂପର୍କ ରଖିବାକୁ ହେଲେ ମୋତେ ମଧ୍ୟବର୍ତ୍ତୀ କୌଣସି ଏକ ଜାଗାରେ ଯେଉଁଠାକୁ ଟ୍ରେଡ଼ରେ ଓ ଟ୍ରେନ୍‌ରେ ସହଜରେ ଯା'

ଆସ କରିହେବ, ସେଠାରେ ଗୋଟିଏ ଆସ୍ଥାନ ସ୍ଥାପନ କରିବାକୁ ହେବ । ଏହି ଦୃଷ୍ଟିରୁ ଚିଲିକାର ଓ ଷ୍ଟେସନର ଅଦୂରବର୍ତ୍ତୀ ଜାତୀୟ ରାଜପଥର ପାର୍ଶ୍ୱବର୍ତ୍ତୀ ଏବଂ ମୋର ପୂର୍ବପୁରୁଷଙ୍କର ପ୍ରଥମ ବାସସ୍ଥଳୀ ଏହି ଲୋଂଢର ଶ୍ରୀକୃଷ୍ଣଚରଣପୁର ସର୍ବସୁବିଧାସମ୍ପନ୍ନ । ତାପରେ ଏହି ଜାଗାଟି ମୋର ଶ୍ୱଶୁରଘର ଖଲ୍ଲିକୋଟଠାରୁ ମୋଟେ ତିନି ମାଇଲ୍ ଏବଂ ଏହି ଗାଁରେ ମୋର ମାମୁ ଶ୍ୱଶୁରଙ୍କର ଏବଂ ଆମ ତିନିପୁରୁଷର ବହୁତ ବନ୍ଧୁବାନ୍ଧବମାନଙ୍କର ବାସସ୍ଥାନ । ତେଣୁ ଏହି ଜାଗାଟି ସବୁ ବିଗ୍ରରରେ ଉତ୍କୃଷ୍ଟ ବୋଲି ବିବେଚିତ ହେଲା । ଏହି ଜାଗା ସେହିସ୍ଥାନର ସବୁଠାରୁ ଉଚ୍ଚ ଜାଗା । ଏହିଠାରୁ ରାଜପଥ ଉଭୟ ପଟକୁ ଗଡ଼ିଯାଇଛି ଷ୍ଟେସନକୁ ଓ ସକଳେଶ୍ୱର ଠାକୁର ଏବଂ ଭିତର ମଫସଲକୁ ରୋଡ଼ ଯାଇଛି । ଏଠାରୁ ଚିଲିକାର ସୁନ୍ଦର ଦୃଶ୍ୟ ଦେଖାଯାଏ ଏବଂ ଏହାର ଅନତିଦୂରରେ ହରିଡ଼ାମୂଳ ପର୍ବତର ସବୁଜ ଦୃଶ୍ୟ ମନୋମୁଗ୍‌ଧକର । ତେଣୁ ମୁଁ ଭାବିଲି ଯେତେ କଷ୍ଟ ହେଉ ପଛକେ ଏହିଠାରେ ଗୋଟିଏ ଗ୍ରୋଟ ଘର କରି, ଗୋଟିଏ ପୋଖରୀ ଓ ବଗିଚା କରି ଏକ ଦିଗରେ ଚିଲିକା ଏବଂ ଅନ୍ୟ ଦିଗରେ ହରିଡ଼ାମୂଳ ପର୍ବତକୁ ଚାହିଁ ମୋର ପୂର୍ବପୁରୁଷମାନଙ୍କ ସ୍ମୃତିରେ ଏବଂ ଅନତିଦୂରରେ ମୋର ଜନ୍ମସ୍ଥାନ ବୁଢ଼ୀବିର ଏବଂ ପ୍ରିୟସ୍ଥାନ ତଳଗ୍ରାମପଲ୍ଲିର ମଧୁର ସାନିଧରେ ମୋର ସାନ୍ଧ୍ୟଜୀବନର କେତେକାଂଶ କଟାଇବି । କିନ୍ତୁ ଜୀବନର ଶେଷାବସ୍ଥାରେ ମୋର ଜନ୍ମସ୍ଥାନ ବୁଢ଼ୀବିର ପ୍ରତି ମମତା-ଡ଼ୋର ଏତେ ଜୋରରେ ଟାଣିଲା ଯେ ବାଧ୍ୟ ହୋଇ ଏଠାରେ ମଧ୍ୟ ଗୋଟିଏ ଗ୍ରୋଟ ଘର କଲି । ଏହାର ପ୍ରଧାନ ଉଦ୍ଦେଶ୍ୟ ହେଲା ସେଠାକୁ ଗଲେ ଚିଟକା ମାଛ ଏବଂ ମଇଁଷି ଦହି ଖାଇବି । □□□

## ଆମ ଗାଁ

ପିଲାଦିନର କଥା କହୁ କହୁ ଥୋଡ଼େ ଆଗକୁ ଡେଇଁପଡ଼ିଲି, କ୍ଷମା ଦେବେ । ବର୍ତ୍ତମାନ ମୋତେ ଶୈଶବକାଳକୁ ଫେରିଯିବାକୁ ହେବ । ମୋର ପ୍ରିୟ ଜନ୍ମସ୍ଥାନ ବୁଢ଼ୀବିର ଠିକ୍ ଚିଲିକା କୂଳରେ ଏବଂ ଖଲ୍ଲିକୋଟ ଷ୍ଟେସନ ପାଖ କେଉଟ ଗାଁ କେଶପୁର ଠାରୁ ଚିଲିକା ଦେଇ ପ୍ରାୟ ୬ ମାଇଲ ବାଟ । ଚିଲିକାରେ ସାଧାରଣତଃ ଡଙ୍ଗା ପବନ ସାହାଯ୍ୟରେ ଯା' ଆସ କରେ । ବାଉଁଶ

ମାଣ୍ଡିଆରେ ତିଆରି ଗୋଟିଏ ମସ୍ତବଡ଼ ତଲେଇ ଡଙ୍ଗାର ସାମନାରେ ବାଉଁଶ ଏବଂ ଦଉଡ଼ି ଦେଇ ବନ୍ଧାଯାଏ । ଏହି ତଲେଇର ଆୟତନ ପ୍ରାୟ ୨୦ ଫୁଟରେ ୧୦ ଫୁଟ । ପବନ ଏହି ତଲେଇକୁ ଠେଲି ଠେଲି ଡଙ୍ଗାକୁ ଚିଲିକା ଆରପଟକୁ ନେଇଯାଏ । ପବନ ଭଲ ଥିଲେ ଏହି ୬ ମାଇଲ ଯିବାକୁ ଘଣ୍ଟାଏ ଲାଗେ । ସକାଳେ, ସଞ୍ଜବେଳେ ବା ଜହ୍ନପକ୍ଷ ରାତିରେ ଧୀରେ ଧୀରେ ପବନ ବୋହୁଥିବା ବେଳେ ଏହି ଡଙ୍ଗା ଉପରେ ଯିବା ବଡ଼ ଆରାମ । ଡଙ୍ଗା ଢେଉ ଉପରେ ଘୋଡ଼ା ପରି ଦୌଡ଼ୁଥାଏ ଏବଂ ଘୋଡ଼ା ପିଠିରେ ବସି ଗଲାପରି ଜଣାପଡ଼େ । ଯେଉଁମାନଙ୍କର ଅଭ୍ୟାସ ନାହିଁ ସେମାନଙ୍କର ଅବଶ୍ୟ ପବନ ଜୋର ଥିଲେ ଟିକିଏ ଡର ହେବ । କାରଣ ଡଙ୍ଗାର ତ୍ରିବଳ ଗତିରେ ସାହାଯ୍ୟ କରିବାକୁ ଏହାକୁ ଗୋଟେ ପଟକୁ ଟିକିଏ ଅଣେଇ କରି ଗୁଡ଼ିବାକୁ ହୁଏ । ତା ଅର୍ଥ ବାଟେଇମାନଙ୍କୁ କୁହାଯାଏ ଗୋଟିଏ ପଟକୁ ଟିକିଏ ମାଡ଼ିକରି ବସିବାକୁ । ତେଣୁ ନୁଆଣିଆ ପଟ ପାଣି ଉପରକୁ ଅତି ନିକଟରେ ଥାଏ । କିନ୍ତୁ ପାଗ ଭଲ ଥିଲେ ଏଥିରେ କିଛି ବିପଦ ନାହିଁ । ନାଉରିମାନେ ଶହେ ପୁରୁଷ ହେଲା ଏହି କାମ କରିଆସିଛନ୍ତି । ଦୁଇତିନିବର୍ଷ ହେବାଠାରୁ ଡଙ୍ଗାରେ ଯିବା ଆସିବା କରନ୍ତି । ଡଙ୍ଗା ଚାଲୁଥିବାବେଳେ ପ୍ରଥମେ ତଲେଇ ଉଠେଇ ବାନ୍ଧିବା ଗୋଟିଏ ଉଦ୍‌ବେଗ-ଜନକ ମୁହୂର୍ତ୍ତ । ମୋଟ ଦଉଡ଼ି ବାନ୍ଧ ଉପରକୁ ଟେକୁ ଟେକୁ ପବନ ଧରି ଡଙ୍ଗାଟା ଜୋରରେ ଦୌଡ଼ିବାକୁ ଆରମ୍ଭ କରେ । ସେ ସମୟରେ ନାଉରି ବେହୁସିଆର ହେଲେ ବା ଦଉଡ଼ି ଛିଣ୍ଡିଗଲେ ଡଙ୍ଗାଟି ଓଲଟି ଯାଇପାରେ । କିନ୍ତୁ ଏପରି ଘଟଣା କ୍ୱଚିତ୍ । ରାତିଶେଷକୁ ସାଧାରଣତଃ ପବନ ସମୁଦ୍ର ଆଡ଼କୁ ବୋହେ ଏବଂ ଏହା ଦିନ ୯ ଟା ପର୍ଯ୍ୟନ୍ତ ରହେ । ବାକି ସମୟ ପବନ ସମୁଦ୍ର-ଆଡ଼ୁ ବୋହେ । ତେଣୁ ଡଙ୍ଗାସବୁ ଭୋରରୁ ସକାଳ ପର୍ଯ୍ୟନ୍ତ ପାରିକୁଦ ମାଲୁଦ ଆଡ଼କୁ ଯାଏ ଏବଂ ଉପରବେଳା ଫେରିଆସେ ।

ଆମ ଗାଁର ନାଁ ବୁଢ଼ୀବର ଗ୍ରାମ ମଧ୍ୟରେ ଥିବା ଗୋଟିଏ ପୁରାତନ ବୃହତ୍‌କାୟ ବରଗଛରୁ ଆସିଥିବାର ଅନୁମାନ ହୁଏ । ଗାଁ ମଝିରେ ଦୁଇଟି ପୁରାତନ ମସ୍ତବଡ଼ ବର ଓ ଅଶ୍ୱତ୍ଥ ଯୁଗଳଗଛ ଅଛି । ଏ ଦୁଇଟି ମହାଦେବଙ୍କ ମନ୍ଦିର ସାମନାରେ । ବୋଧହୁଏ ପୂର୍ବକାଳରେ କେହି ଏହି ଦୁଇଟି ଗଛ ଲଗାଇ ପରମ୍ପରାକ୍ରମେ ବିବାହ କରାଇଥିଲେ । ବରଗଛଟି ବୃହତ୍ ଥିବାରୁ ତା ନାଁରେ ଏହି ଗ୍ରାମର ନାମ ହୋଇଥିବାର ଅନୁମାନ କରାଯାଏ । କିନ୍ତୁ ଆଧୁନିକ ଯୁଗର ପାଠୁଆ ଶ୍ରେଣୀ ଗ୍ରାମବାସୀମାନଙ୍କର ଏହି ନାମରେ ତୃପ୍ତି ଆସିଲା ନାହିଁ । ତେଣୁ

ସେମାନେ ବୁଦ୍ଧ ବର ବୋଲି ଏହାକୁ ଆଖ୍ୟା ଦେଲେ । ଇଂରେଜୀରେ ଏହାକୁ **Budhibar** ବୋଲି ଲେଖାଯାଏ । ହୁଏତ ଏହି ବନାନରୁ କ୍ରମେ ଏହାର ନାମ ସରକାରୀ ରେକର୍ଡ଼ରେ ବୁଦ୍ଧିବର ବା ବୁଧିବର ହୋଇଗଲା । ବର୍ଷାଦିନେ ଚିଲିକା ଏହି ଗାଁର ପାଦଦେଶକୁ ଆସିଯାଏ କିନ୍ତୁ ଖରାଦିନେ ଦୁଇମାଇଲ ଘୁଞ୍ଚିଯାଏ । ଏହି ଦୁଇମାଇଲ ଯାଗା ସନ୍ତସନ୍ତିଆ ଏବଂ ମଟିମଟିରେ ଭୁଦା ଥାଏ । ଏହା ମଇଁଷି ଚରିବା ପାଇଁ ପ୍ରକୃଷ୍ଟ ଜାଗା । ତେଣୁ ଏହି ଇଲାକାର ବାସିନ୍ଦାମାନେ ବହୁତ ମଇଁଷି ରଖନ୍ତି ଏବଂ ତଦ୍ଦ୍ୱାରା ବହୁତ ଲାଭବାନ ହୁଅନ୍ତି । ମଇଁଷି ସକାଶେ ଖାଦ୍ୟପାନ ବନ୍ଦୋବସ୍ତ କରିବା ଆବଶ୍ୟକ ନାହିଁ, ଗୁହାଳ ମଧ୍ୟ ଦରକାର ନାହିଁ । ପଦାରେ ଚରନ୍ତି, ପଦାରେ ଶୁଅନ୍ତି, ପଦାରେ ଜନ୍ମ କରନ୍ତି । ଜନ୍ମ କଲାପରେ ଖାଲି ବାଛୁରୀକୁ ଘରକୁ ଅଣାଯାଏ ଏବଂ ଦୁହିଁବାକୁ ବାଛୁରୀକୁ ମଇଁଷି ପାଖକୁ ନିଆଯାଏ । ବାଛୁରୀ ମରିଗଲେ ମଧ୍ୟ ଗୋଟିଏ ପାଳବାଛୁରୀ କରି ଦୁହାଁଯାଇପାରେ । ତେଣୁ ଅନେକ ସମୟରେ ବେଶୀ ଦୁହିଁ ବାଛୁରୀକୁ ମାରି ଦିଅନ୍ତି ।

□□□

## ମୋର ଜନ୍ମ

ମୁଁ ହେଉଛି ପିତାମାତାଙ୍କର ତୃତୀୟ ସନ୍ତାନ । ପ୍ରଥମ ଦୁଇଟି ଝିଅ ହୋଇଥିବାରୁ ମୋର ଆଗମନ ବଡ଼ ସ୍ୱାଗତ ଥିଲା । ମୋର ବୋଉ ଆମ ଘରେ ବିଶେଷ ଆଦରଣୀୟା ନ ଥିଲେ । ପ୍ରଥମେ ଅନ୍ୟ ଜାଆମାନେ ଖୁବ୍ ଗୋରୀ ଥିଲାବେଳେ ଏହାଙ୍କ ରଙ୍ଗ ଟିକିଏ ଫିକା ଥିଲା । ଦ୍ୱିତୀୟତଃ ଗରିବ ଘରର ଝିଅ । ତୃତୀୟତଃ ଶାଶୁ ହେଉଛନ୍ତି ଯାବତ ଶାଶୁ । ଏହି ଶାଶୁ ଅର୍ଥାତ୍ ମୋର ବୁଢ଼ୀମାର ଇତିହାସ ବଡ଼ ମର୍ମନ୍ତୁଦ । ବାଲ୍ୟବିବାହପରେ ଶାଶୁ ଘରକୁ ନ ଆସୁଣୁ ସେ ବିଧବା ହେଲେ । ତାଙ୍କର ସ୍ୱାମୀ ସିଦ୍ଧନାଥ ରଥ ଜଣେ ସୁଶ୍ରୀ, ପଣ୍ଡିତ ଓ ବଳବାନ ବ୍ୟକ୍ତି ଥିଲେ । କିନ୍ତୁ ହଠାତ୍ ତାଙ୍କ ମନରେ ଉଠିଲା ଯେ ସେ ବଚନସିଦ୍ଧି କରିବେ । ତେଣୁ ସେ ପାରଳାଖେମେଡ଼ି ଯାଇ ଜଣେ ଗୁରୁଙ୍କ ଉପଦେଶ କ୍ରମେ ଶ୍ମଶାନଚଣ୍ଡୀ ସାଧନା କଲେ ଯଦ୍ଦ୍ୱାରା କି ତାଙ୍କ ବଚନସିଦ୍ଧି ହେବ ଅର୍ଥାତ୍ ସେ ଯାହା କହିବେ ତାହା ସାଙ୍ଗେ ସାଙ୍ଗେ ଘଟିଯିବ । ଏହି ବଚନସିଦ୍ଧିର ଆବଶ୍ୟକତା ଥିଲା ସେହି ଇଲାକାର କେତେକ ଲୋକଙ୍କ ସଙ୍ଗେ

ବାଂଧା ଭଳି । ସେମାନଙ୍କ ସଙ୍ଗେ ଦାଉ ସାଧିବାକୁ ଈଶ୍ୱରୀ ଶକ୍ତି ସାହାଯ୍ୟର ଆବଶ୍ୟକତା ଉପଲବ୍ଧି କରି ସେ ଏହା କଲେ । ଦିନେ ରାତିରେ ଶ୍ମଶାନରେ ପୂଜା କରୁ କରୁ ହଠାତ୍ ମନେହେଲା ଶ୍ମଶାନଚଣ୍ଡୀ ତାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ ଆବିର୍ଭାବ ହୋଇଗଲେ । କିନ୍ତୁ ଯେଉଁ ଲୋକଟି ପୂଜାସାମଗ୍ରୀ ନେଇ ଆସିଥିଲା ସେ ଭୟରେ ପଳାଇଗଲା । କିଂକର୍ତ୍ତବ୍ୟବିମୂଢ଼ ହୋଇ ସେ କିଛି ପୂଜାସାମଗ୍ରୀ ଦେଇ ନପାରି ଖାଲି ପୂଜାପାଠ କରିବାକୁ ଲାଗିଲେ । ତା ପରେ ଯେପରି ମନେ ହେଲା ଦେବୀ ଘୋର ବିରକ୍ତି ପ୍ରକାଶ କରି ଉଜ୍ଜ୍ୱଳ ଧୂମକେତୁ ଆକାରରେ ଉଭେଇଗଲେ । ସେଥିରୁ ତାଙ୍କ ମନରେ ଭୟ ଜାତ ହେଲା । ସେହି ଦିନଠାରୁ ଭୀଷଣ ଜ୍ୱର ଲାଗି ରହିଲା ଏବଂ ସେ ସେଥିରେ ଦେହତ୍ୟାଗ କଲେ । ଏହା ପରେ ଯେଉଁ କନ୍ୟା ଏପରି ସୁନ୍ଦର ଏବଂ ଉପଯୁକ୍ତ ବର ହରାଇଲା ସେ ଏକ ଅଲକ୍ଷଣୀ ହିସାବରେ ଗଣିତ ହେଲା ଏବଂ ତାକୁ କୁଟୁମ୍ବ ଭିତରେ ସ୍ଥାନ ଦେବାକୁ ସମସ୍ତେ କୁଣ୍ଠିତ ହେଲେ । ମୋର ପିତାଙ୍କର ଗୋଟିଏ ବିଧବା ଭଉଣୀ ଥିଲେ ଯେ କି ଖୁବ୍ ପରିବାର ଏବଂ ଘରର ପ୍ରାୟ ମାଲିକ ଥିଲେ । ଯେଉଁ କନ୍ୟା ତାଙ୍କର କକେଇଙ୍କୁ ଖାଇଛି ତାକୁ କଣ ସେ ଘରେ ପୂରାଇଦେବେ ? ଏହି ଭଉଣୀର ଦୌରାତ୍ମ୍ୟର ବହୁତ କାହାଣୀ ଅଛି । ତାକୁ ବଢ଼େଇ ଲାଭ ନାହିଁ । ସେ ରାତିରେ ତାଙ୍କ ଭାଉଜମାନଙ୍କୁ ଖାଇବାକୁ ଦିଅନ୍ତି ନାହିଁ । କହନ୍ତି ମାଇକିନିଆମାନେ ତ ରାତିରେ ଶୋଇପଡ଼ିବେ, କଣ କୋଡ଼ ହାଣିବେ କି ? ତାଙ୍କର ଦୌରାତ୍ମ୍ୟରେ ଯେ ଭାଇ ମଲା ତାହା ନ ହୋଇ ନିରୀହ ଅନାଗତା କନ୍ୟାର ଦୋଷ ଯୋଗୁଁ ଯେ ସେ ମଲେ ସେକଥା କେହି ବୁଝିଲେ ନାହିଁ । ସ୍ୱାମୀର ମୃତ୍ୟୁ ପରେ ତାଙ୍କୁ ଆଉ ଡାକିଲେ ନାହିଁ । ତାଙ୍କର ଭାଇ ନିତାନ୍ତ ଗରିବ । କେତେ ଦିନ ବିଧବା ଭଉଣୀକୁ ପୋଷିବେ ? ତା ପରେ ଭଉଣୀର ତ କିଛି ଭୂସମ୍ପତ୍ତି ଅଛି । ତେଣୁ ସେ ଶେଷରେ ଭଉଣୀକୁ ନେଇ ଆସିଲେ ଶାଶୁ ଘରକୁ । କିନ୍ତୁ ସେମାନଙ୍କୁ ଘରେ ପଶିବାକୁ ଦିଆଗଲା ନାହିଁ । ସେମାନେ ଯେତେ ଅନୁନୟ ବିନୟ କଲେ କେହି କର୍ଣ୍ଣପାତ କଲେ ନାହିଁ । ତେଣୁ ଶେଷରେ ସେ ବାଧ୍ୟ ହୋଇ ମାଲୁଦର ସେ ସମୟର ମାମଲତକାର କୋଠକରଣଙ୍କ ଆଶ୍ରୟ ନେଲେ । କୋଠକରଣଙ୍କ ସାହାଯ୍ୟରେ ସେମାନେ ପୁରୀ ଯାଇ ସିଭିଲ କୋର୍ଟରେ ମାମଲା କରି ଏକତରଫା ଡିଗ୍ରୀ ପାଇଲେ । ଜାଗିହୋର ଘୋଡ଼ାରେ ଆସି ତାଙ୍କର ଆସିବା ଖର୍ଚ୍ଚ ଜବରଦସ୍ତି ଅସୁଲ କରି ବିଧବାକୁ ତାର ଭାଗ ଜମି ଦଖଲ ଦେଲେ । ମୋର ପିତାଙ୍କର ଜନ୍ମିତ ମାତା ସିଦ୍ଧନାଥ

ରଥ ମଲା ସମୟରେ ସ୍ୱପ୍ନ ଦେଖିଥିଲେ ଯେ ତାଙ୍କ ପେଟରେ ଯେଉଁ ଦ୍ୱିତୀୟ ପୁତ୍ର ଅଛି ସେ ସିଦ୍ଧନାଥ ରଥଙ୍କର ପୋଷ୍ୟ ପୁତ୍ର ହେବ । ସେତେବେଳକୁ ଏ ସ୍ୱପ୍ନ ଦେଖିବାର ପ୍ରାୟ ୧୦ ବର୍ଷ ହୋଇ ଯାଇଥିଲା ଏବଂ ମୋର ପିତାଙ୍କ ବୟସ ଦଶବର୍ଷ । ସିଦ୍ଧନାଥ ରଥଙ୍କ ବିଧବା ଯେତେବେଳେ ଭାଗ ପାଇଲେ ମୋର ପିତାଙ୍କୁ ଘରର ଅନ୍ୟ ସମ୍ପତ୍ତିରୁ ବଞ୍ଚିତ କରି ଦିଆଗଲା ଏବଂ ସେହି ବିଧବା ଭଉଣୀଙ୍କ ଦେହାନ୍ତ-କ୍ରମେ ଏବଂ ଗତ ସ୍ୱପ୍ନର ଚରିତାର୍ଥ ସ୍ୱରୂପ ତାଙ୍କୁ ଏହି ବିଧବାର ପୋଷ୍ୟପୁତ୍ର ବୋଲି ଆଖ୍ୟା ଦିଆଗଲା । କିନ୍ତୁ ମୋର ପିତା ସେତେବେଳେ ଏହି ବିଧବାଙ୍କ ଅନୁଗତ ହୋଇ ନଥିଲେ । ଆଗ ବିଧବା ଘରର ଶତ୍ରୁ । ସେ ମଧ୍ୟ ଏହାଙ୍କୁ ଶତ୍ରୁ ରୂପରେ ଦେଖୁଥିଲେ । କିନ୍ତୁ ଯେତେବେଳେ ସେ ଘରର ଅନ୍ୟ ସମ୍ପତ୍ତିରୁ ବଞ୍ଚିତ ହୋଇ ବାଧ୍ୟ ହୋଇ ଏହି ବିଧବା ଖୁଡ଼ିର ଆଶ୍ରୟ ନେଲେ ସେହି ଦିନଠାରୁ ବିଧବା ଖୁଡ଼ି ଆମର ବୁଢ଼ୀମା ହେଲେ ଏବଂ ଘରର ସର୍ବେସର୍ବା ହେଲେ । ତାଙ୍କ ଆଗରେ ମୋର ପିତାଙ୍କର ପାଟି ଫିଟେଇବାରେ ଜୋର ନଥିଲା । ଏହି ବୈମାତୃକ ଶାଶୁ ମୋର ବୋଉକୁ ସବୁବେଳେ କଡ଼ା ଦୃଷ୍ଟିରେ ଦେଖୁଥିଲେ । ସେ ଘରର ବୋହୂ ନ ହୋଇ ନ୍ୟୂନଭାବରେ ରହୁଥିଲେ । ତା' ପରେ ଯେତେବେଳେ ପ୍ରଥମେ ଦୁଇଟି ଝିଅ ଜନ୍ମ କଲେ ତାଙ୍କର ଦଶା ଆହୁରି ଖରାପ ହେଲା । ଦୁଇ ଝିଅ ପରେ ଯେତେବେଳେ ମୁଁ ଜନ୍ମଲାଭ କଲି ତାଙ୍କର ଅବସ୍ଥା ଟିକିଏ ସୁଧୁରିଲା । ମୋର ଜନ୍ମବେଳକୁ ମୋର ପିତା ଗାଁର ପ୍ରାୟ ୪ ମାଇଲ ଦୂରରେ ବଜ୍ରକୋଟରେ ଶିକ୍ଷକତା କରୁଥିଲେ । ମୋର କକେଇ ଅନନ୍ତ ରଥଙ୍କୁ ଏ ଖବର ଦେବା ସକାଶେ ପଠାଗଲା । ସେ ବଡ଼ ଅମାୟିକ ଲୋକ । ସେ ପ୍ରଥମେ କାହିଁକି ଆସିଛନ୍ତି କିଛି କହିଲେ ନାହିଁ । ଏଣେ ପିତା ମୋର ଉଦ୍‌ଗ୍ରୀବ । ହୁଏତ ପ୍ରସବର କିଛି ଖବର ଆସିଥିବ । ହୁଏତ ପୁଣି ଝିଅଟିଏ ହୋଇଥିବ, ସେହି ଅଶୁଭ ଖବର ଦେବାକୁ କକେଇ କୁଣ୍ଠାବୋଧ କରୁଛନ୍ତି ଏହା ଭାବି ପିତା ମଧ୍ୟ ଚୁପ, କିନ୍ତୁ ଉତ୍କଣ୍ଠିତ ହୋଇ ଥାନ୍ତି । ଶେଷରେ ଆଉ ସମ୍ଭାଳି ନ ପାରି ପଚାରିଲେ, ଅନ୍ନ, କୁଆଡ଼େ ଆସିଛୁ ? ଉତ୍ତର ମିଳିଲା ଆସିଛି କାହିଁକି, ପୋଖତା ତ ହୋଇଛି । ତା ପରେ ପ୍ରଶ୍ନ ହେଲା ପୁଅ ନା ଝିଅ । ଉତ୍ତର ମିଳିଲା ପୁଅଟେ । ଏହା ଶୁଣି ପିତା ଆନନ୍ଦରେ ଅସ୍ଥିର ହୋଇଗଲେ । ପଚାରିଲେ, ସେତେବେଳୁ ତ ଆସିଲୁଣି କହୁନୁ କାହିଁକି । ଉତ୍ତର ମିଳିଲା କହିଲି ତ ।

ସେହି ଦିନଠାରୁ ବୋଉର ଦୁଃଖମୟ ଜୀବନରେ ଟିକିଏ ଆଲୋକରେଖା ଦେଖାଗଲା ଏବଂ ସେ ପୁଅକୁ ଲାଳନପାଳନ କରିବାରେ ଲାଗିଗଲେ । ହେଲେ

ଅବସ୍ଥା ତ ଭଲ ନୁହେଁ । କିଛିଦିନ ପରେ ମରୁଡ଼ି ଓ ବଢ଼ି ଆସିଲା । ଧାନ ଫସଲ ପୂରାପୂରି ନଷ୍ଟ ହୋଇଗଲା । ମାଣ୍ଡିଆ ଜାଉ ଛଡ଼ା ଆଉ ଖାଇବାକୁ କିଛି ନାହିଁ । ତେଣୁ ଶିଶୁ ଅବସ୍ଥାରୁ ମୁଁ ମାଣ୍ଡିଆ ଯାଉ ଖାଇବାରେ ଅଭ୍ୟସ୍ତ ହୋଇଗଲି । ତାକୁ ଖାଇ ଆମାଶୟ ଝାଡ଼ା ହେଲା ଏବଂ ମୁଁ ମାମୁ ଘରକୁ ଯାଇଥିବା ସମୟରେ କୁନ୍ଥେଇ କୁନ୍ଥେଇ ମୋର ମଳଦ୍ୱାରଟି ପୂରା ବାହାରକୁ ବାହାରିଗଲା । ଡାକ୍ତର ତ ନାହିଁ । ମୁଁ ଶୁଣେ ମୋର ପିତାଙ୍କର ଭଗିନୀ, ଯାହାଙ୍କର ଶାଶୁଘର ମୋର ସେହି ମାମୁଘର ଗାଁରେ ଅର୍ଥାତ୍ ଗଞ୍ଜାମ ଜିଲ୍ଲା ବଳାସପୁରରେ, ସେ ଘସିକଅାଁ କରି ଅଡ଼ୁଆବାଳରେ ସେହି ମଳଦ୍ୱାରକୁ ଧରି ଜୋର କରି ଭିତରେ ପୂରାଇଦେଲେ । ସେହିଦିନଠାରୁ ସେ ଭିତରେ ଅଛି, ଆଉ ବାହାରି ନାହିଁ; କିନ୍ତୁ ଆମାଶୟ ଝାଡ଼ା ଦେହଢିଆ ହୋଇଗଲାଣି । □□□

## ମୋର ବଡ଼ ଭଉଣୀ

ମୋର ଜନ୍ମର ତିନିବର୍ଷ ପରେ ଆଉ ଗୋଟିଏ ଭାଇ ଜନ୍ମହେଲା । ମୁଁ କିନ୍ତୁ ଦୁଇଝିଅ ପରେ ପୁଅ ହୋଇଥିବାରୁ ଏବଂ ଜ୍ୟୋତିଷୀ ପିତାଙ୍କ ମତରେ ମୋର ଜାତକ ଖୁବ୍ ଉଚ୍ଚ ହୋଇଥିବାରୁ ମୁଁ ସବୁଠୁ ଗେହ୍ଲା ପୁଅ ଥିଲି । ସାନଭାଇ ଉପରେ ହାକମି ବିସ୍ତାର କରୁଥିଲି । ମୋର ବଡ଼ ଭଉଣୀ ଦୁଇଜଣ ମୋତେ ଖୁବ୍ ଆଗ୍ରହ ସହକାରେ ଲାଳନ ପାଳନ କରୁଥିଲେ । ସେମାନେ ତ ଝିଅ, ପରଘରକୁ ଯିବେ । ଆମ ସମାଜରେ ଝିଅର ସ୍ଥାନ ନାହିଁ । ସେମାନଙ୍କ କାମ ହେଉଛି ଘରର ସମସ୍ତ କାମ କରିବା ଏବଂ ଭାଇକୁ ଲାଳନ ପାଳନ କରିବା । ସେମାନେ ମୋର ଏତେ ଯତ୍ନ ନଅନ୍ତି କିନ୍ତୁ ମୁଁ ସେମାନଙ୍କୁ ସବୁବେଳେ ମାରୁଥାଏ । ସେଥିରେ ସେମାନଙ୍କର ପାଟି ଫିଟାଇବାର ଜୋର ନାହିଁ । ମୁଁ ମାରିଲେ ସେମାନେ କାନ୍ଦିଲେ କେହି କର୍ଣ୍ଣପାତ କରନ୍ତିନାହିଁ । କିନ୍ତୁ ମୋର ଟିକିଏ କାନ୍ଦ ଶୁଣିଲେ ସମସ୍ତେ ଦୌଡ଼ି ଆସନ୍ତି । ବୋଉ ଆସି ସେମାନଙ୍କୁ ନ ମାରିଲେ ମଧ୍ୟ ଶୋଧନା ଉପରେ ଶୋଧନା ଦିଏ । ବୁଢ଼ୀମା ଦାନ୍ତ କଡ଼ମଡ଼ କରି ଦୌଡ଼ିଆସେ । ଏହା ଦେଖି ମୋର ଭଉଣୀମାନେ ସବୁବେଳେ ଭୀତତ୍ରସ୍ତ । ବୋଉ ତ ସବୁବେଳେ ଘର

କାମରେ ବ୍ୟସ୍ତ ଥାଏ । ବୁଢ଼ୀ ମା ତ ଶାଶୁ ଓ ମାମଲତକାର, ତାଙ୍କର ସମ୍ପତ୍ତି ଆମେ ଖାଉଛୁ ସେ କଣ କାମ କରିବ ! ସେ ଖାଲି ପର୍ଯ୍ୟବେକ୍ଷଣ କରୁଥାଏ । ତେଣୁ ମୋର ଭାର ଥାଏ ପୂରା ମୋର ଦୁଇ ବଡ଼ ଭଉଣୀଙ୍କ ଉପରେ । ମୋର କାନ୍ଦ ଶୁଣିଲେ ସେମାନଙ୍କର ଉପରେ ବିପଦ ଏ କଥା ଜାଣି ସେମାନେ ସଚେତ ଥାନ୍ତି ଯେପରି ମୁଁ ନ କାନ୍ଦେ । ତେଣୁ ମୁଁ ଯାହା କହେ ସେମାନେ ସେଇଆ କହନ୍ତି । ଆମର ବିଶ୍ୱାସ ପ୍ରଥମେ ଝିଅ ହେଲେ ଭାଗ୍ୟ ଭଲ । ଏପରି ବିଶ୍ୱାସର ଦୁଇଟି କାରଣ ଥାଇପାରେ । ପ୍ରଥମେ ଝିଅ ହେଉଛି ଘରକୁ ଗୋଟିଏ ବୋଝ । ବଡ଼ ହେଲା ପର୍ଯ୍ୟନ୍ତ ତାକୁ ଲାଳନ ପାଳନ କରି ବଢ଼ାଇବାକୁ ହେବ । ତାପରେ ଉପଯୁକ୍ତ ପାତ୍ରରେ ବିବାହ ଦେବାକୁ ଖୋଜ ଖୋଜ ମଧ୍ୟ ଲାଗିବ ନାହିଁ । ବିବାହପରେ ଲୋକଚଳଣି ଅନୁସାରେ ଯୌତୁକ ଦେଇ ବିଦାୟ କରିବାକୁ ହେବ ଏବଂ ଏଥିରେ କିଛି ଅଭାବ ହେଲେ ତାର ଶାଶୁଘରୁ ଗଞ୍ଜଣା ସହିବାକୁ ହେବ । ଜୋଇଁ, ସମ୍ବନ୍ଧୀ ଓ ସମ୍ବନ୍ଧିଆଣୀଙ୍କୁ ସବୁବେଳେ ଡରି କରି ଚଳିବାକୁ ହେବ । ଝିଅକୁ କୌଳିକ ପ୍ରଥା ଅନୁସାରେ ପର୍ବ ପର୍ବାଣୀକୁ ଡାକିଆଣିବା କଥା । କିନ୍ତୁ ନ ଛୁଟିଥିଲେ ଡାକିଆଣିବାକୁ ଗଲାବେଳେ ଶୋଧନା ଖାଇବ ଏବଂ ସେ ସବୁକୁ ନତମସ୍ତକରେ ସହିବାକୁ ପଡ଼ିବ । ନହେଲେ ଝିଅକୁ ପଠାଇବେ ନାହିଁ, ତାକୁ କଷ୍ଟଦେବେ, ସେ କାନ୍ଦିବ, ବାପ ଘର ଉପରେ ନିଃଶ୍ୱାସ ପକାଇବ, ନହେଲେ ଆତ୍ମହତ୍ୟା କରିବ । ଏ ସବୁ ଯୋଗୁଁ ଲୋକମାନେ ଝିଅ ଜନ୍ମହେଲେ ଗୋଟିଏ ଅଭିଶାପ ବୋଲି ମନେ କରନ୍ତି । ମନ ଏପରି ଖରାପ ଥିବା ସମୟରେ ଯଦି ଶାସ୍ତ୍ରମତ କୁହାଯାଏ ଯେ ପ୍ରଥମ ଝିଅ ଘରକୁ ଭାଗ୍ୟ ତେବେ ମନ କେତେକ ପରିମାଣରେ ସାନ୍ତ୍ୱନା ପାଏ । ଦେହ ସୁହାଇଯାଏ । ତା ପରେ ପ୍ରଥମେ ଝିଅ-ହେଲେ ସେ ପରବର୍ତ୍ତୀ ସନ୍ତାନକୁ ମାଆ ପରି ଲାଳନପାଳନ କରେ । ସବୁ ମାଡ଼ଗାଳି ଖାଇ ସେମାନଙ୍କ କଥା ବୁଝେ । ମାଆକୁ ମଧ୍ୟ ଘର କାମରେ ସାହାଯ୍ୟ କରେ । କିନ୍ତୁ ପ୍ରଥମେ ପୁଅହେଲେ ସେ ଗେହ୍ଲା ହୋଇ ତା ପରବର୍ତ୍ତୀ ସନ୍ତାନ-ମାନଙ୍କୁ ପାଳନ କରିବା ଦୂରେ ଥାଉ ଖାଲି ପିଟିବ, ବାପ ମା ଉପରେ ଅତ୍ୟାଚାର କରିବ, ଘରେ କନ୍ଦଳ ଓ ଅଶାନ୍ତି ସୃଷ୍ଟି କରିବ । ତେଣୁ ପ୍ରଥମେ ଝିଅ ହେଲେ ଏହି ହିସାବରେ ଭଲ । ଯାହାହେଉ ମୋର ଏହି ଦୁଇଭଉଣୀ ଯେ କି ପିଲାଦିନେ ମୋର ଏତେ ଅତ୍ୟାଚାର ସହିଥିଲେ ଯେପରି ମନେ ହେଉଥିଲା ଭଗବାନ ସେମାନଙ୍କ ଜୀବନକୁ ଦୁଃଖମୟ କରିବାକୁ ସେମାନଙ୍କୁ ଜନ୍ମ ଦେଇଥିଲେ ।

ବଡ଼ ଭଉଣୀର ବିବାହ ହେଲା ବାଣପୁରର ପାଟପୁର ଗ୍ରାମରେ । ତାର ସ୍ୱାମୀର ଘର ଖଣ୍ଡେ ଛଡ଼ା ଆଉ କିଛି ନଥିଲା । ସେମାନେ ଥିଲେ ତିନି ଭାଇ । ଏ ଥିଲେ ବଡ଼, ଆଉ ଦୁଇଭାଇ ବିମାତାଙ୍କର ପୁଅ । ବିମାତା ଏହାଙ୍କୁ ଆଦୌ ଦେଖିପାରୁ ନ ଥିଲେ ଏବଂ ଯାହା ମାଗି ଯାଚି କରି ଆଣିଲେ ଭଲକରି ଖାଇବାକୁ ଖଣ୍ଡେ ଦେଉନଥିଲେ । ମୋର ନାନୀ ଗଲାପରେ ତାକୁ ମଧ୍ୟ ଭଲକରି ଗଣ୍ଡେ ଖାଇବାକୁ ମିଳିଲାନାହିଁ, ଦେଖିପାରିବା ତ ଦୂରର କଥା । ମୋର ଭେଣେଇ ଅତି ସରଳ ଲୋକଥିଲେ । ଅଲଗା ହୋଇ ରହିଥିଲେ ନିଜ କୁଟୁମ୍ବକୁ ପୋଷି ପାରିଥାନ୍ତେ; କିନ୍ତୁ ଲୋକାପବାଦ ଭୟରେ ତାହା କଲେନାହିଁ ଏବଂ ମନସ୍ତାପରେ ଚାକିରିପାଇଁ କଲିକତା ଚାଲିଗଲେ, ଆଉ ଫେରିଲେ ନାହିଁ । ସେ କଲିକତା ଗଲାପରେ ମୋର ପିତା ମୋର ନାନୀକୁ ଘରକୁ ନେଇଆସିଲେ ଏବଂ ଆଉ ଛାଡ଼ିଲେ ନାହିଁ । କଲିକତାରେ ହଇଜାରେ ମରିଗଲେ ବୋଲି ତାଙ୍କର ସାଥିରେ ଯାଇଥିବା ଲୋକମାନେ କହିଲେ । ତେଣୁ ମୋର ନାନୀକୁ ବିଧବା ହେବାକୁ ହେଲା । ପରେ ଲୋକମାନେ କେହି କେହି କହିଲେ ସେ ମରିନାହାନ୍ତି ବଞ୍ଚିଛନ୍ତି । ହଇଜାରୋଗୀ ମରିଗଲା ବୋଲି ଅନେକ ସମୟରେ ଲୋକମାନେ ଫିଙ୍ଗିଦେଇ ଚାଲିଆସନ୍ତି । ଜୀବନ କିନ୍ତୁ ଯାଇନଥାଏ ଏବଂ ସେ ପରେ ବଞ୍ଚିଉଠେ । ଏପରି ବି ହୋଇ ଥାଇପାରେ । ବଞ୍ଚିଲାପରେ ସେ ହୁଏତ ଶୁଣିଥିବେ ସେ ମରିଗଲା ବୋଲି ତାଙ୍କର ସ୍ତ୍ରୀ ବିଧବା ହେଲାଣି । ଏହା ଶୁଣି ଆସି ନଥିବେ । ସେହିଦିନ-ଠାରୁ ନାନୀ ଆମ ଘରେ ଅଛି ଆମର ସୁଖ ଦୁଃଖରେ ଭାଗୀହୋଇ । ବୁଢ଼ୀମା ତାକୁ ଭାରି କଡ଼ା ଦୃଷ୍ଟିରେ ଦେଖୁଥିଲେ । ପିଲାଦିନୁ ବିଧବା ହେବାଦ୍ୱାରା ମନ ସବୁବେଳେ ଚିଡ଼ଚିଡ଼ ହୋଇ ଉଠିଲା । ସକାଳୁ ରାତି ପର୍ଯ୍ୟନ୍ତ ଧର୍ମ-କର୍ମରେ ବ୍ୟସ୍ତ ଥାଇ ତାଙ୍କର ସମୟ କଟିଯାଏ । ଏପରି ବ୍ୟସ୍ତ ଥାଇ ଘରକାମ ବେଶୀ କରୁ ନଥିବାରୁ ସମସ୍ତେ ସନ୍ତୁଷ୍ଟ ନ ଥାନ୍ତି । ତେବେ ସେ କାହାକୁ ଖାତିରି ନ କରି ମାଡ଼ି କୁଦି ଚାଲି ଆସୁଛି ଏବଂ ଶେଷ ଜୀବନରେ ତାର ଦିଅରଠାରୁ ଗୋଟିଏ ପୁଅ କରି ତାକୁ ବ୍ରତ କରି ବର୍ତ୍ତମାନ ଶାଶୁଘରକୁ ମଝି ମଝିରେ ଯିବାକୁ ଆରମ୍ଭ କରିଛି । ଆମେ ଯେତେ ପୋଷିଲେ ମଧ୍ୟ ସେ ଆମର ପର, କାରଣ ସେ ମଲେ ଆମେ ଶୁଦ୍ଧି ହେବୁନାହିଁ କି ତାକୁ ପାଣି ଦେବୁନାହିଁ । ହିନ୍ଦୁ ଧର୍ମରେ ପର ଆପଣା ଏପରି ବିଚାର କରାଯାଏ । ଜୀବନଯାକ ଯା’ ପାଖରେ ରହିବ ସେ ହେବ ପର ଏବଂ ଶେଷ ଜୀବନକୁ ପିଣ୍ଡ ଦେବ ବୋଲି ଯାହାକୁ ପୁଅ କରିବ ସେ ହେବ ଆପଣାର । ସେ ଯେତେ ଦୁଃଖକଷ୍ଟ ଦେଲେ

ମଧ୍ୟ ଦେଖିବ ନାହିଁ । ଶେଷ ଜୀବନରେ ମନୁଷ୍ୟ ଇହ ଜନ୍ମର ଉପକାର ଅପକାର ଭୁଲିଯାଏ ଏବଂ ପର ଜୀବନରେ କାହାଠାରୁ ପାଣି ଓ ପିଣ୍ଡ ପାଇବ ସେହି ଚିନ୍ତାରେ ଘାରିହୁଏ । ସେ ଯାହାର ପୁଅକୁ ପୁଅ କରିଛି ସେ ତାର ଦିଅର ଗୋପୀନାଥ ମିଶ୍ର । ଗୋଦାବରୀଶ ବାବୁଙ୍କ ପାଖରେ ବହୁ ଦିନ ରହି ତାଙ୍କ ସାହାଯ୍ୟରେ ବାଣପୁରରେ ଗୋଟିଏ ଧାନ ହଲର ବସାଇ ବେଶ୍ ସୁଖ ଦୁଃଖରେ ଚଳିଯାଉଛନ୍ତି ।

ମୋର ଆର ବଡ଼ ଭଉଣୀର ବିବାହ ହେଲା ପୁରୀ ବାସୁଦେବପୁରର ହରି ଷଡ଼ଙ୍ଗୀ ସହି । ତାଙ୍କର ଗୋଟିଏ ବିଧବା ଭଉଣୀ ଛଡ଼ା କେହି ନ ଥିଲେ । ସେ ଭଉଣୀ ତାଙ୍କ ଘରେ ରହୁଥିଲା । ଘରେ କେହି ନ ଥିବାରୁ ସେ ପିଲା କନ୍ୟା କରି ତାକୁ ନେଇଗଲେ । ସେଠି ଯାଇ ସେ ତାଙ୍କ ଭଉଣୀକୁ ଘର କାମରେ ସବୁ ସାହାଯ୍ୟ କଲା । ଆମ ସମାଜରେ ବିଶେଷତଃ ମଫସଲରେ ବହୁତ କମ୍ ନଣନ୍ଦ ଭାଉଜକୁ ଭଲ ପାଆନ୍ତି । ପିଲାକନ୍ୟା ହୋଇ ଯାଇ ଘରର ସମସ୍ତ କାମ କରିବାକୁ ପଡ଼ିଲା । ଦିନେ ସଞ୍ଜବେଳେ ପାଣି କାଢ଼ୁ କାଢ଼ୁ ବାଟକୂଅରେ ପଡ଼ି ମରିଗଲା । କୂଅରେ ପଡ଼ୁ ପଡ଼ୁ ସଙ୍ଗେ ସଙ୍ଗେ ଉଠାଇ ନେଲେ ବହୁତ ଲୋକ ବଞ୍ଚି ଯାଉଛନ୍ତି, ଯଦି ଦେହରେ ସାଙ୍ଘାତିକ ମାଡ଼ ବାଜି ନ ଥାଏ । ତାକୁ ବୋଧହୁଏ ସଙ୍ଗେ ସଙ୍ଗେ କେହି ଉଠାଇଲେ ନାହିଁ, ବିଚାରୀ ମରିଗଲା । ଗରିବ ଘରର ଝିଅ । ପିତାଙ୍କର ସମୟ ଓ ସମ୍ବଳ ନାହିଁ ଯାଇ ବୁଝିବାକୁ ଝିଅ କିପରି ଅବସ୍ଥାରେ ମଲା । ଏପରି ମର୍ମନ୍ତୁଦ ଅବସ୍ଥାରେ ତାର ଜୀବନଲୀଳା ସାଙ୍ଗ ହେଲା ଏବଂ ତାର ବଡ଼ ଭଉଣୀ ମରଣ ଅପେକ୍ଷା ଅଧିକ ଦୁଃଖମୟ ଜୀବନ ଯାପନ କରି ସଂସାରରେ ବଞ୍ଚିଛି । □□□

## ବାସ ପରିବର୍ତ୍ତନ

କ୍ରମେ କ୍ରମେ ପିତାଙ୍କର କୁଟୁମ୍ବ ବଢ଼ିବାରୁ ଏକାନ୍ନବର୍ତ୍ତୀ ପରିବାରର କକେଇମାନେ ଭିନ୍ନ ହୋଇଗଲେ । ଏପରି ଅବସ୍ଥାରେ ଗାଁରେ କୁଟୁମ୍ବ ରଖି ଅନ୍ୟ ଜାଗାରେ ଶିକ୍ଷକତା କରିବା ଅସୁବିଧା ହେବାରୁ ମୋର ପିତା ପିଲା କୁଟୁମ୍ବ ଧରି ଆସିଗଲେ ଗଞ୍ଜାମ ଜିଲ୍ଲା ଖଲ୍ଲିକୋଟ ତାଲୁକା ଅନ୍ତର୍ଗତ

ତଳବାମପଲ୍ଲି ଗ୍ରାମକୁ ଯାହା ସୁରମ୍ୟ ଇତିହାସ ପ୍ରସିଦ୍ଧ କୃଷ୍ଣଗିରି ପର୍ବତ ତଳେ ଅବସ୍ଥିତ ଏବଂ ପାହାଡ଼ ତଳେ ଚଉଦ ଗୋଟି ପୁରାତନ ମନ୍ଦିର ଏବଂ ଝାରେଶ୍ୱର ନାମରେ ନିର୍ମଳ ଓ ଶୀତଳ ବାରମାସୀ ଝର ଅଛି । ଏହି ସ୍ଥାନର ପ୍ରଧାନ ଠାକୁର ହେଉଛନ୍ତି ଝାରେଶ୍ୱର ବା ଝାଡ଼େଶ୍ୱର ଏବଂ ପ୍ରଧାନ ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ରାମଚଣ୍ଡୀ । କିମ୍ବଦନ୍ତୀ ଅଛି ଯେ ରାମଚନ୍ଦ୍ର ବନବାସ ସମୟରେ ଏହିଠାରେ କିଛିଦିନ ଅବସ୍ଥାନ କରିଥିଲେ ଏବଂ ରାମଚଣ୍ଡୀ ଠାକୁରାଣୀଙ୍କୁ ପ୍ରତିଷ୍ଠିତ କରିଥିଲେ । ବାରମାସୀ ଝରଟି ଠିକ୍ ଝାରେଶ୍ୱର ଠାକୁରଙ୍କ ଆସ୍ଥାନ ତଳ ଦେଇ ପର୍ବତ ପାଦ ଦେଶରୁ ବାହାରି ଗୋଟିଏ କୁଣ୍ଡରେ ପଡ଼ୁଛି । ଝାରେଶ୍ୱର ଠାକୁରଙ୍କ ନାମ ଅନୁସାରେ ଏହି ସ୍ଥାନର ନାମ ହେଲା ଝାରେଶ୍ୱର ଏବଂ କୁଣ୍ଡର ନାମ ହେଲା ଝାରେଶ୍ୱର କୁଣ୍ଡ । ଏହି ଝର ପାଣି ନାଳରେ ଯାଇ ତଳବାମପଲ୍ଲି ଓ ତତ୍‌ସନ୍ନିକଟସ୍ଥ ଦାନପୁର ଗ୍ରାମର ଜମିମାନଙ୍କରେ ମାଡ଼େ । ଏହି ଉଭୟ ଗ୍ରାମ ମଧ୍ୟରେ ଏହି ପାଣିଗତ ବିବାଦ ମାନ୍ଦ୍ରାଜ ହାଇକୋର୍ଟରେ ସ୍ଥିର ହୋଇଯାଇଛି । ତଳବାମପଲ୍ଲି ଲୋକେ ସପ୍ତାହରେ ତିନି ଦିନ ଏବଂ ଦାନପୁର ଲୋକେ ସପ୍ତାହରେ ଚାରିଦିନ ପାଣି ନିଅନ୍ତି । ଏହି ବ୍ୟବସ୍ଥା ସତ୍ତ୍ୱେ ଉଭୟ ଗ୍ରାମ ମଧ୍ୟରେ ସମୟ ସମୟରେ ବିବାଦ ପୁଣି ଟେକି ଉଠେ । ଦାନପୁର ଲୋକେ ଏପରି ଏକ ବିବାଦକରି ତଳବାମପଲ୍ଲି ପାଣି ଏକଦମ୍ ବନ୍ଦକରି ଦେଇଥିଲେ । ମୁଁ ଅବସରପ୍ରାପ୍ତ ପରେ ହାଇକୋର୍ଟରେ ଓକିଲାତି କରୁଥିବାବେଳେ ତଳବାମପଲ୍ଲି ଲୋକଙ୍କ ସକାଶେ ଲଢ଼ି ତାଙ୍କର ଅଧିକାର ପୁଣି ସାବ୍ୟସ୍ତ କରାଇଥିଲି । ସେଥିସକାଶେ ତଳବାମପଲ୍ଲିର ସ୍ତ୍ରୀପୁରୁଷ ସମସ୍ତେ ମୋଠାରେ କୃତଜ୍ଞ । ଏହି ଝରର ପାଣି ଏତେ ନିର୍ମଳ, ଏତେ ଶୀତଳ, ଏତେ ସୁସ୍ୱାଦୁ ଓ ଏତେ ଜୀର୍ଣ୍ଣକାରକ ଯେ ଏଠାରେ ଯେ ଦିନେ କଟେଇବ ସେ ଆଉ ଜୀବନରେ ଭୁଲିପାରିବ ନାହିଁ । ଦୁର୍ଭାଗ୍ୟବଶତଃ ଏହା ରେଳଠାରୁ ଚାରି ମାଇଲ ଦୂରରେ ଏବଂ ଜନକୋଳାହଳର ଅନ୍ତରାଳରେ ଥିବାରୁ ଏହା ଲୋକଚକ୍ଷୁକୁ ବିଶେଷଭାବରେ ଆସିନାହିଁ । ସେଥିଯୋଗୁ ମଧ୍ୟ ଏକ ଉପକାର ହୋଇଛି । ଏହାର ପବିତ୍ରତା, ମୌଳିକତା ଓ ନିଭୃତତା ଅକ୍ଷୁଣ୍ଣ ରହିଛି ଏବଂ ସଭ୍ୟତାର ଆବର୍ଜନା ଏହାକୁ ସ୍ପର୍ଶ କରିନାହିଁ । ପ୍ରତିବର୍ଷ ମକର ସଂକ୍ରାନ୍ତି ବେଳେ ଏବଂ ବୈଶାଖମାସର ପ୍ରତି ସୋମବାରେ ଏଠାରେ ବେଶ୍, ଏକ ମେଳା ହୁଏ । ସେହି ସମୟରେ କୁଣ୍ଡର ପାଣି ଖରାପ ହୋଇଯାଏ ଏବଂ ମଇଳା ଆବର୍ଜନାରେ ଚାରିପଟ ଭର୍ତ୍ତି ହୋଇଯାଏ । ଅତି ଆନନ୍ଦର କଥା ନିକଟରେ ବଶଡ଼ାଗ୍ରାମର ପୂର୍ବ ସରପଞ୍ଚ

ଶ୍ରୀ ଦଣ୍ଡପାଣି ସାହୁ ସ୍ୱତଃପ୍ରଣୋଦିତ ହୋଇ ଲୋକମାନଙ୍କ ସାହାଯ୍ୟ ନେଇ ଏବଂ ସୀମିତ ପୂଜାଲବ୍ଧ ଧନରେ ଏଠାର ସମସ୍ତ ପୁରାତନ ମନ୍ଦିରର ଜୀର୍ଣ୍ଣସଂସ୍କାର କରିଛନ୍ତି ଏବଂ ସଫେଦିତ ମଧ୍ୟ କରିଛନ୍ତି । ସର୍ବସାଧାରଣ ତାଙ୍କୁ ଧନ୍ୟବାଦ ଦେବାର କଥା । ଏହି ସ୍ଥାନକୁ କେତେ ବର୍ଷ ହେଲା ଛଅମାଇଲର ଗୋଟିଏ ସଡ଼କ ଖଲ୍ଲିକୋଟର ନିର୍ମଳଝରଠାରୁ ତିଆରି ହୋଇଛି । ପାହାଡ଼ ତଳେ ଥିବା ଏହି ତଳରାମପଲ୍ଲି ଗ୍ରାମରେ ଖରାଦିନେ ଏତେ ଜୋରରେ ପବନ ବୋହେ ଯେ ମନୁଷ୍ୟ ଅସମ୍ଭାଳ ହୋଇପଡ଼େ । ନୀଳେଶ୍ୱରର ପାଣି ଯୋଗୁ ଏହି ଗ୍ରାମଟି ସଦା ଶସ୍ୟଶାମଳା ଏବଂ ଲୋକମାନେ ଦିନରାତି ପରିଶ୍ରମ କରି ପେଟ ପୂରାଇ ଖାଇବାକୁ ପାଆନ୍ତି । ଏଠାର ରାମଚଣ୍ଡୀ ଠାକୁରାଣୀ ଲୋକଚକ୍ଷୁରେ ବଡ଼ ପ୍ରତ୍ୟକ୍ଷ ଦେବତା । ଆଖପାଖର ବହୁତ ଲୋକ ସବୁବେଳେ ଏହାଙ୍କୁ ପୂଜା କରିବାକୁ ଆସନ୍ତି ଏବଂ ଅଧିକାଂଶ ସମୟରେ ଏଠାରେ ଛେଳି ବଳି ପଡ଼େ । କୃଷ୍ଣଗିରି ପର୍ବତ ଝିରମ୍ୟ ପରି ଜଣାପଡ଼େ । ଏହାର ଶୀର୍ଷଦେଶରେ ଗୋଟିଏ ସୁରମ୍ୟ ଜଳସ୍ଥାନ ଅଛି ଯେଉଁଠାରେ ବନ୍ୟଜନ୍ତୁମାନେ ଜଳପାନ କରନ୍ତି । ପ୍ରତିବର୍ଷ ମକର ସଂକ୍ରାନ୍ତି ମେଳା ସମୟରେ ଲୋକମାନେ ଝାଞ୍ଜକୀର୍ତ୍ତନ ଧରି ଏହି ଜଳସ୍ଥାନକୁ ଯାଆନ୍ତି ।

ପିତା ସାଧାରଣତଃ ଦେବଦେବୀ ଭକ୍ତ ଥିବାରୁ ଏହି ଜାଗାଟି ତାଙ୍କର ବଡ଼ ଆଦରର ସ୍ଥାନ ହୋଇଥିଲା ଏବଂ କୋଡ଼ିଏବର୍ଷକାଳ ଏହିଠାରେ ଶିକ୍ଷକତା କରି ଏହି ରାମଚଣ୍ଡୀ ଠାକୁରାଣୀଙ୍କ ସେବାରେ ତାଙ୍କର ଦେହତ୍ୟାଗ ହେଲା । ମୋର ପିତାମହ ଯେପରି ପାରଳାଖେମଣ୍ଡିରେ ଶ୍ମଶାନଚଣ୍ଡୀ ସାଧନା କରୁ କରୁ ପ୍ରାଣତ୍ୟାଗ କଲେ, ମୋର ପିତାଙ୍କର ମଧ୍ୟ ସେହି ଦଶା ହେଲା । ମୋତେ ଯେତେବେଳେ ୧୮ ବର୍ଷ ଏବଂ ମୁଁ ଯେତେବେଳେ ଖୋର୍ଦ୍ଧା ହାଇସ୍କୁଲର ଶେଷ ଶ୍ରେଣୀରେ ପଢ଼ୁଥିଲି ସେତେବେଳେ ଅଗଷ୍ଟମାସରେ ମୋର ପିତା ଏହି ଠାକୁରାଣୀଙ୍କ ପାଖରେ ସଂପୁଟ ଚଣ୍ଡୀପାଠ କରୁଥିଲେ । ପାଠ କରୁ କରୁ ମଳବେଗ ହେବାରୁ ଚଣ୍ଡୀପାଠ ସମ୍ପୂର୍ଣ୍ଣ ନକରି ମଳତ୍ୟାଗ କରିବାକୁ ଗଲେ କିନ୍ତୁ ମନରେ ଡର ଯେ ଚଣ୍ଡୀପାଠରେ ବାଧା ଘଟିଲା କିଛି ଗୋଟାଏ ଅନିଷ୍ଟ ହେବ । ଏହି ମନ ଅବସ୍ଥାରେ ମଳତ୍ୟାଗ ସମୟରେ ସେ ଯେପରି ଅନୁଭବ କଲେ ଯେ କିଏ ତାଙ୍କୁ ଡାକୁଛି । କାହିଁ କେଉଁଠାରେ ତ କିଏ ନାହିଁ । ତେଣୁ ସେ ଭାବିଲେ ଏହି ହୁଏତ ହେଉଛି ଠାକୁରାଣୀଙ୍କର । ଏହି ଡର ଯୋଗୁଁ ସେହି ଦିନଠାରୁ ତାଙ୍କର ଜ୍ୱର ଆରମ୍ଭ ହେଲା ଏବଂ ସେଥିରେ ସେ ଦଶଦିନ ମଧ୍ୟରେ ଦେହତ୍ୟାଗ

କଲେ । ଲୋକେ କହନ୍ତି ସନ୍ନିପାତ ବା ଟାଇଫଏଡ଼ ହେଲା । କିନ୍ତୁ ଯାହା କିଛି ହେମାର ହେଉ ଚିକିତ୍ସାର ଅଭାବରେ ଏବଂ ଖରାପ ଚିକିତ୍ସାରେ ତାଙ୍କର ମୃତ୍ୟୁ ହେଲା । ପରେ ମୁଁ ଶୁଣିଲି ବହୁତ କୁଇନାଇନ ଦିଆଗଲା ଏବଂ ସନ୍ନିପାତ ବୋଲି ପାଣି ପିଇବାକୁ ଦିଆଗଲାନାହିଁ । ଶେଷରେ ଟାଇଫଏଡ଼ର ବିଷ ଦେହରେ ଜରିଗଲା ଏବଂ ଶୁଷ୍କ ଜିହ୍ୱାରେ ପାଣି ଟୋପେ ନପାଇ ଜୀବନ ତ୍ୟାଗ କଲେ । ମୋର ମାଟ୍ରିକ୍ୟୁଲେଶନର ଶେଷବର୍ଷ ହୋଇଥିବାରୁ ମୋର ପଢ଼ାପଢ଼ିରେ ବ୍ୟାଘାତ ଜନ୍ମିବ ବୋଲି ମୋ ପାଖକୁ ଆସିବାକୁ ଚିଠି ବା ଟେଲିଗ୍ରାମ ପଠାଇଲେ ନାହିଁ ଏବଂ ଯେଉଁ ପ୍ରିୟ ଜ୍ୟେଷ୍ଠପୁତ୍ର ଉପରେ ସେ ଏତେ ଆଶା ଭରସା ଗଢ଼ିଥିଲେ ତାକୁ ନ ଦେଖି ଦେହତ୍ୟାଗ କଲେ । ଯାହାହେଉ ଲେଖିବା ସ୍ରୋତରେ ମୁଁ ବହୁତ ଆଗକୁ ଭାସି ଆସିଛି । ମୋତେ ବର୍ତ୍ତମାନ ସେହି ସମୟକୁ ଫେରିଯିବାକୁ ହେବ ଯେତେବେଳେ ପିତା ନିଜର ପ୍ରିୟ ଜନ୍ମସ୍ଥାନ ଗ୍ରାଉଡ଼ କୁଟୁମ୍ବ ପରିପୋଷଣ କରିବାକୁ ଏହି ସୁରମ୍ୟ ତାଳଗ୍ରାମପଲ୍ଲି ଗ୍ରାମକୁ ଆସିଲେ । □□□

## ବିଦ୍ୟାରମ୍ଭ

ତାଳଗ୍ରାମପଲ୍ଲିରେ ପିତାଙ୍କ ପ୍ରାଇମେରୀ ସ୍କୁଲରେ ପଢ଼ା ଆରମ୍ଭ କଲି । ପିତା ଜ୍ୟୋତିଷ ବିଦ୍ୟାରେ ଧୁରନ୍ଧର ଥିଲେ । ସେ ମୋର ଜାତକ ତିଆରିକରି ଦେଖିପାରିଲେ ଯେ ପାଠପଢ଼ାରେ ବିଚକ୍ଷଣ ହେବ ଏବଂ ଜୀବନରେ ଏକ ଉଚ୍ଚ ସ୍ଥାନ ଅଧିକାର କରିବ ଏବଂ ବହୁ ଧନ ସମ୍ପତ୍ତିର ଅଧିକାରୀ ହେବ। କାରଣ ବିଦ୍ୟାସ୍ଥାନ ଅଧିପତି ଚନ୍ଦ୍ର ତୁଙ୍ଗୀ ହୋଇ ବୃହସ୍ପତି ସଙ୍ଗେ ଯୁକ୍ତ ହୋଇଅଛି ଏବଂ ପଞ୍ଚମ ସ୍ଥାନରେ ରାହୁ ଉଚ୍ଚରେ ଅଛି ଏବଂ ଭାଗ୍ୟାଧିପତି ଓ ଧନାଧିପତି ମଙ୍ଗଳ ଧନ ସ୍ଥାନରେ ଅଛି ଏବଂ ଭାଗ୍ୟ ସ୍ଥାନକୁ କର୍ମାଧିପତି ବୃହସ୍ପତିର ସମ୍ପୂର୍ଣ୍ଣ ଦୃଷ୍ଟି ଅଛି ଏବଂ ଶନି କୁମ୍ଭରେ ଅଛି । ଜ୍ୟୋତିଷବିଦ୍ୟାର ଆଉ କିଛି ଭଲମନ୍ଦ ଥାଉ ନା କାହିଁକି ଜ୍ୟୋତିଷମାନେ ଯେପରି ଭାବରେ ଶ୍ଳୋକ ବୋଲି କହନ୍ତି ମନରେ ସାହସ ଆସେ । ସେମାନେ ଭାରି ଚାଲାକ ଓ ମନସ୍ତତ୍ତ୍ୱବିଦ୍ । ତୁମେ କଣ ପୁଚ୍ଛୁଛ ସେମାନେ ଅନୁମାନ କରି ନିଅନ୍ତି । କିଏ ପୁଚ୍ଛୁଛି ସନ୍ତାନ, କିଏ ଧନ, କିଏ ମକଦ୍ଦମାରେ ଜୟ, କିଏ ଚାକିରି । ଏକଥା ଅନୁମାନ କରି ତୁମର ମନଲାଖି

ଗୋଟିଏ କଥା କହୁଥାଆନ୍ତି ଯେଉଁଟା ତୁମ ମନକୁ ଦୋହଲାଇଦିଏ । ଅଶୁଭ ଲକ୍ଷଣ ଦେଖିଲେ ଘୋଡ଼ାଇ ଦିଅନ୍ତି । ତେଣୁ ଜାତକ ଦେଖାଇବା ଲୋକମାନଙ୍କର ମହା ଆନନ୍ଦ ଏବଂ ଏଥିରୁ ଜ୍ୟୋତିଷମାନେ ବେଶ୍ ଦୁଇପଇସା କରନ୍ତି । ଦିଲ୍ଲୀ ନଗରରେ ଜ୍ୟୋତିଷୀ ସଂଖ୍ୟା ବହୁତ ଏବଂ ଅଧିକାଂଶ ମନ୍ତ୍ରୀ ଓ ଏମ. ପି. ସେମାନଙ୍କର ଭକ୍ତ । କିଏ ମନ୍ତ୍ରୀ ହେବ, କିଏ ଗଭର୍ଣ୍ଣର ହେବ, କିଏ ଦେଶପ୍ରତିନିଧି ହୋଇ ଯିବ, କିଏ ମନ୍ତ୍ରୀ ପଦରୁ ଖସିପଡ଼ିବ ସେଥିପାଇଁ ସମସ୍ତେ ଜ୍ୟୋତିଷୀର ସାହାଯ୍ୟ ନିଅନ୍ତି । ଖାଲି ନେହେରୁ ଏହାର ପକ୍ଷପାତୀ ନ ଥିଲେ ଏବଂ ବୋଧହୁଏ ତାଙ୍କ ଝିଅ ନୁହନ୍ତି, ଏହା ଧାର୍ମିକତାର ପରିଚାୟକ । ପିତାଙ୍କ ପାଖକୁ ଅନେକ ଜାତକ ଗଣନା କରିବାକୁ ଆସନ୍ତି । ସେ ଗଣନା କଲାବେଳେ ମୁଁ ଶୁଣି ଶୁଣି ଜ୍ୟୋତିଷବିଦ୍ୟାରେ କିଛି ଜ୍ଞାନ ଅର୍ଜ୍ଜନ କରିଛି ଏବଂ ତାହା ବନ୍ଧୁମାନଙ୍କ ଜାତକ ଦେଖିବାରେ ବେଶ୍ କାମରେ ଲାଗେ ।

ଜାତକର ଫଳ ଯାହା ହେଉନା କାହିଁକି ମୁଁ ଥିଲି ଘୋଷବନ୍ତ ବଳବନ୍ତ । ମୁଁ ଯାହା ଥରେ ପଢ଼ିଲେ ମନେ ରହିଯାଉଥିଲା ଏବଂ ପାଠ ମୁଖସ୍ଥ କରିବାକୁ ବେଶୀ ସମୟ ଲାଗୁ ନ ଥିଲା । ପିତା ସଂସ୍କୃତ ଓ ଓଡ଼ିଆ ସାହିତ୍ୟ ଛଡ଼ା ଗଣିତରେ ମଧ୍ୟ ବଡ଼ ଆଗ୍ରହୀ ଥିଲେ । ସେ ସମୟର ଲୀଳାବତୀ ସୂତ୍ର କଠିନ ଗଣିତ ମଧ୍ୟରେ ବିବେଚିତ ହେଉଥିଲା, ଯେ କିନ୍ତୁ ବୀଜଗଣିତ ଛଡ଼ା ଆଉ କିଛି ନୁହେ । ମୁଁ ସେ ସବୁ ଗଣିତ ଯେତେବେଳେ ଅବଲୀଳାକ୍ରମେ କରିପାରୁଥିଲି ଏହା ଦେଖି ପିତା ଓ ଗ୍ରାମର ପଢ଼ାଶୁଣା ଲୋକେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଉଥିଲେ । ପଢ଼ିବା ତ ମୋ ପାଇଁ ଗୋଟିଏ ଖେଳ ଘର ଥିଲା । ଏହା ଦେଖି ଲୋକମାନେ କହୁଥିଲେ, "ମାଷ୍ଟ୍ରେ, ଏ ପୁଅଟି ତୁମର ନାମ ରଖିବ ।" ପିତା ମୋର ପ୍ରତିଭାରେ ଆଶାନ୍ୱିତ ହୋଇ ଗଞ୍ଜାମ ଜିଲ୍ଲା ପ୍ରଣାଳୀରେ ନ ପଢ଼ାଇ ଓଡ଼ିଶା ପ୍ରଣାଳୀରେ ପଢ଼େଇବାକୁ ମନସ୍ଥ କଲେ । ସେତେବେଳକୁ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ଥିଲା ଏବଂ ଛାତ୍ରମାନଙ୍କର କେବଳ ଦକ୍ଷତା ଉପରେ କିଛି ଛାତ୍ରବୃତ୍ତି ନ ଥିଲା, ଯାହା ଥିଲା ଓଡ଼ିଶା ପ୍ରଣାଳୀରେ । ତେଣୁ ମୋତେ ଯେତେବେଳେ ସାତବର୍ଷ ମୁଁ ଫେରି ଆସିଲି ମୋର ସେହି ପ୍ରିୟ ଜନ୍ମସ୍ଥାନ ବୃତ୍ତୀବରକୁ ସେଠାରେ ନିମ୍ନ ପ୍ରାଥମିକ ସ୍କୁଲରେ ପଢ଼ି ବୃତ୍ତି ପରୀକ୍ଷା ଦେବାକୁ । ସେତେବେଳେ ମୋର କକେଇ ଗଣେଶ୍ୱର ରଥେ ପ୍ରାୟ ଦୁଇମାଇଲ ଦୂର ପାଲିଦା ଉଚ୍ଚ ପ୍ରାଥମିକ ସ୍କୁଲରେ ଶିକ୍ଷକ ଥିଲେ ଏବଂ ପ୍ରତିଦିନ ସେଠାକୁ ଯିବା ଆସିବା କରୁଥିଲେ । ମୁଁ ଆମ ଗାଁ ସ୍କୁଲରେ ନାମ ଲେଖାଇ ବୃତ୍ତି ପରୀକ୍ଷା

ହେଲି । ସେତେବେଳେ ସେ ଇଲାକାର ବୃତ୍ତି ପରୀକ୍ଷା ପୁରୀ ଟ୍ରେନିଂ ସ୍କୁଲରେ ହେଉଥାଏ । ଟାଇଲ ଘର, ଛାତ ଉପରେ ଛାତ । ଆମକୁ କୁହାଯାଉଥାଏ, ଛାତ ଉପରେ ଛାତ ଦେଖି ଡରିବ ନାହିଁ । ପିତାଙ୍କ ସଙ୍ଗେ ସେଠାକୁ ପରୀକ୍ଷା ଦେବାକୁ ଗଲି । ଜୀବନରେ ସେଇଟା ହେଉଛି ମୋର ପ୍ରଥମ ଲିଖିତ ପରୀକ୍ଷା । କଣ ଲେଖିଲି ମନେ ନାହିଁ । କିନ୍ତୁ ବୃତ୍ତି ପାଇଲି । ପୁରୀରୁ ଫେରିଲାବେଳକୁ ସତ୍ୟବାଦୀ ସ୍କୁଲ ବାଟେ ଆସିଲୁ । ସେଠି ଗୋଟିଏ ଦିନ ରହିଲୁ । ସେତେବେଳେ ମାଳୁଦର ଶ୍ରୀ ଉଦୟନାଥ ଦାସ ସେଠାରେ ପଢୁଥିଲେ । ତାଙ୍କ ପାଖରେ ରହିଲୁ । ଚାଲି ଚାଲି ମୋର ଗୋଡ଼ ଦରଜ ହୋଇଯାଇଥିବାରୁ ସେ ମୋତେ କାନ୍ଧେଇ ଷ୍ଟେସନରେ ଛାଡ଼ି ଆସିଥିଲେ । ସନ୍ଧ୍ୟାବେଳେ ଛାତ୍ରାବାସରେ ଶ୍ଲୋକାନ୍ତର ପ୍ରତିଯୋଗିତା ଦେଖିଲୁ । ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ବାବୁ ଇତ୍ୟାଦି ବୋଧହୁଏ ଥାଆନ୍ତି । ଶ୍ଲୋକଟିଏ ସରିଲାକ୍ଷଣି ଚଟାପଟ ଆଉ ଜଣେ ଉଠି ତାର ଯୋଡ଼ ଦିଏ । ଏହି ପାଣ୍ଡିତ୍ୟପୂର୍ଣ୍ଣ ପ୍ରତିଯୋଗିତା ମୋର ମନରେ ଖୁବ୍ ଜୋର୍ ରେଖାପାତ କରିଥିଲା ଏବଂ ଏହା ମୋର ଭବିଷ୍ୟତ ଜୀବନରେ ସଂସ୍କୃତ ପ୍ରତି ପ୍ରଗାଢ଼ ଆଗ୍ରହ ଜାତ କରାଇଥିଲା ଯାହାଯୋଗୁଁ ମୁଁ ଆଇ. ଏ. ପର୍ଯ୍ୟନ୍ତ ସଂସ୍କୃତ ନେଇ ବହୁତ ଶ୍ଲୋକ ମୁଖସ୍ଥ କରିଥିଲି । ସେଥିରୁ କିନ୍ତୁ ଗୋଟିଏ ହେଲେ ମନେ ନାହିଁ ଅଥଚ ଶ୍ରୀଯୁକ୍ତ ଜଗତ୍‌ବନ୍ଧୁ ମହାପାତ୍ର ପିଲାଦିନେ ମୁଖସ୍ଥ କରିଥିବା ଶ୍ଲୋକ ଓ କାବ୍ୟ ଅନର୍ଗଳ ଗାଇ ଦେଇ ଯାଉଥିଲେ । ମୋର ମୁଖସ୍ଥ ଓ ମନେ ରଖିବାର ଗୋଟିଏ ବିଶେଷତ୍ୱ ଥିଲା । ହଠାତ୍ ସବୁ ମନେ ରହିଯାଏ ଏବଂ ସବୁ ମୁଖସ୍ଥ ହୋଇଯାଏ କିନ୍ତୁ କିଛିଦିନ ପରେ ପୁଣି ଭୁଲିଯାଏ । ଅବଶ୍ୟ ମର୍ମ ଭୁଲେ ନାହିଁ କିନ୍ତୁ ଭାଷା ଭୁଲିଯାଏ ଏବଂ ମର୍ମକୁ ନିଜ ଭାଷାରେ ପ୍ରକାଶ କରେ । ତା ପରେ ଲୋକର ନାମ ଓ ସ୍ଥାନର ନାମ ମୋର ଆଦୌ ମନେ ରହେନାହିଁ ଏବଂ ଜଣେ ଲୋକକୁ ଦେଖିଥିଲେ ଦୁଇଦିନ ପରେ ଦେଖିଲେ ତାକୁ ଚିହ୍ନି-ପାରିବି ନାହିଁ । ସେହି କାରଣରୁ ଅନେକ ଲୋକ ମୋତେ ଭୁଲ ବୁଝନ୍ତି । ସେଥିରୁ ଅନୁମାନ ହୁଏ ମସ୍ତିଷ୍କର କେତେକ ଅଂଶ ମୋର ବୋଧହୁଏ ଭଲରୂପେ କାମ କରେ ନାହିଁ ବା ମୁଁ ଏସବୁ ମନେ ରଖିବାରେ ବୀତସ୍ପୃହ !

ମୋର ଶୀଘ୍ର ମନେ ରଖିବା ଓ ଶୀଘ୍ର ଭୁଲିଯିବାର ବୋଧହୁଏ କାରଣ ହେଉଛି ଏହା ପିଲାଦିନରୁ ମୋର ଆବଶ୍ୟକତା ଥିଲା । ପିଲାଦିନୁ ପିତାଙ୍କର ଇଚ୍ଛାନୁକ୍ରମେ ମୋର ଉଦ୍ଦେଶ୍ୟ ଥିଲା ଯେପରି ପ୍ରତି ଶ୍ରେଣୀରେ, ପ୍ରତି ପରୀକ୍ଷାରେ ଏବଂ ପ୍ରତି ବିଷୟରେ ପ୍ରଥମ ସ୍ଥାନ ଅଧିକାର କରିବି ଏବଂ ବୃତ୍ତି ପାଇବି । କାରଣ

ବୃତ୍ତି ନ ପାଇଲେ ଆଉ ଅଧିକ ପଢ଼ିବାର କୌଣସି ଅବକାଶ ନ ଥିଲା । ତେଣୁ ସବୁ ବିଷୟ ପଢ଼ି, ମୁଖସ୍ଥ କରି, ଅବିକଳ ପରୀକ୍ଷାରେ ସନ୍ନିବିଷ୍ଟ କରିବା ଥିଲା ମୋର ପିଲାଦିନରୁ ଲକ୍ଷ୍ୟ । ତେଣୁ କି ଇଂରାଜୀ, କି ସଂସ୍କୃତ, କି ଇତିହାସ, କି ଭୂଗୋଳ କି ସାହିତ୍ୟ ସବୁଥିରେ ମୋର ସମାନ ଆଗ୍ରହ ଥିଲା ଏବଂ ସବୁ ଘୋଷି ପ୍ରତ୍ୟେକ ବିଷୟରେ ପ୍ରଥମ ସ୍ଥାନ ଅଧିକାର କରିପାରୁଥିଲି । ଗଣିତରେ ଅବଶ୍ୟ ବିଶେଷ ବ୍ୟୁତ୍ପତ୍ତି ଥିଲା କେବଳ ମୋର ପ୍ରିୟ ସହପାଠୀ ରତ୍ନାକର ଷଡ଼ଙ୍ଗୀଙ୍କର ତାଳକୁ । ପ୍ରତ୍ୟେକ ବିଷୟରେ ମୋର କେବଳ ବ୍ୟବସାୟଗତ ସ୍ପୃହା ଥିବାରୁ ମୁଁ ଜାଣିପାରୁ ନ ଥିଲି କେଉଁ ବିଷୟଟାକୁ ମୁଁ ବେଶୀ ଭଲ ପାଏ । ତେଣୁ ବି. ଏ. ରେ ଅନର୍ସ ନେଲାବେଳେ ମୁଁ ଠିକଏ ଅଡୁଆରେ ପଡ଼ିଲି । ଇଂରେଜୀ ନେବି କି ଗଣିତ ନେବି କିଛି ଠିକ୍ କରି ନପାରି ଶେଷରେ ଅର୍ଥନୀତି ନେଇଗଲି ।

ନିମ୍ନପ୍ରାଥମିକ ବୃତ୍ତି ପରେ ମୁଁ ଧରିବସିଲି ମାଇନର ସ୍କୁଲକୁ ଯିବାକୁ । ସେତେବେଳକୁ ମୋତେ ମୋଟେ ଆଠ ବର୍ଷ ହୋଇଥିବାରୁ ସୁଦୂର ବାଣପୁରକୁ ପଠାଇବାକୁ କେହି ରାଜି ହେଲେନାହିଁ । ତେଣୁ ବାଧ୍ୟ ହୋଇ ମାଳୁଦ ଉଚ୍ଚପ୍ରାଥମିକ ସ୍କୁଲରେ ପଢ଼ିଲି । ସେତେବେଳେ ତ କେହି ଭାବି ନ ଥିଲେ ମୁଁ ସେ ସୁଦୂର ଟାପୁରୁ ପଢ଼ି ବି.ଏ., ଏମ୍. ଏ. ପର୍ଯ୍ୟନ୍ତ ଯାଇପାରିବି ବୋଲି । ବୋଧହୁଏ ବୃତ୍ତି ପାଇ ପାଇ ଗଲେ ମ୍ୟାଟ୍ରିକୁଲେସନ ପର୍ଯ୍ୟନ୍ତ ପଢ଼ିବା ସମସ୍ତଙ୍କର ଉଚ୍ଚତମ ଅଭିଳାଷ ଥିଲା । ପ୍ରତିଦିନ ସକାଳେ ପେଟରେ କିଛି ପୂରାଇ ମାଳୁଦ ସ୍କୁଲକୁ କକେଇଙ୍କ ସଙ୍ଗେ ଦୁଇମାଇଲ ଦୌଡ଼ିବାକୁ ପଡ଼େ ଏବଂ ଦିପହରେ କିଛି ଚୁଡ଼ା ଚୋବାଇ ସଞ୍ଜବେଳକୁ ଫେରେ । ଛୁଟିଦିନ ପିଲାଙ୍କ ସାଙ୍ଗେ ମିଶି ଘୁଡ଼ି ଉଡ଼େଇବା, ଧନୁଶରେ ଧରି ଖମ୍ବସିଂହୁଙ୍କୁ ଲକ୍ଷ୍ୟ କରିବା, ମଇଁଷି ପିଠିରେ ଚଢ଼ିବା, ମାଛ ଧରିବା ଏବଂ ଚିଲିକାରେ ଛୋଟ ନାଆ ଚଳାଇବା ମୋର କାମ ଥିଲା । ସେଥିରେ ମୋର ସାଙ୍ଗ ଥିଲେ ମୋ ଠାରୁ ଦୁଇବର୍ଷ ବଡ଼ ବଂଶୀୟ ଭାଇ ଗୋପୀନାଥ ରଥ ଯେ କି ମାଳୁଦ ସ୍କୁଲରେ ମଧ୍ୟ ପଢ଼ୁଥିଲେ । ସେହି ସମୟରେ ମୁଁ ଗୋଟିଏ ପିଲା ସାଙ୍ଗେ ସଙ୍ଗାତ ବସିଥିଲି । ସେ କିଛି ଦିନ ପରେ ମରିଗଲେ । ତେଣୁ ମୋ ସାଙ୍ଗେ ସଙ୍ଗାତ ବସିବାକୁ ଆଉ କେହି ରାଜି ହେଲେ ନାହିଁ ।

## ବାଣପୁର ସ୍କୁଲ

ମାଲୁଦରେ ଦୁଇବର୍ଷ ପଢ଼ି ଫେରେ ଅପର ପ୍ରାଇମେରୀ ବୃତ୍ତି ପାଇଲି ଏବଂ ସେଠାରୁ ଗଲି ବାଣପୁର ଏମ୍. ଇ. ସ୍କୁଲରେ ପଢ଼ିବାକୁ । ବାଣପୁର ସନ୍ନିକଟସ୍ଥ ପାଟପୁରରେ ଆମର ଦୁଇଟି ବନ୍ଧୁଘର ଥିଲେ । ଗୋଟିଏ ହେଉଛି ବଡ଼ ଭଉଣୀର ଶାଶୁଘର, ଆଉ ଗୋଟିଏ ହେଉଛି ଜେଠେଇର ବାପ ଘର । ଉଭୟେ ଗରିବ । ଉଭୟ ଜାଗାରେ ଗୋଟିକ ପରେ ଗୋଟିକରେ ରହି ପଢ଼ିବାର ଚେଷ୍ଟା କରିଗଲି; କିନ୍ତୁ କୌଣସିଠାରେ ସୁବିଧା ନ ହେବାରୁ ବାଧ ହୋଇ ମୋତେ ଛାତ୍ରାବାସରେ ରହିବାକୁ ପଡ଼ିଲା । ଏଠାରେ ପଢ଼ାପଢ଼ିର ଅବଶ୍ୟ ସୁବିଧା ହେଲା କିନ୍ତୁ ଅର୍ଥର ଅନଟନ ସବୁବେଳେ ଲାଗିରହିଲା । ଥରେ ମେସର ପାଉଣା ଦେଇପାରି ନଥିବାରୁ ଭୋଜନ ବନ୍ଦ କରି ଦେଇଥିଲେ । ସେତେବେଳେ ସ୍କୁଲର ସେକ୍ରେଟାରୀ ବାଣପୁରର ସ୍ୱନାମଧନ୍ୟ ପାଟଯୋଷୀ ଏବଂ ଛାତ୍ରାବାସ ତତ୍ତ୍ୱାବଧାରକ ଥିଲେ କେହି ଜଣେ ଶିକ୍ଷକ । ଗାଁରୁ ଟଙ୍କା ଆସିବା ପର୍ଯ୍ୟନ୍ତ ଭୋଜନ ବନ୍ଦ ନ କରିବାକୁ ବହୁତ ଅନୁନୟ ବିନୟ କଲି; କିନ୍ତୁ କିଛି ଫଳ ହେଲାନାହିଁ । ତେଣୁ ବାଧ ହୋଇ ଭୋକିଲା ପେଟରେ ଗାଁକୁ ଯିବାକୁ ପଡ଼ିଲା । ଗାଁ ହେଉଛି ଖଲ୍ଲିକୋଟ ଷ୍ଟେସନରୁ ଆଠ ମାଇଲ । ଏତକ ବାଟ ଚାଲିବାକୁ ପଡ଼େ । ଗାଁକୁ ଯାଇ ଦିନ ଦିପହରେ ହାଜର ହେଲି । ମୁହଁ ଏକଦମ ଶୁଖି ଯାଇଥାଏ । ମୋତେ ଦେଖି ପିତା ମାତା ଅବାକ୍ ହୋଇଗଲେ । ଦୁଃଖରେ ଲୁହଧାରେ ନିଶ୍ଚୟ ବୋହି ଯାଇଥିବ । ଆରଦିନ କୌଣସି ପ୍ରକାରେ କିଛିଟଙ୍କା ସଂଗ୍ରହ କରି ଫେରିଲି । ମୁଁ ବାଣପୁର ଆସିବାର ବର୍ଷେ ଦୁଇବର୍ଷ ପରେ ଆମ ଗାଁର କାର୍ଯୀଙ୍କର ପୁଅ ଓ ପୁତୁରା ଦୁଇଜଣ ଧନିକ ସନ୍ତାନ ମୋ ସଙ୍ଗେ ପଢ଼ିବାକୁ ଆସିଲେ । ସେମାନେ ସାଙ୍ଗରେ ଚୂଡ଼ା, ଚିନି ଓ ଘିଅ ଆଣିଥାନ୍ତି । ଜଳଖିଆ ସମୟରେ ସେଥିରୁ କିଛି କିଛି ମୋତେ ମିଳେ । ଛାତ୍ରାବାସରେ ଯେଉଁ ନିୟନ୍ତ୍ରିତ ଆଧାର ଏବଂ ପାଠର ଯେଉଁ ଚୋଡ଼ ଏହାକୁ ସମ୍ଭାଳି ସେମାନେ ବେଶୀ ଦିନ ରହିପାରିଲେ ନାହିଁ । ତେଣୁ ମୋତେ ପୁଣି ଗାଁର ଏକାକୀ ହୋଇ ରହିବାକୁ ପଡ଼ିଲା ।

ଉଚ୍ଚ ପ୍ରାଥମିକ ପଢ଼ି ମୋର ଦୁଇ ବର୍ଷ ନଷ୍ଟ ହୋଇଗଲା । ଉଚ୍ଚ ପ୍ରାଥମିକ ହେଉଛି ଚତୁର୍ଥ ପଞ୍ଚମ ଶ୍ରେଣୀ । ମାଇନର ସ୍କୁଲରେ ଇଂରେଜୀ ଆରମ୍ଭ

ହୁଏ ଚତୁର୍ଥ ଶ୍ରେଣୀରୁ । ଉଚ୍ଚ ପ୍ରାଥମିକରେ ଇଂରେଜୀ ପଢ଼ା ହେଉନଥିବାରୁ ପୁଣି ମୋତେ ୪ର୍ଥ ଶ୍ରେଣୀରେ ନାମ ଲେଖାଇବାକୁ ପଡ଼ିଲା ।

ବାଣପୁର ଆସିଲାପରେ ଦେଖିଲି ଛଣଗିରିର ମଧୁସୂଦନ ଲେଙ୍କା ନାମରେ ଜଣେ ଛାତ୍ର ଉଚ୍ଚ ପ୍ରାଥମିକ ବୃତ୍ତି ପାଇ ମୋ ସଙ୍ଗେ ପଢ଼ିଲେ । କିନ୍ତୁ ଗୃହବର୍ଷ ପଢ଼ିଲେ ଏମ୍. ଇ. ବୃତ୍ତି ପରୀକ୍ଷା ଦେବାକୁ ତାଙ୍କର ବୟସ ସୀମା ପାର ହୋଇଯିବ ବୋଲି ସ୍କୁଲ କର୍ତ୍ତୃପକ୍ଷ ୩ ମାସ ପରେ ତାଙ୍କୁ ୫ମ ଶ୍ରେଣୀକୁ ଉଠାଇଦେଲେ । ଏହା ଦେଖି ମୁଁ ଉତ୍ସାହିତ ହେଲି । ଚତୁର୍ଥ ଶ୍ରେଣୀର ଇଂରେଜୀ ବହିକୁ ମାସକ ମଧ୍ୟରେ ଘୋଷି ଦେଇ ମୋତେ ପରୀକ୍ଷା କରିବାକୁ ଚାପ ଦେଲି । କିନ୍ତୁ ସେମାନେ ମୋଟେ ଶୁଣିଲେ ନାହିଁ । କାରଣ ଗୃହବର୍ଷ ପରେ ମଧ୍ୟ ମୋର ବୃତ୍ତି ପରୀକ୍ଷା ଦେବାକୁ ବୟସ ଅଛି । ସ୍କୁଲରୁ ବୃତ୍ତି ପରୀକ୍ଷାକୁ ବର୍ଷକୁ କେବଳ ଗୋଟିଏ ଛାତ୍ର ପଠାଯାଏ । ମଧୁସୂଦନ ଏ ବର୍ଷ ଗଲେ ମୁଁ ଆର ବର୍ଷ ଯିବି ଏଥିରେ ସ୍କୁଲର ନାମ ହେବ । ତେଣୁ ସ୍କୁଲର ସୁନାମ ଦୃଷ୍ଟିରୁ ମୋତେ ୫ମ ଶ୍ରେଣୀକୁ ନେବା ସମ୍ଭବ ହେଲାନାହିଁ । ଆମେ ଉଭୟେ ଗରିବ । ବୃତ୍ତି ପାଇଲେ ହିଁ ପଢ଼ିପାରିବୁ । ତେଣୁ ସ୍କୁଲ କର୍ତ୍ତୃପକ୍ଷ ଏହିପରି ବିଚାର କଲେ । ବାଧ୍ୟ ହୋଇ ଗୃହବର୍ଷ ପଢ଼ିଲି । କଣ ପଢ଼ିବି ? ପ୍ରଥମ ଦୁଇବର୍ଷର ପାଠତ ସବୁ ପଢ଼ା ସରିଛି ଖାଲି ଇଂରେଜୀ ଗୁଡ଼ା । ତେଣୁ ଆଦୌ ଭଲ ଲାଗୁ ନଥାଏ । ତେବେ ଇଂରେଜୀକୁ ଖୁବ୍ ଭଲଭାବରେ ପଢ଼ିଲି ଏବଂ ଶ୍ରେଣୀର ବହି ଛଡ଼ା ବାହାର ବହି ବହୁତ ପଢ଼ିଲି । ସେହି କାରଣରୁ ଇଂରେଜୀରେ ମୋର ମୂଳଦୁଆ ଯୋର ହୋଇଗଲା । ସ୍କୁଲରେ ପଢ଼ିଲା ସମୟରେ ଇଂରେଜୀ ମାଷ୍ଟ୍ରେ ଥରେ ଗୋଟିଏ ପ୍ୟାସେଜ ପଢ଼ିଦେଲେ ଏବଂ ତାହାକୁ ନିଜ ଭାଷାରେ ଲେଖିବାକୁ କହିଲେ । ମୁଁ ବାହାଦୁରି ଦେଖାଇବାକୁ ସେହି ପ୍ୟାସେଜକୁ ଆଗ ଅବିକଳ ଲେଖିଦେଲି ତା ପରେ ସାରାଂଶ ନିଜ ଭାଷାରେ ଲେଖିଦେଲି । ଏହା ଦେଖି ମାଷ୍ଟ୍ରେ ଭାରି ଖୁସି ହେଲେ । ମ୍ୟାଟ୍ରିକ୍ୟୁଲେଶନ ଏକାଦଶ ଶ୍ରେଣୀରେ ପଢ଼ିଲାବେଳେ ପ୍ରେସି ରାଇଟିଙ୍ଗରେ ସମୁଦାୟ ଭାରତବର୍ଷରେ ଗୋଟିଏ ପ୍ରତିଯୋଗିତାମୂଳକ ପୋଷ୍ଟାଲ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଗୋଟିଏ ପୁରସ୍କାର ପାଇଥିଲି । ଏହାଦେଖି ହେଡ଼ମାଷ୍ଟର ବାଙ୍କନିଧି ବାବୁ ବଡ଼ ପ୍ରୀତ ହୋଇଥିଲେ ।

ମେସକୁ ଖାଇବାକୁ ଗଲାବେଳେ ଆମେ ସମସ୍ତେ ବାସନ ନେଇ ଯାଉ ଏବଂ ଖାଇସାରିବାପରେ ବାସନ ମାଜି ସାଥିରେ ନେଇଆସୁ । ଗୁରଟା ବେଳେ ସମସ୍ତେ ଖେଳରେ ଯୋଗଦେବାକୁ ବାଧ୍ୟ । ସକାଳ ଭୋରରୁ ପ୍ରାର୍ଥନା ହୁଏ । ଏ

ସବୁ ସତ୍ୟବାଦୀ ଢାଞ୍ଚାରେ ଚାଲୁଥାଏ । ସକାଳ ଓ ଉପରବେଳା **Study hour** । ସେ ସମୟରେ କେହି ପିଲା ତାଙ୍କ ଆସନରୁ ଉଠିପାରିବେ ନାହିଁ । ଛାତ୍ରାବାସରେ ଆମେ ସବୁ ତଳେ ଶୋଉ । ଲମ୍ବା ଲମ୍ବା ହଲ ଥାଏ । ଆଜିକାଲି-ପରି ବିଜୁଳି ଆଲୁଅ ନ ଥାଏ । ସମସ୍ତଙ୍କର ଗୋଟିଏ ଗୋଟିଏ ଲଣ୍ଠନ । ସକାଳ ଓ ଉପରବେଳା ଜଳଖିଆ ଖାଲି ମୁଢ଼ି । ଜଣେ ମୁଢ଼ିବାଲା ଆସି ମୁଢ଼ି ବିକିଯାଏ । ବାଣପୁରରେ ପଢ଼ିଲାବେଳେ ମୋର କେତେକ ଛାତ୍ରଙ୍କ ସଙ୍ଗେ ବନ୍ଧୁତା ହେଲା ଯାହା ଭବିଷ୍ୟତ ଜୀବନରେ ମଧ୍ୟ ରହିଲା । ମାୟାଧର ମାନସିଂହ ତ ଆମ ଗାଁ ପିଲା । ଅନ୍ୟମାନେ ହେଉଛନ୍ତି ଶ୍ୟାମସୁନ୍ଦର ପଟ୍ଟନାୟକ, ତାଙ୍କ ସାନଭାଇ ଲକ୍ଷ୍ମୀଧର ଓ ବନ, ଅଣ୍ଟାଳିଆ ବଂଶୀକୃଷ୍ଣ ମହାନ୍ତି, ବନମାଳୀ ମିଶ୍ର ଓ ମାର୍କଣ୍ଡେୟ ଶତପଥୀ । ଶ୍ୟାମସୁନ୍ଦର ମୁରବୀ ଶ୍ରେଣୀର ପିଲା, ଧନିକସନ୍ତାନ କିନ୍ତୁ ବଡ଼ ଅମାୟିକ ଓ ସରଳ । ବଂଶୀକୃଷ୍ଣ ରେଳବାଇ ଗାର୍ଡ଼ର ଅଭିନୟ କରନ୍ତି । ଶେଷରେ ସେ ରେଳବାଇରେ କାମ କଲେ । ମାର୍କଣ୍ଡେୟ ଶତପଥୀ ପୋଲିସ ବିଭାଗରେ ଯୋଗଦେଇ ଏସ୍. ପି. ହୋଇ ଅବସର ଗ୍ରହଣକଲେ । ମାୟାଧର ଅସହଯୋଗ ଆନ୍ଦୋଳନପରେ ଆଉ ବାଣପୁର ଆସିଲେ ନାହିଁ, ଯାଇ ପଢ଼ିଲେ ବାରିପଦାରେ । ମୁଁ ଫେର୍ ବାଣପୁରରେ କାହିଁକି ପଢ଼ିଲି ସେଥିରେ ସେ କ୍ଷୁବ୍ଧହୋଇ ଗୋଟିଏ କଡ଼ା ଚିଠି ଛାତ୍ରାବାସକୁ ଲେଖିଥିଲେ । ଏଥିରେ ସମସ୍ତଙ୍କର କୌତୂହଳ ଜାତ ହୋଇଥିଲା । ବାଣପୁର ଛାତ୍ରାବାସରେ ପ୍ରାୟ ଷାଠିଏ ଖଣ୍ଡେ ଛାତ୍ର ଥାନ୍ତି । ଏହି ଇଲାକାରେ ପ୍ରତ୍ୟେକ ଇଞ୍ଚରେ ଚାଷ ହେଉଥିବାରୁ ଝାଡ଼ା ଫେରିବାକୁ ଜାଗା ନ ଥାଏ । ଆମେମାନେ ଭୋରରୁ କେହି ନଉଠୁଣୁ ଉଠି ପାଖରେ ଥିବା ବିଲମାଳକୁ ଝାଡ଼ାଯାଉ । ଫସଲ ନ ଥିବା ସମୟରେ କିଛି ଅସୁବିଧା ହୁଏ ନାହିଁ । ଫସଲ ଥିଲା ସମୟରେ ବିଲ ହୁଡ଼ାରେ ଝାଡ଼ା ବସିବା ଛଡ଼ା ଅନ୍ୟ ଉପାୟ ନଥାଏ । ଛାତ୍ରାବାସ ପାଖରେ ଥିବା ଅଧିକାଂଶ ଜମି ଶ୍ରୀ ହରିବନ୍ଧୁ ପରିଡ଼ାଙ୍କର ଯେ କି ସତ୍ୟବାଦୀ ସ୍କୁଲରୁ ପାସକରି ପରେ ଆଇନ ପଢ଼ି ଗାଁରେ ରହିଲେ ଏବଂ ପରେ ସରପଞ୍ଚ ହେଲେ । ତାଙ୍କ ଭାଇ ଚାଷକାମ କରୁ-ଥାନ୍ତି, ମଫସଲ ଚଳଣିରେ ସେ ଜଣେ ଜବରଦସ୍ତ ଚାଷୀ । ଆମେ ଏତେ ପିଲା ହୁଡ଼ାରେ ଝାଡ଼ା ଫେରିଲେ ତାଙ୍କର ଯିବା ଆସିବା ବାଟ ବନ୍ଦ ହୋଇଯାଏ । ତେଣୁ ସେ ଆମକୁ ଦେଖିଲେ ଠେଙ୍ଗା ଧରି ଗୋଡ଼ାନ୍ତି । ସେ ଆସିବା ଆଗରୁ ଆମେମାନେ କୌଣସିମତେ ଝାଡ଼ାଫେରି ଫେରିଆସୁ ।

ବାଣପୁର ସ୍କୁଲଟି ସତ୍ୟବାଦୀ ଢାଞ୍ଚାରେ ଗଢ଼ାତ । ବାଣପୁର ମୁକୁଟ-

କଥିତ ସମ୍ରାଟ, ଗୋଦାବରୀଶ ମିଶ୍ରଙ୍କର ଜନ୍ମସ୍ଥାନ ଏବଂ ବାଣପୁରର ସମସ୍ତ ଶିକ୍ଷିତ ଓ ଗୁଣିମାନେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ । ସେ ସତ୍ୟବାଦୀ ସ୍କୁଲର ଜଣେ ପ୍ରଧାନ ପୁରୋଧା ଥିବାରୁ ବାଣପୁର ସ୍କୁଲ ଯେ ପୂରା ସତ୍ୟବାଦୀ ଢାଞ୍ଚାରେ ଆଧାରିତ ହେବ ଏଥିରେ ସନ୍ଦେହ ନାହିଁ । ସେତେବେଳେ ବାଣପୁର ସ୍କୁଲର ହେଡ୍‌ମାଷ୍ଟର ଥାଆନ୍ତି ଗୋଦାବରୀଶ ବାବୁଙ୍କର ଅନ୍ତରଙ୍ଗବନ୍ଧୁ ଭୁବନେଶ୍ୱରର ରଘୁନାଥ ମହାପାତ୍ର । ସେକେଣ୍ଡ ମାଷ୍ଟର ଥାଆନ୍ତି ବୋଲଗଡ଼ର ବାମନଚନ୍ଦ୍ର ଦାସ, ସଂସ୍କୃତ ପଣ୍ଡିତ ଥାନ୍ତି କୁମାରଙ୍କର ନୀଳକଣ୍ଠ ରଥେ ଏବଂ ଓଡ଼ିଆ ପଣ୍ଡିତ ଥାନ୍ତି ବେଗୁନିଆର ଜଣେ । ଏମାନେ ସମସ୍ତେ ଆଦର୍ଶ ଶ୍ରେଣୀର ଲୋକ । ପାଠପଢ଼ାରେ ଏବଂ ପିଲାମାନଙ୍କର ଅଭାବ ଅସୁବିଧାରେ ଏମାନେ ଏତେ ବ୍ୟକ୍ତିଗତ ଯତ୍ନ ନେଉଥାନ୍ତି ଯେ ଛାତ୍ରାବାସରେ ପିଲାମାନେ ପ୍ରକୃତ ଘର ଛାଡ଼ି ଦୂରରେ ଅଛନ୍ତିବୋଲି ଅନୁଭବ କରନ୍ତି ନାହିଁ । କିଛି ସମୟପରେ ସେହି ବାଣପୁର ଇଲାକାର ଗୋବିନ୍ଦ ରଥେ ସତ୍ୟବାଦୀ ସ୍କୁଲରୁ ପାସ୍ କରି ସେଠାକୁ ଶିକ୍ଷକ ହୋଇଆସିଲେ । ସେ ହେଉଛନ୍ତି ଚରିତ୍ର, ନୀତି ଓ ନିୟମାନୁବର୍ତ୍ତିତାର ପ୍ରତୀକ । କ୍ଷୀଣ ଶରୀର, ଲମ୍ବା ଦେହ, ଗୋରା ଚେହେରା, ଅଳ୍ପଭାଷୀ, ସଂଯମୀ ଓ ଋଷି-ପ୍ରତିମ । ଭୋର ଚାରିଟାରୁ ଉଠି ଖଡ଼ମ ଖଡ଼ଖାଡ଼ କରି ନିତ୍ୟକର୍ମ କରିବାକୁ ବାହାରନ୍ତି । ତାଙ୍କୁ ଦେଖି ତାଙ୍କ ଆଦର୍ଶରେ ମୋର ଜୀବନ ଗଢ଼ିବାକୁ ଭାରି ଇଚ୍ଛା ହେଲା । ମୁଁ ମଧ୍ୟ ତାଙ୍କପରି ଭୋରରୁ ଗାଧୋଇ ସୂର୍ଯ୍ୟୋଦୟ ପୂର୍ବରୁ କେହି ନ ଉଠୁଣୁ ଓଦାଲୁଗା ଶୁଖାଇଦିଏ । ମୋତେ ଦେଖି ଆଉ କେତେ ଛାତ୍ର ମଧ୍ୟ ଏପରି କଲେ । ଆଜିକାଲି ଶିକ୍ଷକମାନଙ୍କର ଏହି ବ୍ୟକ୍ତିଗତ ଆଦର୍ଶ କାହିଁ ? ଖାଲି ଚରିତ୍ର ଓ ସତ୍‌ଅଭ୍ୟାସ ବିଷୟରେ ବକ୍ତୃତା ନ କରି ନିଜେ ଆଦର୍ଶ ଦେଖାଇ ପାରିଲେ ଯାହା ଫଳହୁଏ ତାହା ଶତ ବକ୍ତୃତାରେ ହୁଏନାହିଁ । ସେ ଆମକୁ ପଢ଼ାଉଥିଲେ ଗଣିତ । ଚରିତ୍ରରେ ଯେପରି ଦୃଢ଼, ଗଣିତରେ ସେପରି ତୀକ୍ଷ୍ଣ । ତାଙ୍କର ଆଦର୍ଶ ଆମ ସମସ୍ତଙ୍କୁ ବିଶେଷ ଅନୁପ୍ରାଣିତ କରିଥିଲା । ପଣ୍ଡିତ ନୀଳକଣ୍ଠ ଥିଲେ ଅତି ଅମାୟିକ ପିତୃସ୍ୱରୂପ । ତାଙ୍କର ସ୍ନେହ, ଆଦର, ପ୍ରେରଣା ଆମେମାନେ ଆଜି ପର୍ଯ୍ୟନ୍ତ ଭୁଲିନାହୁଁ । ବାମନ ବାବୁ ଥିଲେ ଧନ୍ଦା ମେଳାପି ଓ ଅଙ୍କପ୍ରିୟ । ସେ କଥା କହି କହି ପିଲାଙ୍କ ପେଟ ଫଟାନ୍ତି । ଆମ ଓଡ଼ିଆ ପଣ୍ଡିତେ ଥିଲେ ବଡ଼ ସରଳ । ପିଲାମାନେ ସାଧାରଣତଃ ମାଷ୍ଟରଙ୍କ ପଛେ ପଛେ ଯିବା କଥା । ତୁମେ କିନ୍ତୁ ଯଦି ତାଙ୍କ ପଛେ ପଛେ ଯିବ ସେ ଯିବାବେଳେ ପଛକୁ ଚାହିଁବେ । ଏପରି ଚାହିଁ ଚାହିଁ ଗଲେ କାଳେ ପଡ଼ିଯିବେ

ଏହିସକାଶେ ଆମେ କେବେ ତାଙ୍କ ପଛେ ପଛେ ଯାଉନାହିଁ । ସର୍ବଶେଷରେ ରଘୁନାଥ ମହାପାତ୍ରେ ଥିଲେ ବଡ଼ କଡ଼ା ହେଡ଼ମାଷ୍ଟ୍ର । ଶୃଙ୍ଖଳାରକ୍ଷା ତାଙ୍କର ଥିଲା ପ୍ରଥମ କର୍ତ୍ତବ୍ୟ । ସଫେଦ ରଙ୍ଗ, ସୁନ୍ଦର ଶରୀର, ହସହସ ମୁହଁ । ତଥାପି ପିଲମାନେ ତାଙ୍କୁ ଦେଖିଲେ ଥରହର ହେଉଥିଲେ । କାର୍ଯ୍ୟରେ ଏତେ କଡ଼ା କିନ୍ତୁ ତାଙ୍କର ହୃଦୟ ଏତେ କୋମଳ ! ପିଲାଙ୍କର ବେମାର ହେଲେ ସେ ପାଖରେ ବସନ୍ତି, କଷ୍ଟ ହେଲେ କାନ୍ଦ ପକାନ୍ତି । ଏପରି ବାତାବରଣ ମଧ୍ୟରେ ମୋର ପଢ଼ାପଢ଼ି ଚାଲିଥାଏ । କିନ୍ତୁ ୧୯୨୧ ମସିହାରେ ଯେତେବେଳେ ଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଗଲା ସତ୍ୟବାଦୀ ଢାଞ୍ଚାରେ ପରିଚାଳିତ ବାଣପୁର ସ୍କୁଲ ଉପରେ ପ୍ରଥମେ କୁଳିଶପାତ ହେଲା । ସେତେବେଳକୁ ମୁଁ ଷେଷ ଶ୍ରେଣୀକୁ ଉଠିଥାଏ । ସେହିବର୍ଷ ମୋର ବୃତ୍ତି ପରୀକ୍ଷା ଦେବା କଥା । ବୃତ୍ତି ନ ମିଳିଲେ ତ ଆଉ ପଢ଼ି ପାରିବି ନାହିଁ । ଷଷ୍ଠଶ୍ରେଣୀ ପରୀକ୍ଷା ଦେଇ ଖରା ଛୁଟିରେ ଗାଁକୁ ଯାଇଥାଏ । ଆସିଲାବେଳକୁ ଦେଖିଲି ଏମ୍. ଇ. ସ୍କୁଲ ପ୍ରାୟ ଖାଲି । ଜାତୀୟ ସ୍କୁଲ ଆରମ୍ଭ ହୋଇଛି ଗୋଦାବରୀଶ ବାବୁଙ୍କ ଘର ପାଖରେ । ଛାତ୍ରାବାସରେ କଂଗ୍ରେସ ପତାକା ଉଡ଼ୁଛି ଏବଂ ଛାତ୍ରାବାସ ଚରଖାରେ ଭର୍ତ୍ତି । ମୋର ପିତା ମୋତେ ସ୍କୁଲରେ ଛାଡ଼ିଦେଇ ଯିବାକୁ ଆସିଥିଲେ । ସେ ଏହା ଦେଖି ଅବାକ୍ ହୋଇଗଲେ । ସେ ମୋତେ ଇଂରେଜୀ ପଢ଼ାଇ ବଡ଼ଲୋକ କରିବାକୁ ସ୍ୱପ୍ନ ଦେଖୁଥିଲେ । ଏହା ଦେଖି ତାଙ୍କର ସବୁ ସ୍ୱପ୍ନ ଧୂଳିସାତ ହୋଇଗଲା । ହେଡ଼ମାଷ୍ଟର ରଘୁନାଥ ମହାପାତ୍ରେ ଯେ କି ଜାତୀୟ ସ୍କୁଲରେ ଯୋଗ ଦେଇଥିଲେ ସେ କହିଲେ, ଚିନ୍ତା କଣ, ଆଉ ଛଅମାସ ମଧ୍ୟରେ ତ ଆମ ସ୍ୱରାଜ ହୋଇଯିବ, ଇଂରେଜୀ ପଢ଼ାର ଆଉ ଆବଶ୍ୟକତା କଣ ? ସେ ଦିନ ରାତି ଆମେ ଜାତୀୟ ସ୍କୁଲର ଛାତ୍ରାବାସରେ ରହିଲୁ । ଏଠାର ଚଳଣି ଦେଖି ପିତାଙ୍କର ମୋତେ ଜାତୀୟ ସ୍କୁଲରେ ଛାଡ଼ିଦେଇ ଯିବାକୁ ଆଦୌ ଇଚ୍ଛା ହେଉ ନ ଥାଏ । କିନ୍ତୁ ଉପାୟ କଣ ? ଦିନବେଳା ଯଦି ପୁରୁଣା ଏମ୍. ଇ. ସ୍କୁଲକୁ ଯିବୁ ମାଡ଼ର ଭୟ ଅଛି । ଯେ ଜାତୀୟବାଦର ଆହ୍ୱାନ ଇଚ୍ଛାନୁସାରେ ଶୁଣିବ ନାହିଁ ତାକୁ ଜୋର ଜବରଦସ୍ତି କରିବାରେ କିଛି ଦୋଷ ନାହିଁ । ଏ ଥିଲା ସେତେବେଳେ ଉଗ୍ର ଜାତୀୟବାଦର ଧର୍ମ । ତେଣୁ ସେଦିନ ରାତିରେ ଆମେ ଜାତୀୟ ସ୍କୁଲର ଛାତ୍ରାବାସରେ ଶୋଇଲୁ । ରାତି ଦୁଇଘଡ଼ି ଅଛି ଲୁଗାପଟା ବାନ୍ଧି ଲୁଚିକରି ଏକ ନିଶ୍ୱାସରେ ଏମ୍. ଇ. ସ୍କୁଲକୁ ପଳାଇ ଆସିଲୁ । ସେଠାରେ ଆସି ଦେଖୁ ପୁରୁଣା ହେଡ଼ମାଷ୍ଟରଙ୍କ ଜାଗାରେ ବୈଦ୍ୟନାଥ ରଥ ନାମରେ ଜଣେ ନବ୍ୟ କଲେଜ

ଫେରନ୍ତା ବ. ଏସ୍‌-ସି. ପ୍ରଧାନ ଶିକ୍ଷକ । ତାଙ୍କର ତୀକ୍ଷ୍ଣ ପ୍ରଜ୍ଞା ପିତାଙ୍କ ମନରେ ଖୁବ୍ ପ୍ରଭାବ ପକାଇଲା । ଛାତ୍ରାବାସ ପ୍ରାୟ ଖାଲି । ମୁଁ ଶ୍ରେଣୀର ପ୍ରଥମ ଛାତ୍ର, ବୃତ୍ତି ପାଉଛି, ପୁଣି ବୃତ୍ତି ପରୀକ୍ଷାକୁ ଯିବ ଏହା ଶୁଣି ରଥ ମହାଶୟେ ବଡ଼ ସନ୍ତୁଷ୍ଟ ହେଲେ ଏବଂ ମୋତେ ପୁଅ ପରି ଛାତ୍ରାବାସରେ ରଖିଲେ । ପିତା ମୋତେ ଛାଡ଼ି ଚାଲିଗଲେ । ମୋର କିନ୍ତୁ ସ୍କୁଲ ଓ ଛାତ୍ରାବାସ ଛଡ଼ା ବାହାରକୁ ବାହାରିବାର ଜୋର ନ ଥିଲା । ଜାଙ୍ଗପୁ ସ୍କୁଲରୁ ପଳାତକ ଭାବରେ ଅଭିଯୁକ୍ତ ଥିବାରୁ ସେମାନେ ମୋତେ ଦେଖିଲେ ଜବରଦସ୍ତ ଧରି ନେଇଯିବେ ଏହି ଭୟ ଥିଲା । ଯାହାହେଉ କ୍ରମେ କ୍ରମେ ଅନ୍ୟ ପିଲାମାନେ ଆସିଗଲେ ଏବଂ ଆମ ସ୍କୁଲ ଯଥାମତ ଚାଲିଲା । ଜାଙ୍ଗପୁ ସ୍କୁଲରୁ ଗୋଟିଏ ଗୋଟିଏ ଛାତ୍ର ମୋ ପରି ଖସି ଆସି ଏଠାରେ ମଧ୍ୟ ପଢ଼ା ଆରମ୍ଭ କଲେ । ଏହି ପ୍ରଧାନ ଶିକ୍ଷକ ବୈଦ୍ୟନାଥ ରଥଙ୍କ ସଙ୍ଗେ ମୋର କ ଶୁଭମୁହୂର୍ତ୍ତରେ ଦେଖା ହୋଇଥିଲା କେଜାଣି ଭବିଷ୍ୟତ ଜୀବନରେ ସେ ମୋର ଏବଂ ଆମ ପରିବାରର ବହୁତ ଉପକାର କରିଥିଲେ । ତାଙ୍କ ପାଖରେ ମୁଁ ଚିର ଋଣୀ । ସେ ସବୁ କଥା ପଛେ ଲେଖିବ । □□□

## ଖୋରଧା ସ୍କୁଲ

ଯାହାହେଉ ଏମ୍. ଇ. ପାସ କରି ବୃତ୍ତି ପାଇ ଖୋର୍ଦ୍ଧା ସ୍କୁଲକୁ ଗଲି ମାଟ୍ରିକ ପଢ଼ିବାକୁ । ଏମ୍. ଇ. ପରୀକ୍ଷା ଦେଇ ଘରକୁ ଗଲାବେଳେ ହେଡ୍‌ମାଷ୍ଟର ବୈଦ୍ୟନାଥ ବାବୁ କହିଥିଲେ ତୁ ବୃତ୍ତି ପାଇ ଯଦି ପଢ଼ିବାକୁ ଯିବୁ ମୁଁ ତୋତେ ମାସକୁ ୫୫.୦୦ ଲେଖାଏଁ ସାହାଯ୍ୟ ଦେବି । ସେ ପ୍ରତିଶ୍ରୁତିମତେ ସାହାଯ୍ୟ ଦେଲେ । ପ୍ରଥମେ ଯାଇ ଖୋର୍ଦ୍ଧାରେ ଥିବା ଗୋଟିଏ ସଂସ୍କୃତ ଟୋଲ ହଷ୍ଟେଲରେ ରହିଲି, କାରଣ ଏଠା ଶସ୍ତା । ପିଲାମାନେ ସକାଳୁ ଯାଇ ଟାଉନରେ ମୁଷ୍ଟିଭିକ୍ଷା କରି ଆଣନ୍ତି । ଏହି ଟୋଲଟି ହାଇସ୍କୁଲ ଅଧୀନରେ ଏବଂ ହାଇସ୍କୁଲର ଶିକ୍ଷକ ବାଳକାଟିର ଋଷିପ୍ରତିମ କୁଞ୍ଜବିହାରୀ ମହାନ୍ତି ଏହାର ସୁପରିଣ୍ଟେଣ୍ଡେଣ୍ଟ ଥାନ୍ତି । ମେସ୍‌ରେ ଖାଦ୍ୟ ଥିଲା ବଗଡ଼ା ଚାଉଳ, ହରଡ଼ ଡାଲି । ବାସନ ହାତରେ ମାଜିବାକୁ ପଡ଼ୁଥିଲା । କିନ୍ତୁ କେତେଦିନ ପରେ ମେସରେ ବିଶୃଙ୍ଖଳା ଘଟିଲା । ତେଣୁ ହାଇସ୍କୁଲ ଛାତ୍ରାବାସକୁ ଆସିଲି । ସଂସ୍କୃତ ଟୋଲରେ କାଶୀନାଥ

ଶତପଥୀ ନାମକ ଜଣେ ବୟସ୍କ ଛାତ୍ର ଥିଲେ । ସେ ଥିଲେ ଆମର ମୁରବି । ସେ ହେଉଛନ୍ତି ବାଣପୁର ଏମ୍. ଇ. ସ୍କୁଲର ପରବର୍ତ୍ତୀ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବୈଦ୍ୟନାଥ ଶତପଥୀଙ୍କ ବଡ଼ ଭାଇ ।

ହାଇସ୍କୁଲର ଛାତ୍ରାବାସରେ ଗଣିତ ଶିକ୍ଷକ ଶ୍ରୀଯୁକ୍ତ ଫଜିଲୁର ରହମାନ ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ସେ ଛାତ୍ରମାନଙ୍କୁ ବଡ଼ ଭଲପାଉଥିଲେ । ତା ପରେ ଗଣିତ ଶିକ୍ଷକ ଶ୍ରୀ ରାଧାଚରଣ ଦାସ ସୁପରିଣ୍ଟେଣ୍ଡେଣ୍ଟ ହେଲେ । ଫଜିଲୁର ବାବୁ କୋ-ଅପରେଟିଭ ଡିପାର୍ଟମେଣ୍ଟର ଅଡ଼ିଟର ହୋଇ ପରେ ସବ୍‌ଡେପୁଟି ଏବଂ ଡେପୁଟି ହେଲେ । ମୁଁ ସମ୍ବଲପୁରରେ ଏସ୍. ଡି. ଓ. ଥିବାବେଳେ ସେ ମୋର ତହସିଲଦାର ଥିଲେ । ତା ପରେ ମୁଁ କେନ୍ଦୁଝରରେ କଲେକ୍ଟର ଥିବାବେଳେ ସେ ଚମ୍ପୁଆରେ ମୋର ଏସ୍. ଡି. ଓ. ଥିଲେ । ସେ ସରଳ ଏବଂ ଆନ୍ତରିକତାପୂର୍ଣ୍ଣ ଓ କାର୍ଯ୍ୟଦକ୍ଷ । ମୁଁ କେନ୍ଦୁଝରରେ ଥିବାବେଳେ ବଡ଼ବିଲ୍‌ଠାରେ ଗୋଟିଏ ଛୋଟ ଆଦିବାସୀ ଜାଗା କିଣିଥିଲି । ସେତେବେଳେ ବଡ଼ବିଲ ଏବେ ପରି ନ ଥିଲା । ଜଙ୍ଗଲ ମଧ୍ୟରେ ଗୋଟିଏ ଛୋଟ ଗ୍ରାମ ଥିଲା । ଫଜିଲୁର ବାବୁ ଏସ୍. ଡି. ଓ. ହିସାବରେ ଏ ଅନୁମତି ଦେଇଥିଲେ । କାରଣ ଆଦିବାସୀ ଜାଗା ଏସ୍. ଡି. ଓ.ଙ୍କ ବିନାନୁମତିରେ ଅଣଆଦିବାସୀମାନେ କିଣି ପାରିବେ ନାହିଁ । ଏ ଜାଗାଟି କିଣିବା ମୋର ମସ୍ତ ଭୁଲ ବୋଲି ମୁଁ ସ୍ୱୀକାର କରୁଛି । ଛୋଟ ଏବଂ ଅଳ୍ପ ଦାମର ହେଲେ ମଧ୍ୟ କଲେକ୍ଟର ଥାଇ ନିଜ ଅଧୀନସ୍ଥ ଏସ୍. ଡି. ଓ.ଙ୍କଠାରୁ ଅନୁମତି ନେଇ ଏ ଜାଗା କିଣିବା ମୋର ଉଚିତ ନ ଥିଲା । ମୁଁ ବଡ଼ବିଲର ଭବିଷ୍ୟତ ସ୍ୱପ୍ନରେ ଭାସିଗଲି ; ସେ ହେଉଛି ଖଣିବାଲାଙ୍କର କେନ୍ଦ୍ରସ୍ଥଳୀ ଏବଂ ମୁଁ ଭାବିଥିଲି ଏଠାରେ ଖଣ୍ଡେ ଜାଗା ଥିଲେ ମୁଁ ହୁଏତ ଅବସର ପରେ ଏଠାରେ ଖଣିଟିଏ ନେଇ ବ୍ୟବସାୟ କରିପାରିବି । ମୁଁ କେନ୍ଦୁଝରରୁ ବଦଳି ହୋଇ ଆସିବା ପରେ ସେଠାର ଏସ. ପି. ଥିଲେ ସଇଦ ମିଆଁ । ତାଙ୍କ ନାମରେ ଦୁର୍ନୀତି ଯୋଗୁଁ ଜୋରସୋର ଅନୁସନ୍ଧାନ ଚାଲିଲା । ସେ ମଧ୍ୟ ବଡ଼ବିଲରେ ଖଣ୍ଡେ ଜାଗା ନେଇଥିଲେ । ସେଥିରୁ ମୋର ଜମିକଣା କଥା ବାହାରିଲା ଏବଂ ସେଥିଯୋଗୁଁ ଭବିଷ୍ୟତରେ ମୋର ଚାକିରି ଜୀବନରେ ବହୁତ କ୍ଷତି ହେଲା । ଫଜିଲୁର ବାବୁ ମଧ୍ୟ ଏ ସମ୍ପର୍କରେ ଟିକିଏ ହଇରାଣରେ ପଡ଼ିଲେ । ଏଥି ସକାଶେ ମୁଁ ତାଙ୍କ ପାଖରେ ଦୋଷୀ । ସ୍ୱଭାବସୁଲଭ ସରଳତା ଯୋଗୁଁ ସେ ମୋତେ କ୍ଷମା ଦେଇଛନ୍ତି । ତଥାପି ଏଥିଯୋଗୁଁ ତାଙ୍କ ମନରେ ଯେ ଗୋଟିଏ ଚାପର ରେଖାପାତ ହୋଇଛି ଏଥିରେ ସନ୍ଦେହ ନାହିଁ । ସେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଥିଲାବେଳେ ମୋର ଗୋଟିଏ ଦୋଷ ଧରିଲେ ।

ସେଥିରେ ମୋର ଯୁକ୍ତି ଦେଖି ସେ କହିଥିଲେ ତୁମେ ଭବିଷ୍ୟତ ଜୀବନରେ ଓକିଲ ହେଲେ ଭଲ କରିବ । ସତକୁସତ ଅବସର ପରେ ଓକିଲ ହେଲି । ଏବେ ମଝିରେ ମଝିରେ ତାଙ୍କ ସଙ୍ଗେ ଦେଖାହୁଏ । ବୟସ ହୋଇଯାଇଛି, ମନ ଦବି-ଯାଇଛି । ତେବେ ଦେଖିଲାକ୍ଷଣି ମୁହଁରେ ହସ ଫୁଟିଉଠେ ।

ଖୋର୍ଦ୍ଧାରେ ପ୍ରଧାନ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ବାଙ୍କନିଧି ପଟ୍ଟନାୟକ । ସେ ଥିଲେ ଘୋର ସ୍ୱାସ୍ଥ୍ୟବାନ । ଟକଟକ ଗୋରା, ଶୃଙ୍ଖଳାର ପ୍ରତୀକ ଏବଂ ଇଂରେଜୀରେ ଅଗାଧ ପଣ୍ଡିତ । ତାଙ୍କର ପାଣ୍ଡିତ୍ୟ ଆମ ଉପରେ ବହୁତ ପ୍ରଭାବ ପକାଇଥିଲା । ତାଙ୍କ ଆଦର୍ଶରେ ଅମେ ଅନୁପ୍ରାଣିତ ହୋଇ ଇଂରେଜୀ ସାହିତ୍ୟରେ ପାଣ୍ଡିତ୍ୟ ଅର୍ଜ୍ଜନ କରିବାକୁ ଯଥାସମ୍ଭବ ଚେଷ୍ଟା କରିଥିଲୁ । ମୋର ସାଙ୍ଗେ ପଢୁଥିଲେ ମୋର ଶ୍ରଦ୍ଧେୟ ବାଲ୍ୟବନ୍ଧୁ ମାୟାଧର ମାନସିଂହ । ଖୋର୍ଦ୍ଧାରେ ପଢୁଥିବା-ବେଳେ ତାଙ୍କର କିଶୋରସୁଲଭ କବିତ୍ୱର ପ୍ରତିଭା ପ୍ରତିଭାତ ହେଲା । ତେଣୁ ଶିକ୍ଷକମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ । ସେସମୟରେ ସେ ନିଃସ୍ୱାର୍ଥ ଓ ନୈସର୍ଗିକ ପ୍ରେମର ଯାହା କବିତା ଲେଖିଛନ୍ତି ଭବିଷ୍ୟତ ଜୀବନରେ ତାଠାରୁ ବଳିପାରିନାହାନ୍ତି । ପ୍ରଥମ ଯୌବନର ଝଲକ ତାଙ୍କ କଲମ ମୁନରେ ସୁଲଳିତ କବିତାର ମନ୍ଦାକିନୀ ଧାରା ଅଜାଡ଼ି ଦେଇଥିଲା । ସେହି ଭାବପ୍ରବଣତା ଯୋଗୁଁ ସେ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କର ଅପ୍ରୀତିଭାଜନ ହୋଇଥିଲେ ଏବଂ ସେହି କାରଣରୁ ସେ ଶାସନ ବିଭାଗରେ ଚାକିରି ପାଇଲେ ନାହିଁ । କିନ୍ତୁ ଏହା ଅନ୍ୟ-ମତେ ତାଙ୍କ ପ୍ରତି ଆଶୀର୍ବାଦର କାମ କଲା । ବିଲାତ ଯାଇ ସାହିତ୍ୟରେ ଡକ୍ଟରେଟ୍ ଉପାଧି ପାଇ ସେ ଭବିଷ୍ୟତ ଜୀବନରେ ସାହିତ୍ୟ-ଜଗତରେ ଏପରି ସୁନାମ ଅର୍ଜିଲେ ଯେ ତାଙ୍କ ନାମ ଓଡ଼ିଶାର ସାହିତ୍ୟ ଇତିହାସରେ ଚିରକାଳ ସ୍ୱର୍ଣ୍ଣ ଅକ୍ଷରରେ ଲିପିବଦ୍ଧ ହୋଇ ରହିବ । ମୁଁ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଡେପୁଟି ହେଲି । କଲେକ୍ଟର ହେଲି । ସେ ହେଲେ ନାହିଁ । କିନ୍ତୁ ତାଙ୍କ ତୁଳନାରେ ସମାଜରେ ମୋର ସ୍ଥାନ ବହୁତ ତଳେ ।

ଆମ ସଙ୍ଗେ ଆଉ ଜଣେ ବନ୍ଧୁ ପଢୁଥିଲେ ମୀନକେତନ ମହାପାତ୍ର । ଇତିହାସ ତାଙ୍କର ପ୍ରିୟ ପାଠ । ଇତିହାସପଢ଼ାରୁ ପ୍ରେରଣା ପାଇ ସେ କେତେକ ପିଲାଙ୍କୁ ନେଇ ଗୋଟିଏ **iron side** ଗଢ଼ିଲେ । ତାର ଉଦ୍ଦେଶ୍ୟ ଥିଲା ଯେଉଁ-ମାନଙ୍କର ସେମାନଙ୍କ ସଙ୍ଗେ ପଟିବ ନାହିଁ ସେମାନଙ୍କୁ ଉପଯୁକ୍ତ ଶାସ୍ତି ଦିଆଯିବ । ଯୌବନର ଆରମ୍ଭରେ କାହା ମନରେ ଯେ କଣ ଢୁକେ କିଛି କହିହେବ ନାହିଁ । ଭଲ ହେଉ ବା ମନ୍ଦ ହେଉ କଣ ଗୋଟାଏ ଢୁକେ । ଏହି **iron side** ଦେଖି

ଆମେମାନେ ଡରିଗଲୁ । ଯାହାହେଉ ବିଶେଷ କିଛି କ୍ଷତି ଘଟିନାହିଁ । ଆମ ସାଙ୍ଗେ ପଢ଼ୁଥିଲେ ହେଡ୍‌ମାଷ୍ଟରଙ୍କ ଜଣେ ସାନ ଭାଇ; ତାଙ୍କ ନାମ ନୁରି । ସେ ଥିଲେ ଟିକିଏ ଚଗଲା । ପିଲାମାନେ ତାଙ୍କୁ ଡରନ୍ତି । ମୁଁ ସ୍କୁଲର ମେଧାବୀ ଛାତ୍ର ଥିବାରୁ ପିଲାମାନେ ମୋତେ ସମ୍ମାନ କରନ୍ତି । ସେଥିରେ ମୋ ମୁଣ୍ଡ ଟିକିଏ ବିଗିଡ଼ିଥାଏ । ତେଣୁ ମୁଁ ଏ ହେଡମାଷ୍ଟରଙ୍କ ଭାଇର କର୍ତ୍ତୃତ୍ୱ ସ୍ୱୀକାର କରିବାକୁ ନାରାଜ । ଥରେ ସେ ମୋ ଗାଲକୁ ଥଟ୍ଟାରେ ବା ମୋତେ ସମସ୍ତଙ୍କ ଚକ୍ଷୁରେ ନ୍ୟୂନ କରିବାକୁ ଛୁଇଁଦେଲେ । ମୁଁ ଜୋରରେ ତାଙ୍କ ଗାଲରେ ଗୋଟିଏ ଚଟକଣି କଷିଦେଲି । ଏହା ଦେଖି ସମସ୍ତ ପିଲା ତାଟକା ହୋଇଗଲେ । ସେ ମଧ୍ୟ ଅବାକ୍ ହୋଇଗଲେ । ସେହିଦିନଠାରୁ ସେ ମୋତେ କଥା କହିଲେ ନାହିଁ; କିନ୍ତୁ ମୁଁ ଗଲାବେଳେ ପଛରୁ କେଉଁଆଡ଼ୁ ଢେଳା ପଡ଼େ । ସେ ପିଲାଦିନର ଅପରିପକ୍ୱ ବୁଦ୍ଧିର କଥା । ଭବିଷ୍ୟତ ଜୀବନରେ ସେ ବଡ଼ ଭଦ୍ର ହୋଇଉଠିଥିଲେ ।

ହାଇସ୍କୁଲରେ ଆମ ଉପର ଶ୍ରେଣୀରେ ପଢ଼ୁଥିଲେ ମେଧାବୀ ଛାତ୍ର ସାହିତ୍ୟିକ ମାଧବ ଚୌଧୁରୀ, ଯେ କି ଭବିଷ୍ୟତ ଜୀବନରେ ଓକିଲ ହେଲେ ଏବଂ ତାଙ୍କ ଉପର ଶ୍ରେଣୀରେ ମେଧାବୀ ଛାତ୍ର ଘନଶ୍ୟାମ ସ୍ୱାଇଁ ଯେ କି ଭବିଷ୍ୟତରେ ସେକ୍ରେଟେରିଏଟ ରୁକରିରେ ଢୁକି ଡେପୁଟି ସେକ୍ରେଟେରୀ ହେଲେ । ମୁଁ ନବମ ଶ୍ରେଣୀରେ ପଢ଼ୁଥିବାବେଳେ ଥରେ ସମୁଦାୟ ସ୍କୁଲରେ ଗଣିତରେ ଗୋଟିଏ ପ୍ରତିଯୋଗିତା ହେଲା । ମୁଁ ସେଥିରେ ପ୍ରଥମ ପୁରସ୍କାର ପାଇଲି । ମାଧବବାବୁ ଓ ଘନଶ୍ୟାମବାବୁ ସାହିତ୍ୟିକ ଥିବାରୁ ଏଥିରେ ତାଙ୍କର କିଛି ଅଶାନ୍ତି ହେଲାନାହିଁ । ଆମ ସାଙ୍ଗରେ ପଢ଼ୁଥିଲେ ମାର୍କଣ୍ଡେୟ ଶତପଥୀ ଯେ କି ଭବିଷ୍ୟତରେ ପୋଲିସ ସାହେବ ହେଲେ । ଆମ ତଳେ ପଢ଼ୁଥିଲେ ରାମଚନ୍ଦ୍ର ରଥ ଯେ କି ଭବିଷ୍ୟତରେ ସିଭିଲ ସର୍ଜନ ହେଲେ ଓ ବାଞ୍ଛାନିଧି ସାହୁ ଯେ କି ଭବିଷ୍ୟତରେ ଚିଫ୍ ଇଞ୍ଜିନିୟର ହେଲେ । ସେ ସମୟରେ ଆଗ ତଳ ଶ୍ରେଣୀରେ ପଢ଼ିବାକୁ ଆସିଲେ ପାରିକୁଦର ଭବିଷ୍ୟତ ଗାନ୍ଧୀ ଉଦୟନାଥ ଜେନା । ପରେ ଆଣ୍ଠୁ ଉପରକୁ ଖଦଡ଼ ପିନ୍ଧି ଛାଳପତ୍ର ଛତା ଧରି ସେ ପାରିକୁଦ ଗାନ୍ଧୀ ହିସାବରେ ସେ ଇଲାକାର ବହୁତ କାମ କରିଛନ୍ତି । ସେ ଅବଶ୍ୟ କିଛି ସମ୍ପତ୍ତି କରିଛନ୍ତି ବୋଲି ନିନ୍ଦୁକମାନେ ତାଙ୍କର ଦୁର୍ନାମ କରନ୍ତି; କିନ୍ତୁ ଯେ ଦେଶସେବା କରିବ ସେ ଯେ ଚିରକାଳ ଭିକ୍ଷୁ-ଜୀବନ ଯାପନ କରିବ ସେପରି ଆଶା କରିବା ବୃଥା । ଲୋକମାନଙ୍କ ପାଇଁ ତାଙ୍କର ଅକ୍ଳାନ୍ତ ପରିଶ୍ରମ ପ୍ରକୃତରେ ପ୍ରଶଂସନୀୟ । ତାଙ୍କ ପୁଅ ଅଜୟ ଜେନା ବର୍ତ୍ତମାନ ପୁରୀର ଓକିଲ ଓ ଜଣେ ଉଦୀୟମାନ ଯୁବକ । □□□

## ପିତୃମାତୃ ବିୟୋଗ

ହାଇସ୍କୁଲରେ ଏକାଦଶ ଶ୍ରେଣୀରେ ପଢ଼ିଲାବେଳେ ଅଗଷ୍ଟ ମାସରେ ମୋର ପିତାଙ୍କର ବିୟୋଗ ହେଲା । କପରି ଭାବରେ ତାଙ୍କର ମୃତ୍ୟୁ ହେଲା ମୁଁ ଆଗରୁ ଲେଖିଛି । ମୋର ହାଇସ୍କୁଲର ଶେଷବର୍ଷ । ପଢ଼ାପଢ଼ିରେ ବ୍ୟାଘାତ ହେବ ବୋଲି ସେ ମୋତେ ବେମାରି ପଡ଼ିଥିବା ସମୟରେ ଖବର ଦେଲେ ନାହିଁ ଏବଂ ଶେଷରେ ଯେତେବେଳେ ସେ ସନ୍ନିପାତ ବେମାରରେ ଉତ୍କଣ୍ଠା ଓ ଶୁଷ୍କ କଣ୍ଠରେ ବହୁତ ବକଳ ହୋଇ ମଲେ, ମୁଁ ତାଙ୍କ କଣ୍ଠରେ ଟିକିଏ ପାଣି ଦେବା ସୌଭାଗ୍ୟରୁ ବଞ୍ଚିତ ହେଲି । ସେ ମୋ ଉପରେ ଏତେ ଆଶା କରିଥିଲେ, ସବୁ ଧୂଳିସାତ୍ ହେଲା । ମୃତ୍ୟୁର ତାର ପାଇ ମୁଁ ଗାଁକୁ ଗଲି । ମୋର ସାନଭାଇ ବୀରଭଦ୍ର ମୁଖାଗ୍ନି ଦେଇଥିଲେ । ମୋର ତା ତଳଭାଇ ରାଧାନାଥ ମୃତ୍ୟୁଶୋକରେ ମୂକବଧିର ଅବସ୍ଥାରେ ଥିଲା । ମୋର ବୋଉ ବର୍ଷକର ପୁଅଟି ଦେବେନ୍ଦ୍ରକୁ କୋଳରେ ଧରି ଜୀବନ୍ମୃତ ଅବସ୍ଥାରେ ଥିଲେ ଏବଂ ମୋର ବୁଢ଼ୀମା' ଏଡ଼େ ବୟସରେ ଏକମାତ୍ର ପୁଅର ଅକାଳ ମୃତ୍ୟୁରେ ପୂରା ଭାଙ୍ଗିପଡ଼ିଥିଲେ । ସେମାନଙ୍କ ମେଳରେ ମୋର ମନର ଅବସ୍ଥା ଯେ କଣ ହୋଇଥିବ ଅନୁମେୟ । ଶୁଦ୍ଧିକ୍ରିୟା ସାରି ଖୋର୍ଦ୍ଧା ଫେରିଆସିଲି । ମୁଁ ଯେତେବେଳେ ଘରୁ ଗ୍ରୀଷ୍ମ ସ୍କୁଲକୁ ଆସେ ମୋର ବୋଉ ସବୁବେଳେ ଗିନେ ଦହି ଓ କଞ୍ଚା ଗୋଟାଏ ମିଠେଇ ବା ଲେଉଟିଆ ଚକୁଳି କରି ଦିଏ । ଏଥର ମୁଁ ଆସିଲାବେଳକୁ ସେପରି ଦେଲା; କିନ୍ତୁ କୋହ ସମ୍ଭାଳି ନପାରି ଭୂଇଁରେ ଲେଟିପଡ଼ିଲା । ସ୍ୱାମୀର ଅକାଳ ମୃତ୍ୟୁପରେ ବଡ଼ପୁଅକୁ ଘରୁ ଛାଡ଼ିବାକୁ ତାର ଇଚ୍ଛା ନ ଥାଏ । କିନ୍ତୁ ବଡ଼ଲୋକ ହେବ ବୋଲି ମୁଁ ତ ପାଠ ପଢ଼ୁଛି, କଣ କହିବ । ମୁଁ ଫେରି ଆସିଲି, ଦଶହରା ଛୁଟିରେ ଫେରେ ଗଲି । ସେତେବେଳକୁ ବୋଉ ଦେହରେ ଆଉ ଜୀବନ ନାହିଁ । ଅସ୍ଥି କଙ୍କାଳ ହୋଇଗଲାଣି । ମୋର ବୁଢ଼ୀମା ଯେ କି ପିତାଙ୍କୁ ପୋଷ୍ୟପୁତ୍ର କରିଥିଲେ ଏବଂ ଯାହାଙ୍କ ଦୁଇ ଏକର ଜମି ଭୋଗ କରୁଥିବା ଯୋଗୁ ପିତା ତାଙ୍କର କିଙ୍କର ପରି ଥିଲେ ଏବଂ ଯେ ବୋଉକୁ ଦାସୀପରି ମନେ କରୁଥିଲେ, ସେ ପିତାଙ୍କ ମୃତ୍ୟୁପରେ ବୋଉକୁ ଆଉ ବସାଇ ଉଠାଇ ଦେଲେ ନାହିଁ । ସ୍ୱାମୀକୁ ଖାଇଥିବାରୁ ବୋଉ ଅଲକ୍ଷଣୀ ନାମରେ ଆଖ୍ୟାୟିତ ହେଲା । ବୁଢ଼ୀମା ଯେ ପିଲାଦିନୁ ନିଜ ସ୍ୱାମୀକୁ ଏବଂ ପରେ ପୁଅକୁ ଖାଇଲା, ସେ କଥା ସେ

ଭୁଲିଗଲା । ସ୍ୱାମୀଙ୍କ ମୃତ୍ୟୁପରେ ଏବଂ ଶାଶୁଙ୍କର ଦୌରାତ୍ମ୍ୟରେ ବୋଉ ନିଜ ଜୀବନକୁ ଦୁର୍ବହ ମନେ କରୁଥିଲା । ଦଶହରା ଛୁଟିରେ ମୁଁ ଗାଁରେ ଥିଲାବେଳେ ଉଭୟେ ଏତେ କଳିଆ କଲେ ଯେ, ମୁଁ ତ ବୁଢ଼ୀମା'କୁ କିଛି କହିପାରିବି ନାହିଁ ତେଣୁ ବୋଉ ଉପରକୁ ରାଗ ହୋଇ କଣ ଗୋଟାଏ ଫିଙ୍ଗିଦେଲି । ଏଣେ ଶାଶୁର ଅତ୍ୟାଚାର ତାପରେ ବଡ଼ପୁଅ ଯେ କି ଭବିଷ୍ୟତ ଜୀବନରେ ତାକୁ ପ୍ରତିପୋଷଣ କରିବ ସେ ଆଜିଠାରୁ ମାରିବାକୁ ଆରମ୍ଭ କଲାଣି । ମୋର ଫୋପଡ଼ା ପରେ ସେ ଭେ ଭେ ସ୍ୱରରେ କାନ୍ଦି ଉଠିଲେ ଏବଂ ବାଷ୍ପ ଗଦ୍‌ଗଦ୍ କଣ୍ଠରେ କହିଲେ, ତୁ ତ ଆଜିଠାରୁ ମାରିଲୁଣି, ଆଉ କଣ ପୋଷିବୁ ? ଏହି ପଦ କେତୋଟି ଆଜି ପର୍ଯ୍ୟନ୍ତ ମୋ କାନରେ ପ୍ରତିଧ୍ୱନିତ ହେଉଛି । ସ୍ୱାମୀ ମଲେ, ପିଲାଙ୍କ ସକାଶେ ଅବା ବଞ୍ଚିଥାନ୍ତେ କିନ୍ତୁ ବୋଧହୁଏ ମୋର ଏ ବ୍ୟବହାର ଯୋଗୁ ସେ ଆଉ ବଞ୍ଚିରହିବାକୁ ଇଚ୍ଛା କଲେନାହିଁ । ଜୀବନ ପ୍ରତି ସ୍ପୃହା ଚାଲିଗଲେ ମଣିଷ ଆଉ ବେଶୀଦିନ ବଞ୍ଚେ ନାହିଁ । ଶତ ବେମାର ସତ୍ତ୍ୱେ ବଞ୍ଚିବାର ପ୍ରବଳ ଇଚ୍ଛା ମନୁଷ୍ୟକୁ ବଞ୍ଚାଇ ରଖିଛି; କିନ୍ତୁ ଏ ଇଚ୍ଛାଟି ଚାଲିଗଲେ ଯେକୌଣସି ରୋଗ ମାଡ଼ିବସିବ । ମୁଁ ଫେରେ ପରୀକ୍ଷା ଦେଇ ଫେରିଆସିବା ପର୍ଯ୍ୟନ୍ତ ବଞ୍ଚିରହିବାକୁ ତାର ଇଚ୍ଛା ନ ଥିଲା । ଘରୁ ଆସିବାବେଳକୁ ସେ ପୁଣି ସବୁଥର ଭଳିଆ ଦହି ଓ ଲେଉଟିଆ ଚକୁଳି ଦେଲା ଏବଂ ମୁଁ ଆସିଲାବେଳକୁ ସେ ଯେଉଁ କରୁଣ ଦୃଷ୍ଟିରେ ଚାହିଁଲା ସେଥିରୁ ବୋଧହୁଏ ଭାବୁଥିଲା ସେ ଆଉ ମୋତେ ଦେଖିପାରିବ ନାହିଁ । ସେ ଭାବନା ସତ ହେଲା । ସେ ବର୍ଷ ବିଧବା ହୋଇ ସେ ପ୍ରଥମ ଥର ପାଇଁ କାର୍ତ୍ତିକ ବ୍ରତ କଲା । ଦେହରେ ଜର ଥିବାବେଳେ ଭୋରରୁ ପାଣିରେ ବୁଡ଼ି ସନ୍ନିପାତ ଧରିଲା । ଔଷଧ ଖାଇଲା ନାହିଁ । ଜୋର ଜବରଦସ୍ତି କରି ଔଷଧ ଖୋଇବାକୁ ମଧ୍ୟ କେହି ନାହିଁ । ଔଷଧ ବା କେଉଁଠି ମିଳୁଛି । ଏହି ରୋଗରେ ତ ବିନା ଚିକିତ୍ସା ଓ ବଦଚିକିତ୍ସାରେ ପିତାଙ୍କର ମୃତ୍ୟୁ ହେଲା । ତାକୁ ଆଉ ବଞ୍ଚାଇବ କିଏ ? ଶାଶୁ ବୋଧହୁଏ ଭାବୁଥିବ ମରୁ । ଏପରି ଅବସ୍ଥାରେ ସେ ମରିଗଲା । ମଲାବେଳେ ବଡ଼ପୁଅ କଥା ନିଶ୍ଚୟ ଭାବିଥିବ ଏବଂ ଯେତେ ଅଭିମାନ କରିଥିଲେ ମଧ୍ୟ ଦେଖିବାକୁ ପ୍ରବଳ ଇଚ୍ଛା ହୋଇଥିବ । ମୃତ୍ୟୁ ପୂର୍ବରୁ ପିତା ମାତା କାହାକୁ ଦେଖି ନପାରି ମୁଁ ଜୀବନର ଅପୂର୍ବ ସମ୍ପଦ ହରାଇଲି ଏବଂ ବିଶେଷତଃ ମୃତ୍ୟୁ ପୂର୍ବରୁ ମାତାଙ୍କ ପ୍ରତି ମୁଁ ଯେଉଁ ଅପରାଧ କରିଥିଲି ସେ ସାରା ଜୀବନ ମୋର ବିବେକ ଉପରେ ଏକ ବୋଝ ହୋଇ ରହିଲା । ଏହା ମନେପଡ଼ିଲେ ମନ ବିକଳିଉଠେ । ଜୀବନରେ ଗୋଟିଏ ଅବଶୋଷ ରହିଗଲା

ଯେ ମୋର ପିତାମାତା ମୋର ଭବିଷ୍ୟତ ଜୀବନର ସୁଖ ଦେଖି ପାରିଲେ ନାହିଁ । ବୋଧହୁଏ ମୋର ଜାତକରେ ଥିଲା ଯେ ମୁଁ ପିତାମାତାଙ୍କୁ କେବେ ହେଲେ ସୁଖ ଦେଇପାରିବି ନାହିଁ । ସେମାନେ ମଲାପରେ ମୁଁ ଅନେକଥର ସେମାନଙ୍କୁ ସ୍ୱପ୍ନରେ ଦେଖିବାକୁ ଚେଷ୍ଟା କରିଛି; କିନ୍ତୁ କେବେ ହୋଇପାରିନାହିଁ । ତେବେ ବୋଉର ମୃତ୍ୟୁପରେ ମଧ୍ୟ ସେ ସ୍ୱର୍ଗରୁ ମୋ ଉପରେ ନିଶ୍ଚୟ ଶୁଭ ନଜର ରଖିଥିବ । ପିତା ଥିଲେ ମୋକ୍ଷକାମୀ । ମୃତ୍ୟୁପରେ ତାଙ୍କ ଆତ୍ମା ସଂସାର ଛାଡ଼ି ଚାଲିଯାଇଥିବ; କିନ୍ତୁ ବୋଉର ମୋ ଉପରେ ଯେ ସ୍ନେହ ତାର ଆତ୍ମା ନିଶ୍ଚୟ ମୋ ଉପରେ ଶୁଭଦୃଷ୍ଟି ରଖିଥିବ । ଆତ୍ମାମାନେ ଯେ ଏପରି ଶୁଭଦୃଷ୍ଟି ରଖନ୍ତି ତାର ପ୍ରମାଣ ମୋର ଜୀବନରେ ଅଛି । ମୋର ଦୁଇ ଭଉଣୀ ମୁଁ ବାଣପୁରରେ ପଢ଼ିଲା ସମୟରେ ମରିଯାଇଥିଲେ । କଫ ରୋଗରେ ସେମାନଙ୍କର ଅକାଳମୃତ୍ୟୁ ହୋଇଥିଲା । ସେମାନଙ୍କର ମୃତ୍ୟୁପରେ ମୁଁ ଆମ ଗାଁ ବୁଲିବାରେ ଦିନେ କୃଷି ଧାନଗଦା ଭିତରେ ଲୁଚିରହିଥିଲି । ଦିନ ଦ୍ୱିପହର, ସମସ୍ତେ ଅପର୍ଯ୍ୟାପ୍ତ ଖୋଜି ଥକ୍କା ହେଲେ । ବୋଉକୁ ଦିପହରେ ନିଦରେ ସ୍ୱପ୍ନ ହେଲା, ଯେମିତି ସାନ ଭଉଣୀ କହୁଛନ୍ତି, ପିଲାଟା ଧାନଗଦା ଭିତରେ ଶୋଇଛି କାହିଁକି ଅଣିନାହଁ । ଆଉ ଥରେ ସାନ ଭଉଣୀ ସ୍ୱପ୍ନରେ କହିଥିଲେ, ମୁଁ ଯେତେ ମନା କରୁଛି ଅନିଟା (ମୃତ ବଡ଼ ଭଉଣୀ) ସବୁବେଳେ ଘରକୁ ଆସୁଛି । ପ୍ରକୃତରେ ବଡ଼ ଭଉଣୀକୁ ଯିଏ ଯେତେବେଳେ ସ୍ୱପ୍ନରେ ଦେଖେ ଡରେ; କିନ୍ତୁ ସାନ ଭଉଣୀ ଶୁଭ ଦୃଷ୍ଟିରେ ଚାହିଁଥାନ୍ତି । □□□

## ମାଟ୍ରିକ ପରୀକ୍ଷା ଓ ପରେ

ପଢ଼ାପଢ଼ିରେ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିବାରେ ମୋର କିଛି ଅସୁବିଧା ନ ଥାଏ । ତେବେ ଶେଷ ବର୍ଷରେ ପିତୃମାତୃ ବିୟୋଗ ଯୋଗୁ ପଢ଼ାପଢ଼ିରେ ବହୁତ ବ୍ୟାଘାତ ଜନ୍ମିଲା ଏବଂ ମାନସିକ ଦୁଶ୍ଚିନ୍ତା ମଧ୍ୟ ପୂର୍ଣ୍ଣମାତ୍ରାରେ ଆକ୍ରମଣ କରି ବସିଲା । ମାଟ୍ରିକ ପରେ ଆଉ ପାଠ ପଢ଼ିପାରିବି କି ନାହିଁ ଏହି ଚିନ୍ତା ମନକୁ ଆଲୋଡ଼ନ କରୁଥାଏ । ଯାହାହେଉ ପରୀକ୍ଷା ହେଲା । ସେତେବେଳେ ବିହାର-ଓଡ଼ିଶାରେ ମାସକୁ କୋଡ଼ିଏ ଟଙ୍କା ଲେଖାଏଁ ବୃତ୍ତିଗୋଟି

ବୃତ୍ତି, ଓଡ଼ିଶାରେ ମାସକୁ ପନ୍ଦର ଟଙ୍କା ଲେଖାଏଁ ତିନୋଟି ବୃତ୍ତି ଏବଂ ପ୍ରତି ଜିଲ୍ଲା ପାଇଁ ମାସକୁ ଦଶଟଙ୍କାର ଗୋଟିଏ ଗୋଟିଏ ବୃତ୍ତି ଥାଏ । ପରେ ଯେ ମୋର କଲେଜ ବନ୍ଧୁ ହେଲେ ରତ୍ନାକର ଷଡ଼ଙ୍ଗୀ ସେ ମଧ୍ୟ ମାଟ୍ରିକୁଲେଶନ ପରୀକ୍ଷା ପୁରୀ ଜିଲ୍ଲା ସ୍କୁଲରୁ ଦେଇଥାନ୍ତି । ତାଙ୍କର ସୁନାମ ଆମେ ଶୁଣିଥାଉ । ଗଣିତରେ ତାଙ୍କର ବିଚକ୍ଷଣ ବୁଦ୍ଧି । ଯାହାହେଉ ପରୀକ୍ଷା ଦେଇ ଆମର ସେ ତଳବମପଲ୍ଲି ଘରକୁ ଚାଲିଗଲି । ବୁଢ଼ୀମା' ଥାଏ । ସାନ ଭାଇ ବୀରଭଦ୍ର ଯେ କି ପାରଳୁଦ ଅନ୍ତର୍ଗତ ବାଲି ଶାସନରେ ପୋଷ୍ୟପୁତ୍ର ହୋଇଯାଇଥାଏ ସେ ସେଠାକୁ ଚାଲିଯାଇଥାଏ । ତା ତଳ ଭାଇ ରାଧାନାଥ ଯେ କି ବର୍ତ୍ତମାନ ଡକ୍ଟର ରାଧାନାଥ ରଥ, ବାଣୀବିହାର ମନୋବିଜ୍ଞାନ ବିଭାଗର ପ୍ରଫେସର ସେ ମଧ୍ୟ ଥାଏ । ସେ ପିତାଙ୍କ ସ୍କୁଲର ପଞ୍ଚମ ଶ୍ରେଣୀରେ ପଢ଼ୁଥାଏ । ବୀରଭଦ୍ରର ନାମ ମଧ୍ୟ ପଞ୍ଚମ ଶ୍ରେଣୀରେ ଥାଏ । ବିଧବା ନାନୀ ଓ ବାଲ୍ୟକାଳରୁ ବିବାହିତା ସାନ ଭଉଣୀ ଥାଏ । ଏ ସମସ୍ତଙ୍କର ପ୍ରତିପୋଷଣ ଭାର ମୋ ଉପରେ ।

ପିତାଙ୍କ ମୃତ୍ୟୁପରେ ମୁଁ ତାଙ୍କ ସ୍କୁଲର ମ୍ୟାନେଜର ହେଲି । ମାନ୍ଦ୍ରାଜ ନିୟମ ଅନୁସାରେ ପରିଚାଳିତ ଗଞ୍ଜାମ ଜିଲ୍ଲାର ସାହାଯ୍ୟପ୍ରାପ୍ତ ପ୍ରାଥମିକ ସ୍କୁଲ-ମାନଙ୍କରେ ଏହି ମ୍ୟାନେଜର ପ୍ରଥା ଥାଏ । ପ୍ରତି ସ୍କୁଲ ସକାଶେ ଜଣେ ଜଣେ ମ୍ୟାନେଜର ଥାନ୍ତି । ସେ ଶିକ୍ଷକ ରଖି ପାଠ ପଢ଼ାଇ ପିଲାମାନଙ୍କୁ ପ୍ରତିବର୍ଷ ଡେପୁଟି ଇନ୍‌ସପେକ୍ଟରଙ୍କ ଦ୍ୱାରା ପରୀକ୍ଷା କରାନ୍ତି । ପରୀକ୍ଷାର ଭଲମନ୍ଦ ଫଳ ଉପରେ ନିର୍ଭର କରି ଏବଂ ଶିକ୍ଷକମାନଙ୍କ ସଂଖ୍ୟା ଦେଖି ଡେପୁଟି ଇନ୍‌ସପେକ୍ଟର ପ୍ରତିବର୍ଷ ସ୍କୁଲ ସରକାରୀ ଗ୍ରାଣ୍ଟ କେତେ ପାଇବ ତାର ସୁପାରିଶ କରନ୍ତି । ସେହି ଗ୍ରାଣ୍ଟ ବ୍ୟାଙ୍କଉପରେ ଚେକ ଆକାରରେ ଆସେ ଏବଂ ମ୍ୟାନେଜର ଏହାକୁ ଭଙ୍ଗାଇ ମାଷ୍ଟ୍ରମାନଙ୍କୁ କିଛି କିଛି ଦେଇ ନିଜର ପାଉଣା ରଖେ । ଅନେକ ସମୟରେ ମ୍ୟାନେଜରଙ୍କ ଏହି ପାଉଣା ଗ୍ରାଣ୍ଟର ଅଧେ । ବାକିଅଧେ ଶିକ୍ଷକମାନେ ନିଅନ୍ତି । ମ୍ୟାନେଜର ହେବା ଗଞ୍ଜାମ ଜିଲ୍ଲାରେ ଗୋଟିଏ ବ୍ୟବସାୟ ହୋଇ-ଥାଏ ଏବଂ ଏହି ମ୍ୟାନେଜରଗିରି ବିକାକିଣା ହୁଏ । ପିତା ଯେତେବେଳେ ତଳବମପଲ୍ଲି ସ୍କୁଲକୁ ଆସିଲେ ଏହାର ମ୍ୟାନେଜର ଥିଲେ ବୁଢ଼ା କାର୍ଯ୍ୟୀ । ତାଙ୍କ ଅନ୍ତେ ତାଙ୍କ ପୁଅ ନୂତନ କାର୍ଯ୍ୟୀ ମ୍ୟାନେଜର ହେଲେ । ସେ କିଛି ନିଜରି ଅଧେ ନେଇଯାନ୍ତି ଏବଂ ବାକି ଅଧକରେ ପିତା ତାଙ୍କର କୁଟୁମ୍ବ ପରିପୋଷଣ କରନ୍ତି । ଅବଶ୍ୟ ଏହାଛଡ଼ା ଗ୍ରାମବାସୀମାନେ ଯେଉଁମାନଙ୍କର ପିଲା ପଢ଼ୁଥାନ୍ତି ବହୁତ ସାହାଯ୍ୟ କରନ୍ତି । ଏହି ମ୍ୟାନେଜର ପାଉଣା ନେଇ

ବ୍ୟସ୍ତ ହୋଇ ପିତା କେତେଦିନ ଏହି ସ୍କୁଲ ଗ୍ରାଣ୍ଟ ଏହାର ଅନତିଦୂରରେ ବଳାସପୁରରେ, ଯେଉଁଠାରେ କି ମୋର ମାମୁ ଓ ପିଉସାଘର, ସେଠି ଗୋଟିଏ ସ୍କୁଲ କରି ମଞ୍ଜୁର କରାଇ ଶିକ୍ଷକ ହୋଇ ରହିଲେ । ସେଠାରେ ସେ ଥିଲେ ଉଭୟ ମ୍ୟାନେଜର ଓ ଶିକ୍ଷକ । ସେ ଗଲାପରେ ତଳବ୍ରମପଲ୍ଲି ଗ୍ରାମବାସୀ ତାଙ୍କର ଅଭାବ ଏତେ ଅନୁଭବ କଲେ ଯେ ଉତ୍ସୁକ ହୋଇ କାର୍ଯୀଙ୍କୁ ମୋ ପିତାଙ୍କୁ ମ୍ୟାନେଜରସିପ୍ ଦେଇଦେବାକୁ ବାଧ୍ୟ କଲେ । ସେ ମ୍ୟାନେଜରସିପ୍ ଦେବାକୁ ରାଜି ହେବାରୁ ପିତା ପୁଣି ତଳବ୍ରମପଲ୍ଲି ଫେରିଆସିଲେ । ସେ ବଳାସପୁରରେ ଥିଲାବେଳେ ମୁଁ ଅନେକଥର ଏଠାରୁ ତଳବ୍ରମପଲ୍ଲିକୁ ଯେଉଁଠାରେ କି ବୋଝ ହେଉରିକା ଥାଆନ୍ତି, ଧାନ ଚାଉଳ ମୁଣ୍ଡେଇ ଆଣିଛି । ଏହି ବଳାସପୁରରେ ଥିବା-ବେଳେ ଥରେ ମୁଁ ସେଠି ଖରାଛୁଟିରେ ଥିଲି । ସେତେବେଳେ ବାଣପୁରରେ ପଢ଼ୁଥିଲି । ସ୍କୁଲ ଫିଟିବ । ପିତା କେଉଁଆଡ଼େ ଯାଇଥାନ୍ତି । ମୁଁ କିପରି ସ୍କୁଲକୁ ଯିବି ଜାଣିପାରିଲି ନାହିଁ । ସ୍କୁଲ ସେଠାରୁ ୨୪ ମାଇଲ । ମୁଁ ପିଉସୀ ଘରେ ଥାଏ । ସ୍କୁଲ ଫିଟିବାର ପୂର୍ବଦିନ ଭୋରରୁ ମୁଁ ଚାଲିକରି ସ୍କୁଲ ଯିବାକୁ ବାହାରି ପଡ଼ିଲି । ସମସ୍ତେ ମନାକଲେ ମଧ୍ୟ ଶୁଣିଲି ନାହିଁ । କାରଣ ମୁଁ ବୃତ୍ତି ପାଉଥାଏ । ସ୍କୁଲରେ ଖୋଲିବା ଦିନ ନ ପହଞ୍ଚିଲେ ଛୁଟିଯାକର ବୃତ୍ତି ମଧ୍ୟ ମିଳିବନାହିଁ । ତେଣୁ ମୋତେ ସବୁବେଳେ କି ଖୋର୍ଦ୍ଧା, କି ବାଣପୁର ସବୁ ସ୍କୁଲରେ ସ୍କୁଲ ଖୋଲିଲାଦିନ ହାଜର ହେବାକୁ ପଡ଼େ । ଥରେ ବୁଢ଼ୀବରରେ ଥିବାବେଳେ ଏକା ଶଳକାଭିତରେ ପଶି ଘାଟଉଙ୍ଗା ପାଖକୁ ଆସିଥିଲି ବାଣପୁର ସ୍କୁଲକୁ ଯିବାକୁ । ଏଥର ବଳାସପୁରରୁ ଏକୁଟିଆ ବାହାରିବାପରେ ମୋର ପିଉସୀପୁଅ ଭାଇ ମୋ ସଙ୍ଗରେ ଦୌଡ଼ିଲେ । ଆମେ ଚାଲିକରି ଚବିଶ ମାଇଲ ବାଣପୁର ଗଲୁ । ସେଠାରେ ରାତିରେ ପହଞ୍ଚିଲାବେଳକୁ ମୁଁ ଆଉ ପାଦ ପକାଇ ପାରୁନଥିଲି । ପାଦ ଫୁଲିଯାଇଥାଏ । ରାତିରେ ଗରମ ପାଣିରେ ସେକ ଦେଇ ସ୍କୁଲକୁ ଗଲି ।

ଯାହାହେଉ ପିତାଙ୍କ ମୃତ୍ୟୁ ସମୟକୁ ସେ ମ୍ୟାନେଜର ଥିବାରୁ ମୋତେ ତାଙ୍କ ସ୍ଥାନରେ ମ୍ୟାନେଜର ହେବାକୁ କିଛି ଅସୁବିଧା ହେଲାନାହିଁ । କାର୍ଯୀ କରଣ ଭଲଆ ଏଠା ମଧ୍ୟ ଗଞ୍ଜାମ ଜିଲ୍ଲାରେ ଗୋଟିଏ ମୌରସୀ ସମ୍ପତ୍ତି ଥିଲା । ପଞ୍ଚମ ଶ୍ରେଣୀରେ ଯେଉଁମାନେ ପଢ଼ୁଥାନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ବୟସ୍କ ଲୋକ, ପୁଅକନ୍ୟାର ପିତା, ଗ୍ରାମାଧିକାରୀ କାର୍ଯୀ କରଣଙ୍କ ସନ୍ତାନ । ପଞ୍ଚମ ଶ୍ରେଣୀ ପାସ ନକଲେ ସରକାର ସେମାନଙ୍କୁ ସେହି କାମରେ ରଖିବେ ନାହିଁ ।

ତେଣୁ ସେମାନେ କେବଳ ପଞ୍ଚମ ଶ୍ରେଣୀରେ ନାମ ଲେଖାଇ ନିଜ ନିଜ ଗ୍ରାମରେ ଆପଣାର ଧନ୍ଦା କରୁଥାନ୍ତି । ମଝି ମଝିରେ ପାଠ ପଢ଼ିବାକୁ ଆସନ୍ତି । ସେମାନଙ୍କୁ ଘୋଷାଇ ସାର୍ଟିଫିକେଟଟିଏ କରାଇଦେଲେ କୋଡ଼ିଏ ପଚାଶ ଟଙ୍କା ମିଳେ । ସେ ସମୟରେ ଏ ଟଙ୍କାର ମୂଲ୍ୟ ଖୁବ୍ ବେଶୀ । ବର୍ଷକୁ ଗ୍ରାଣ୍ଟ ପ୍ରାୟ ତିନିଶ ଟଙ୍କା ମିଳେ । ଏଥିରୁ ଅଧେ ଶିକ୍ଷକଙ୍କୁ ଦେଇ ବାକି ଅଧକ ମ୍ୟାନେଜର ହିସାବରେ ମୁଁ ରଖେ । ମାଟ୍ରିକ ପରୀକ୍ଷା ଦେଇ ଯେତେବେଳେ ଗାଁକୁ ଆସିଲି ମୋର ପ୍ରଥମ କାମ ହେଲା ସ୍କୁଲସକାଶେ ଗୋଟିଏ ଟ୍ରେନିଂପ୍ରାପ୍ତ ଶିକ୍ଷକ ବନ୍ଦୋବସ୍ତ କରିବା । କେଉଁଠାରୁ ଯୋଗାଡ଼ କରିବି କିଛି ଠିକ୍ କରି ନପାରି ସିଧାସଳଖ ଗଲି କାଳୁପଡ଼ା ଷ୍ଟେସନ ନିକଟସ୍ଥ ଟାଙ୍ଗିକୁ, ଯେଉଁଠାରେ କି ଟ୍ରେନିଂ ସ୍କୁଲ ଥାଏ ଏବଂ ଯେଉଁଠାରେ ଟ୍ରେନିଂପ୍ରାପ୍ତ ଶିକ୍ଷକ ମିଳିବାର ସମ୍ଭାବନା । ସେଠାକୁ ଯାଇ ଟ୍ରେନିଂସ୍କୁଲ ଛାତ୍ରାବାସରେ ରହିଲି ଏବଂ ହରିବନ୍ଧୁ ଧଳ ନାମରେ ଜଣେ ଟ୍ରେନିଂପ୍ରାପ୍ତ ଶିକ୍ଷକଙ୍କୁ ଧରି ଆସିଲି । ସେ ଆସି ପ୍ରଥମେ ପ୍ରଥମେ ଭଲ ପଢ଼ାଇଲେ କିନ୍ତୁ ଗ୍ରାମବାସୀ କେତେକ ମୋ ଉପରେ ଈର୍ଷା କଲେ । ଈର୍ଷାର କାରଣ ମୁଁ ବାହାରେ ପଢ଼ିବି, ସ୍କୁଲର ମ୍ୟାନେଜର ହୋଇ ଅନ୍ୟ ଶିକ୍ଷକ ରଖି ସେଥିରୁ ଲାଭ ଉଠାଇବି । ଅଥଚ ଅନ୍ତତଃ ଦଶବର୍ଷ ପିତା ଶିକ୍ଷକତା କରୁଥିବାବେଳେ କାର୍ଯ୍ୟୀ ମ୍ୟାନେଜର ଉଭୟ ହୋଇ ଯେ ଅଧେ ଟଙ୍କା ଅକାରଣରେ ନେଉଥିଲେ ସେତେବେଳେ ଲୋକମାନେ ପାଟି ଫିଟାଉ ନଥିଲେ । ମୁଁ ତ ମ୍ୟାନେଜର ହୋଇ ଛୁଟିରେ ଆସି ପିଲାଙ୍କୁ ପଢ଼ାଉଛି । ସେ କିଛି କରୁନଥିଲେ ଖାଲି ଅଧା ଭାଗ ନେବାଛଡ଼ା । ଗ୍ରାମବାସୀମାନେ ଏହି ଶିକ୍ଷକଙ୍କୁ ମୋ ବିରୁଦ୍ଧରେ ମତାଇଲେ । ସେ କେତେଦିନ ପରେ ଚାଲିଗଲେ । ତା ପରେ ପଙ୍କାଳମୁଠା ଷଣ୍ଢମୂଳର ଆଉ ଗୋଟିଏ ଶିକ୍ଷକ ବନ୍ଦୋବସ୍ତ କରି ରଖିଲି ।

ମାଟ୍ରିକ୍ ପରୀକ୍ଷା ପରେ ଆଗ ଶିକ୍ଷକ ବନ୍ଦୋବସ୍ତ କରି ତା ପରେ ପଞ୍ଚମ ଶ୍ରେଣୀରେ ଯେଉଁ ବୁଢ଼ା ବୁଢ଼ା କାର୍ଯ୍ୟୀକରଣ ପିଲାମାନେ ସାର୍ଟିଫିକେଟ ହାସଲ କରିବାକୁ ନାମ ଲେଖାଇଥାନ୍ତି ସେମାନଙ୍କ ତାଲିମରେ ଲାଗିଗଲି । କାରଣ ସେମାନଙ୍କୁ ସାର୍ଟିଫିକେଟ ଖଣ୍ଡେ ଦିଆଇଦେଇ ପାରିଲେ ଟଙ୍କା ମିଳିବ । ସେହି ଇଲାକାର ଡେପୁଟି ଇନ୍‌ସପେକ୍ଟର ପ୍ରତିବର୍ଷ ଆସି ପ୍ରତି ଶ୍ରେଣୀର ପାଠ ପରୀକ୍ଷା କରି, ପଞ୍ଚମଶ୍ରେଣୀର ଛାତ୍ରଙ୍କୁ ପରୀକ୍ଷା କରି ସାର୍ଟିଫିକେଟ ଦିଅନ୍ତି ଏବଂ ସ୍କୁଲର ପଢ଼ାପଢ଼ିର ଉନ୍ନତିକୁ ଦୃଷ୍ଟିରେ ରଖି ସେ ବର୍ଷର ସରକାରୀ ସାହାଯ୍ୟ ମନୋନୀତ କରନ୍ତି । ପ୍ରାୟ ପାଞ୍ଚମାଇଲ ମଧ୍ୟରେ କୌଣସି ସ୍କୁଲରେ ପଞ୍ଚମଶ୍ରେଣୀ

ନ ଥାଏ । ତେଣୁ ଏହି ସ୍କୁଲରେ ପଞ୍ଚମଶ୍ରେଣୀରେ ବୁଢ଼ାପିଲାଙ୍କର ଖୁବ୍ ଭିଡ଼ । ସେ ସମସ୍ତଙ୍କୁ ତାଲିମ କରି ସାର୍ଟିଫିକେଟ କରାଇଦେଲି । ଏଥିରେ ସେମାନେ ଭାରି ଖୁସିହେଲେ ଏବଂ ଶିକ୍ଷକ ହିସାବରେ ମୋର ନାମ ବ୍ୟାପିଗଲା । ସେଥିରୁ କେତେ ଟଙ୍କା ମିଳିଲା ଏବଂ ସ୍କୁଲର ବାର୍ଷିକ ଅର୍ଥ ସାହାଯ୍ୟରୁ ମଧ୍ୟ କେତେକ ମିଳିଲା । ଏଥିରେ ଘରର ବର୍ଷକୁ ଚଳିବା ସକାଶେ ଯାହା ଧାନ ଦରକାର ତାହା କିଣିଦେଇ ମାଟ୍ରିକ୍ ଫଳ ଅପେକ୍ଷାରେ ରହିଲି । ଭଗବାନଙ୍କ କୃପାରୁ ସେତେବେଳକୁ ମୋର ବାଣପୁର ଏମ୍. ଇ. ସ୍କୁଲର ଆଗ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ବୈଦ୍ୟନାଥ ରଥ ଯେ କି ମାଟ୍ରିକ୍ ପଢ଼ିଲାବେଳେ ମୋତେ ଆର୍ଥିକ ସାହାଯ୍ୟ ଦେଉଥିଲେ ସେ ଡେପୁଟି ଇନ୍‌ସପେକ୍ଟର ହୋଇ ଆସିଥାନ୍ତି । ତାଙ୍କ କଲମରେ ମୋର ସାନଭାଇ ବୀରଭଦ୍ର ଓ ରାଧାନାଥ ସେ ବର୍ଷ ପଞ୍ଚମ ଶ୍ରେଣୀ ସାର୍ଟିଫିକେଟ ପାଇଲେ । ରାଧାନାଥର ତା ପରେ ଇଂରେଜୀ ସ୍କୁଲକୁ ଯିବାର କଥା । ବୈଦ୍ୟନାଥ ବାବୁଙ୍କ ଅନୁଗ୍ରହରୁ ସେ ଯାଇ ତାଙ୍କ ବସାରେ ରହି ତାଙ୍କ ହେଡ଼କ୍ୱାଟରସ୍ଥ ପୁରୁଷୋତ୍ତମପୁର ଇଂରେଜୀ ସ୍କୁଲରେ ପଢ଼ିଲା ।

ମୋତେ ସେଠାରେ ପିତାଙ୍କ ଜାଗାରେ ଶିକ୍ଷକତା କରିବାକୁ ଗ୍ରାମବାସୀ ଅନୁରୋଧ କରୁଥାନ୍ତି । ବୁଢ଼ୀମା'ର ମଧ୍ୟ ସେଇୟା ଇଚ୍ଛା । ପିତାଙ୍କର ବଡ଼ପୁଅ ହୋଇ ପିତାଙ୍କ ମୃତ୍ୟୁର କଣ୍ଟିମାସ ମଧ୍ୟରେ ତାଙ୍କ ଜାଗା ମାଡ଼ିବସିବା ମୋର ଭାଗ୍ୟ ହେବ ବୋଲି ଅଧିକାଂଶ ଲୋକଙ୍କର ମତ । ମୁଁ କିନ୍ତୁ ହଁ କି ନାହିଁ କିଛି କରୁନଥାଏ । ସ୍କୁଲରେ ସବୁବେଳେ ପ୍ରଥମସ୍ଥାନ ଅଧିକାର କରି ମାଟ୍ରି-କୁଲେଶନ ପାସ କରି ପ୍ରାଇମେରୀ ସ୍କୁଲରେ ଶିକ୍ଷକତା କରିବି ଏ କଥା ମୋ ମନକୁ ଆଦୌ ଲାଗୁ ନଥାଏ । କିରାନି ଚାକିରି ସକାଶେ ଖଲ୍ଲିକୋଟ ଇଷ୍ଟେଟରେ ଦରଖାସ୍ତ ଦେଲି । ସେତେବେଳେ ଟ୍ରାଭେନହାୟାର ନାମରେ ଜଣେ ସାହେବ ଇଷ୍ଟେଟରେ ମ୍ୟାନେଜର ଥାନ୍ତି । ମୁଁ ଦରଖାସ୍ତ ନେଇ ତାଙ୍କୁ ଦେଖାକଲି । ସେ ମୋ ଉପରେ ସନ୍ତୁଷ୍ଟ ଥିବାପରି ଜଣାପଡ଼ିଲେ ଏବଂ ମୋର ନାମ ରେଜିଷ୍ଟ୍ରି-କରି ରଖିବାକୁ ତାଙ୍କ ଅଫିସକୁ ହୁକୁମ ଦେଲେ ।

ବ୍ରହ୍ମପୁର ଆଗରୁ କେବେ ଯାଇ ନଥିଲି । ଯଦି ଚାକିରି କରେ ତେବେ ବ୍ରହ୍ମପୁରରେ ଚାକିରି କରିବି ବୋଲି ଇଚ୍ଛା ହେଲା । ବ୍ରହ୍ମପୁର ଆମ ଗାଁଠାରୁ ୩୦ ମାଇଲ । ଆମ ପଡ଼ିଶାଘରର ଦୁଇଆ ବୋଉର ଭଉଣୀ ବ୍ରହ୍ମପୁର ନିକଟସ୍ଥ ଯୋଗିଆପଲ୍ଲିରେ ବିବାହ ହୋଇଥିଲେ । ଦିନେ ସେଠାକୁ ଆମ ଗାଁର ଗୋଟିଏ ବଳଦ ଗାଡ଼ି ଯାଉଥିଲା । ମୁଁ ଭୋରରୁ ସେ ଗାଡ଼ି ସଙ୍ଗେ ଗଲି । ଦିନ ଯାକ ଚାଲି

ଚାଲି ସଞ୍ଜବେଳେ ଯୋଗିଆପଲ୍ଲିରେ ପହଞ୍ଚିଲି । ରାତିରେ ଖାଇପିଇ ଶୋଇଲି ।
ଆର ଦିନ ସକାଳୁ ବ୍ରହ୍ମପୁର ଗଲି । ସିଧା ଗଲି ସେକେଣ୍ଡାରୀ ଟ୍ରେନିଂ ସ୍କୁଲ
ହଷ୍ଟେଲକୁ । ସେଠାରେ କେତେ ପିଲା ଥିଲେ । ସେଠାରେ ରହିଲି । ମନେ
ହେଉଥାଏ ଯେପରି ଏହି ଟ୍ରେନିଂ ସ୍କୁଲରେ ନାମ ଲେଖାନ୍ତି । ଚାକିରିର କିନ୍ତୁ
ସନ୍ଧାନ କିଛି ମିଳିଲା ନାହିଁ । ଫେରି ଆସିଲି । ବ୍ରହ୍ମପୁର ଯିବାଟା ପିଲାଦିନରୁ ଯାହା
ମୋର ସ୍ୱପ୍ନ ଥିଲା, ସେ ସ୍ୱପ୍ନ ଚରିତାର୍ଥ ହେଲା । ମନ ସନ୍ତୁଷ୍ଟ ହେଲା । ପ୍ରକୃତରେ
ବ୍ରହ୍ମପୁରରେ ଯେ ଗୋଟିଏ ଚାକିରି ମିଳିଯିବ ଏହା ଦୁରାଶା । ଏପରି ଏକ
ଅପରିଚିତ ଜାଗାକୁ ଏକାକୀ ଚାକିରି ଅନ୍ୱେଷଣରେ ଯିବା ଥିଲା ଏକ କୈଶୋର-
ସୁଲଭ ଚପଳତା ଏବଂ ନୂତନ ଆବିଷ୍କାର କରିବା ମନୋବୃତ୍ତିର ଏକ ନିଦର୍ଶନ ।

ମୋର ସାନ ଭଉଣୀ ପାରିକୁଦର ଅଲଣ୍ଡାରେ ବିବାହ ହୋଇଥାଏ;
କିନ୍ତୁ ଯାଇ ନ ଥାଏ । ମୁଁ ଛୁଟିରେ ଥିଲାବେଳେ ବୁଢ଼ୀମା ସାହାଯ୍ୟରେ ଲୁଗା-
ପଟା, ବାସନକୁସନ, ଗହଣାଗାଣ୍ଠି ଯାହା ଥିଲା ତାହା ସଂଗ୍ରହ କରି ତାକୁ ତା
ଶାଶୁଘରେ ଛାଡ଼ିଦେଇ ଆସିଲି । ତାଙ୍କର ସମ୍ପତ୍ତିବାଡ଼ି ଥାଏ । ପାରିକୁଦ ରାଜାଙ୍କ
ଭଲଲୋକ କାମ କରୁଥିବାରୁ ସେ ଇଲାକାରେ ତାଙ୍କର ବେଶ୍ ପ୍ରତିପତ୍ତି ଥାଏ ।
ମୋ ଭଉଣୀର ଶାଶୂ ନ ଥାଏ; ଖାଲି ଗୋଟିଏ ଜ୍ୟେଷ୍ଠ ନଣନ୍ଦ ଥାଏ । ସ୍ତ୍ରୀଲୋକ
ଅଭାବରୁ ସେମାନଙ୍କ ଘରେ ଚଳିବା ଅସୁବିଧା ହେଉଥିବାରୁ ସେମାନେ ମୋର
ବିଧବା ନାନୀକୁ ଡାକିନେଇ ତାଙ୍କ ଘରେ ରଖିଲେ । ଆମର ତ ଅନାଟନ
ଅବସ୍ଥା । ମୋର ସାନ ଭାଇ ଯେ କି ପୋଷ୍ୟପୁତ୍ର ହୋଇଥିଲା କିନ୍ତୁ ଆମ ଘରେ
ଥିଲା, ସେ ମଧ୍ୟ ତାର ପୋଷ୍ୟ ପିତା ଘରକୁ ଚାଲିଗଲା । ମୋର ସବା ସାନଭାଇ
ଦେବେନ୍ଦ୍ର ବୋଉ ମଲାବେଳକୁ ତାକୁ ଦେଢ଼ବର୍ଷ ହୋଇଥିଲା । ତାକୁ
ଲାଳନପାଳନ କରିବାକୁ କେହି ନ ଥିବାରୁ ମୋର ମାଈଁ ତାକୁ ନେଇଗଲେ ।
ସେମାନଙ୍କର ଛୁଆପିଲା ନ ଥିଲା । ପିଲାଟିକୁ ପାଳି ପୁଅ କରି ରଖିବେ ବୋଲି
ସେମାନଙ୍କର ଉଦ୍ଦେଶ୍ୟ ଥିଲା । ରାଧାନାଥ ଗଲା ପୁରୁଷୋତ୍ତମପୁରରେ ପଢ଼ିବାକୁ ।
ଘରେ ବୁଢ଼ୀମା ଛଡ଼ା ଆଉ କେହି ରହିଲେ ନାହିଁ । ◻◻◻

## କଲେଜପଢ଼ା ଆରମ୍ଭ

ପିତାମାତାଙ୍କ ମୃତ୍ୟୁରେ ଘରର ବିପର୍ଯ୍ୟସ୍ତ ଅବସ୍ଥାକୁ ଏପରି ସଜାଡ଼ି ଓ ଘରଆଡ଼େ ଟିକେ ବୁଲାବୁଲି କଲାପରେ ମାଟ୍ରିକୁଲେଶନ ଫଳକୁ ଅପେକ୍ଷା କରି ଗାଁରେ ବସିଲି । ଘରେ ଗଣ୍ଡେ ଖାଇ ସ୍କୁଲରେ ପଢ଼ାଇ ସକାଳ ସଞ୍ଜ- ବେଳା ଝାରେଶ୍ୱରଙ୍କ ସୁରମ୍ୟ ପରିବେଶରେ କାଳ କଟାଏ । ନିଭୃତ ଜାଗା । ପାହାଡ଼ ତଳ ଆମ୍ବ ଓ କଆ କେତକୀ ଡୋଙ୍ଗାରେ ପରିବେଷ୍ଟିତ । କୁଳୁକୁଳୁ ଝରଣା । କୁଣ୍ଡରେ ନିର୍ମଳ ପାଣି । ବସନ୍ତ ସମୟ । କୋକିଳ କୁହୁ କୁହୁ ଡାକୁ- ଥାଏ । ଏ ପରିବେଶ ମୋର କିଶୋର ପ୍ରାଣରେ ଗୋଟିଏ ନୂତନ ପ୍ରେରଣା ଜାଗରୂକ କରେ । ଏପରି ନିରୋଳାରେ ସମୟ କାଟୁ କାଟୁ ମାଟ୍ରିକ ଫଳ ବାହାରିଲା । ମୁଁ ଓଡ଼ିଶାରେ ପ୍ରଥମ ହୋଇ ୧୫ ଟଙ୍କା ବୃତ୍ତି ପାଇଲି । ମାୟାଧର ଦ୍ୱିତୀୟ ହୋଇ ମଧ୍ୟ ପନ୍ଦର ଟଙ୍କା ପାଇଲେ । ମୀନକେତନ ଜିଲ୍ଲା ବୃତ୍ତି ଦଶ- ଟଙ୍କା ପାଇଲେ । ରତ୍ନାକର ବିହାର-ଓଡ଼ିଶା ବୃତ୍ତି କୋଡ଼ିଏ ଟଙ୍କା ପାଇଲେ । ବୃତ୍ତି ପାଇଲାପରେ ମନ ଅସ୍ଥିର ହେଲା । କୌଣସିପ୍ରକାରେ କିଛି ଟଙ୍କା ସଂଗ୍ରହ କରି କଟକ ରେଭେନ୍‌ସା କଲେଜକୁ ପଢ଼ିବାକୁ ଆସିଲି । ମାୟାଧର, ରତ୍ନାକର, ମୀନକେତନ ମଧ୍ୟ ଆସିଲେ । ଆଉ ଜଣେ ରଣପୁରବାସୀ ଭବିଷ୍ୟତର ଅନ୍ତରଙ୍ଗ ବନ୍ଧୁ ଚଣ୍ଡେଶ୍ୱର ମିଶ୍ର ମଧ୍ୟ ଆସିଲେ । ଆମେ ସମସ୍ତେ ଏକାଠି ନାମ ଲେଖାଇଲୁ ।

କଟକରେ ମାୟାଧର ଓ ମୁଁ ଏକାଠି ପଶ୍ଚିମ ଛାତ୍ରାବାସରେ ରହିଲୁ । ସେତେବେଳେ ଜିଲ୍ଲା ଜଜଙ୍କ ଜଣେ ପୁଅ ଆଇ. ଏ. ପଢ଼ିବାକୁ ଆସିଥାନ୍ତି । ତାଙ୍କର ଗୁଡ଼ାଏ ତକିଆ, ଆଠଟା ତକିଆ ଖୋଳ, ଦୁଇଟା ବିଛଣା ଚଦର, ଅଣ୍ଡର ଓୟାର, ସାର୍ଟ, ଗେଞ୍ଜି ସବୁ ଶୁଖିବା ସକାଶେ ଗୋଟିଏ ଦଉଡ଼ିରେ ଟଣାହୋଇ ଗୋଟିଏ ପ୍ରଦର୍ଶନୀ ହୋଇଥାଏ । ପିଲାମାନେ ଏହି ବିପୁଳ ବିଭବ ଦେଖିବାକୁ ସେଠି ଠୁଳ ହେଉଥାନ୍ତି । ମାୟାଧର ଓ ମୋର ଗୋଟିଏ ବିଛଣା- ଚଦର ଛଡ଼ା ଆଉ କିଛି ନ ଥାଏ । ଶେଯ ନ ଥାଏ, ତକିଆ ନ ଥାଏ । ଖଟଟା ଉପରେ ଖାଲି ବିଛଣା ଚଦରଟା କିପରି ପକାଇବୁ ? ତେଣୁ ଦୁଇ ଦୁଇଟି ଇଟା ଆଣି ମୁଣ୍ଡ ତଳକୁ ରଖି ତା ଉପରେ ବିଛଣା ଚଦର ପକାଇଲୁ । ମୁଁ ସେତେ- ବେଳେ ମାୟାଧରଠାରୁ ଗୋଟିଏ ପୁରୁଣା ସାର୍ଟ କିଣିଥାଏ । ମୋର ଗଣିତରେ

ବହୁତ ଆଗ୍ରହ ଓ ଦଖଲ ଥାଏ । ସମସ୍ତେ କହୁଥାନ୍ତି ମୁଁ ବିଜ୍ଞାନ ନେଲେ ଭଲ ହେବ; କିନ୍ତୁ ଲାବୋରେଟରି ଅମାନତ ଦେବାକୁ ମୋ ପାଖରେ ଅଧିକା ପନ୍ଦର ଟଙ୍କା ନଥାଏ । ତେଣୁ ବାଧ୍ୟହୋଇ କଳା ନେଲି । ଗରିବର ଜୀବନରେ ଗତି-ଧାରା ଏହିପରି ନିୟନ୍ତ୍ରିତ ହୁଏ । ତେବେ ଗ୍ରୁପ ନେଲି ଲଜିକ, ଗଣିତ ଓ ସଂସ୍କୃତ । ମାୟାଧର ଓ ଚଣ୍ଡେଶ୍ୱର ମଧ୍ୟ କଳା ନେଲେ । ରତ୍ନାକର ନେଲେ ବିଜ୍ଞାନ । ଛାତ୍ରାବାସରେ ଗଞ୍ଜାମ ମେସରେ ଯୋଗ ଦେଲି । ସେଠୁ ମୋତେ କିଛି ସାହାଯ୍ୟ ମିଳିଲା । କଲେଜର ଗରିବ ପାଣ୍ଠିରୁ ମଧ୍ୟ କିଛି ସାହାଯ୍ୟ ମିଳିଲା । ପଢ଼ା ଚାଲିଲି । ପ୍ରଥମ ବର୍ଷ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିବାରୁ ଅଧ୍ୟାପକ ଓ ଛାତ୍ରମାନଙ୍କ ନଜରକୁ ଆସିଲି । ଦ୍ୱିତୀୟ ବର୍ଷ ମୋତେ ପଶ୍ଚିମ ଛାତ୍ରାବାସର ଉପର ମହଲାରେ ଗୋଟିଏ ଜଣିକିଆ ବଖରା ମିଳିଲା । ସେତେବେଳେ ଅଧ୍ୟାପକ ନାରଣ ମିଶ୍ରେ ସୁପରିଣ୍ଟେଣ୍ଡେଣ୍ଟ ଥାନ୍ତି । ସେ ଖେଳ ଓ ସଙ୍ଗୀତପ୍ରିୟ ଏବଂ ପିଲାଙ୍କ ସଙ୍ଗେ ବଡ଼ ମେଳାପି । ଅକ୍ଷୟକୁମାର ଦାସ, ଶ୍ରୀକାନ୍ତ ମହାନ୍ତି ପ୍ରଭୃତି ଯେଉଁମାନେ ସଙ୍ଗୀତ ଓ ଖେଳରେ ଓସ୍ତାଦ୍ ସେ ନାରଣ ବାବୁଙ୍କ ପ୍ରିୟ । ଆମେ ଥାଉ ଦୂରରେ । ମୁଁ ଯେଉଁ ବଖରାରେ ଥିଲି ସେଠି ସଞ୍ଜବେଳେ ଗାଧୋଇ ପାଧୋଇ ଖୋଲା ଝରକାକୁ ମୁହାଁ କରି ବସିଲେ ଧ୍ରୁବତାରାଟି ପୂରା ଦେଖାଯାଏ । ଏହି ଧ୍ରୁବତାରାକୁ ଚାହାଁ ପଢ଼ିବାକୁ ବଡ଼ ଆନନ୍ଦ ଲାଗେ । ଭାବେ ଏହି ତାରା ହେଉ ମୋର ଜୀବନର ନିୟନ୍ତ୍ରଣ ତାରକା । ଏହା ଯେପରି ସ୍ଥିର, ଅଚଳ ଓ ସୁନିଶ୍ଚିତ, ମୋର ପାଠର ଫଳ ମଧ୍ୟ ସେଇଆ ହେଉ । ଆଇ. ଏ. ପରୀକ୍ଷା ଦେଇ ଗାଁକୁ ଚାଲିଗଲି । ପରୀକ୍ଷାରେ ଭଲ କରିଛି, ଭାବିଲି ଫଳ ନିଶ୍ଚୟ ଭଲ ହେବ । ଗାଁରେ ପୁଣି ମୋର ପରିଚାଳନାରେ ଥିବା ସ୍କୁଲରେ ପଢ଼ାଇ ସକାଳ ସଞ୍ଜବେଳା ଝାମେଶ୍ୱରର ମନୋରମ ପରିବେଶରେ ସମୟ କଟାଏ ।

□□□

## ବିବାହ

ଏତେବେଳକୁ ଲୋକଚକ୍ଷୁରେ ମୋର ମାନ ବହୁତ ବଢ଼ିଯାଇଥାଏ । ଆମର ସେ ଖଲ୍ଲିକୋଟ ତାଲୁକାରେ ଆଇ. ଏ. ପାଶ୍ କରିଥିବା ଲୋକ ଅତି ବିରଳ । ଗରିବ ପିଲା ହୋଇ, ପିତାମାତାଙ୍କ ମୃତ୍ୟୁ ସତ୍ତ୍ୱେ ଘରର ସମସ୍ତ ଭାର

ବନ୍ଧନ କରି ସୁଦୂର କଟକ କଲେଜରେ ପଢ଼ି ଆଇ. ଏ. ପାସ କରିବାକୁ ଯାଉଥିବାରୁ ଗାଁର କି ପୁରୁଷ, କି ସ୍ତ୍ରୀ, କି ବୃଦ୍ଧ, କି ଯୁବକ ଏବଂ ପାଖଆଖ ଗାଁର ଜାଣିବା ଶୁଣିବା ଲୋକମାନେ ମୋତେ ବହୁତ ଶ୍ରଦ୍ଧା କରନ୍ତି । ଏହି ହାଓ୍ୱାରେ ମୋର ବିବାହ ପ୍ରସ୍ତାବ ଜୋରରେ ଲାଗିଗଲା । ପିତା ଜୀବିତ ଥିଲାବେଳେ ତାଙ୍କର ଖଲ୍ଲିକୋଟ ଗଡ଼ ନିବାସୀ ରାଜପୁରୋହିତ ସଦାଶିବ ବ୍ରହ୍ମାଙ୍କ ସଙ୍ଗେ ଭଲ ପରିଚୟ ଥାଏ । ତାଙ୍କର ବଡ଼ପୁଅ ହରିହର ପରମଗୁରୁ ବଡ଼ ସୁଶ୍ରୀ ପଣ୍ଡିତ ମଧ୍ୟ ଥିଲେ । ଦ୍ୱିତୀୟ ପୁତ୍ର ବୀରଭଦ୍ର ଆଚାର୍ଯ୍ୟ ସାହେବାନ ଚେହେରା, ସରକାରୀ ରେଭେନ୍ୟୁ ଇନ୍‌ସପେକ୍ଟର ଥିଲେ । ସେତେବେଳକୁ ଏହି ଗ୍ରକର ଲୋକଚକ୍ଷୁରେ ବଡ଼ ଭୟାବହ ଓ ସମ୍ମାନସୂଚକ ଥିଲା । ସେ ହେଉଛନ୍ତି ମଫସଲ ଇଲାକାରେ ବ୍ରିଟିଶ ସରକାରଙ୍କ ପ୍ରତିନିଧି । ତାଙ୍କ ଉପରକୁ ତହସିଲଦାର ବା ଡେପୁଟି ତହସିଲଦାର । ଆଉ ଭାଇ ବାସୁଦେବ ଇଷ୍ଟେଟ ଅଫିସରେ କିରାନି କାମ କରୁଥିଲେ ଏବଂ ସାନ ଭାଇ ଗୌରୀଶଙ୍କର ମୋଠାରୁ ଟିକିଏ ବଡ଼, ମାଟ୍ରିକୁଲେଶନ ପାସ୍ କରି ସଂସ୍କୃତ ସାହିତ୍ୟାଚାର୍ଯ୍ୟ ପଢ଼ୁଥିଲେ । ସେ ପରେ ଖଲ୍ଲିକୋଟ ହାଇସ୍କୁଲର ସଂସ୍କୃତ ପଣ୍ଡିତ ହେଲେ । ପିତାଙ୍କର ଏହି ପରିବାର ପ୍ରତି ବହୁ ଆଗ୍ରହ ଓ ଆକାଙ୍‌କ୍ଷା ଥିଲା । ସମୟ ସମୟରେ ମୋତେ ମଧ୍ୟ ଏଠାକୁ ନେଉ-ଥିଲେ । ମୋର ପଢ଼ାରେ ବିଚକ୍ଷଣତା ଦେଖି ସେମାନେ ସମସ୍ତେ ବଡ଼ ଖୁସି ଥିଲେ; ବିଶେଷତଃ ହରିହର ପରମଗୁରୁ । ପିତାଙ୍କର ଭାରି ଇଚ୍ଛା ଥିଲା ବ୍ରହ୍ମାଙ୍କର ଏକମାତ୍ର କନ୍ୟା ଏବଂ ସବୁଠାରୁ କନିଷ୍ଠ ସନ୍ତାନକୁ ମୋ ସଙ୍ଗେ ବିବାହ କରେଇବାକୁ । ସଦାଶିବ ବ୍ରହ୍ମା ଓ ପିତା ଉଭୟେ ଦେହତ୍ୟାଗ କଲେ । ତାଙ୍କ ଘରେ ବୋଧହୁଏ ମୋ ପିତାଙ୍କର ଇଚ୍ଛା ଜାଣିପାରିଥିଲେ । ମୁଁ ଆଇ. ଏ. ପରୀକ୍ଷା ଦେଇ ଫେରିବା ପରେ ଗରିବ ହୋଇଥିଲେ ମଧ୍ୟ ଲୋକଚକ୍ଷୁରେ ମୋର ସମ୍ମାନ ବହୁତ ବଢ଼ିଯାଇଥାଏ । ଏ ସମୟରେ ବୀରଭଦ୍ର ଆଚାର୍ଯ୍ୟ ଯେ କି ସେହି ଇଲାକାରେ ପ୍ରବଳ ପ୍ରତାପୀ ରେଭେନ୍ୟୁ ଇନ୍‌ସପେକ୍ଟର ଥିଲେ ସେ ଆସି ଦିନେ ଦିପହରରେ ଆମର ଜ୍ୟେଷ୍ଠ ଗ୍ରାମଘରେ ପହଞ୍ଚିଲେ । ବୁଢ଼ୀମା ତାଙ୍କୁ ଚିହ୍ନି ଚାଟକା ହୋଇଗଲା । ମୁଁ ପ୍ରଥମେ ଉଦ୍ଦେଶ୍ୟ ଭଲରୂପେ ବୁଝିନଥିଲି । ପରେ ବୁଝିଲି । ତାଙ୍କର ବିବାହ ପ୍ରସ୍ତାବରେ ବୁଢ଼ୀମା ସ୍ୱର୍ଗକୁ ଉଠିଗଲା । ଗାଁର ସମସ୍ତେ ଭାବିଲେ ମୋର ଭାଗ୍ୟ ବଦଳିଗଲା, ମୁଁ ଖଲ୍ଲିକୋଟରେ ବ୍ରହ୍ମାଙ୍କ ଝିଅ ଓ ରେଭେନ୍ୟୁ ଇନ୍‌ସପେକ୍ଟରଙ୍କ ଭଉଣୀକୁ ବିବାହ ହେଉଛି ବୋଲି । ମୋର କିଛି ଇଚ୍ଛା ନ ଥାଏ । ପାଠପଢ଼ା ସରିଲେ ବିବାହ ହେବି ବୋଲି ଧରିବସିଲି । ବୁଢ଼ୀମା କିନ୍ତୁ ନଛୋଡ଼ବନ୍ଦା । ସେତେ-

ବେଳେ ନାମା ଆସିଥାଏ । ସେ ମଧ୍ୟ ବୁଡ଼ୀମା ସଙ୍ଗେ ମିଶିଗଲା । ଘରେ ଏ ବିଷୟରେ ବହୁତ କଜିଆ ହେଲା । ଗାଁର ମାଇପି ସମସ୍ତେ ମୋତେ ବେଢ଼ିଗଲେ । ଏତେବଡ଼ଟେ ହେଲଣି, ବିବାହ ହେବାକୁ ମନା କରୁଛି । ଆମ ଗାଁର ସମସ୍ତ ପିଲାଏ ଷୋଳ ଅଠର ବର୍ଷ ଭିତରେ ବିବାହ ହୋଇଯାନ୍ତି । ମୋତେ ସେତେ-ବେଳେ କୋଡ଼ିଏ ବର୍ଷ ହୋଇଥିଲା । ମୁଁ ଆଉ ଅବିବାହିତ ଅବସ୍ଥାରେ ରହିବା ସମସ୍ତଙ୍କ ଚକ୍ଷୁରେ ବଡ଼ ନାପସନ୍ଦ ଦିଶିଲା, ସତେ ଯେପରି ଗାଁର ଝିଅମାନଙ୍କ ପ୍ରତି ମୁଁ ଗୋଟିଏ ମସ୍ତ ବିପଦ । ପିଲାକନ୍ୟା ବିବାହ । କନ୍ୟାକୁ ତ ବାରବର୍ଷରୁ ବେଶୀ ହୋଇ ନଥିବ । ହଠାତ୍ ତ ଆସିଯାଉନାହିଁ । ପାଠ ପଢ଼ିବାରେ ଅସୁବିଧା କଣ ? ସମସ୍ତଙ୍କ ଗୃପରେ ମୋତେ ବାଧ୍ୟ ହୋଇ ରାଜି ହେବାକୁ ପଡ଼ିଲା । ତେବେ ନବ ସଭ୍ୟ ଯୁବକ । କନ୍ୟାକୁ ଦେଖି ବିବାହ ହେବା କଥା । ସେ କଥା କହିବାକୁ ତ ସେତେବେଳେ ସମାଜର ଯାହା ଅବସ୍ଥା । ମୋର କହିବାର ସାହସ ନ ଥିଲା । କନ୍ୟାର ଭଲମନ୍ଦ ବିଷୟ ଜାଣିବାକୁ ମୋର ଇଚ୍ଛା ଥାଏ । ତେଣୁ ବୁଡ଼ୀମା ଗଲା ଦେଖିଆସିବାକୁ । ସେ ତ ଘରର ମୁରବି । ଆଉ ଦେଖିବ କିଏ ? ସେ ଯାଇ ସେଠାରେ ବହୁତ ଅତିଥି ସତ୍କାର ପାଇଲା ଏବଂ ଦେଖିଆସି ଶତଜିହ୍ୱାରେ ପ୍ରଶଂସା କରିବାକୁ ଲାଗିଲା । ଏଥିରେ ମୋର ଆଉ କଣ ଆପତ୍ତି ଥାଇପାରେ । ତେଣୁ ବିଭାଘର ନିଶ୍ଚୟ ହୋଇଗଲା ଏବଂ ଫଳ ନ ବାହାରୁଣୁ ବିବାହ ହେଲା । ବିବାହ ବେଳେ ଚନ୍ଦ୍ରର ବୀରଭଦ୍ର ଆଗ୍ରସେୈ୍ୟ କିଛି ଲୁଗାପଟା ଦେଇଥିଲେ ଏବଂ ସେ କାଳର ପ୍ରଥା ଅନୁସାରେ ପାଟସଥା ଦେଇଥିଲେ । □□□

## ରାଧାନାଥର ପତ୍ରା

ବିବାହର କିଛି ଦିନ ପରେ ଆଇ. ଏ. ଫଳ ବାହାରିଲା । ଖବର ପାଇଲି ଯେ ମୁଁ ପାଟନା ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଛି, ମାଯ୍ୟାଧିର ତୃତୀୟ ହୋଇଛି । ମାର୍କସ୍ ମଗାଇଲି । ମୋଟରେ ଶତକଡ଼ା ସତୁରି ରଖିଛି । ମାସିକ ପଚିଶ ଟଙ୍କା ବୃତ୍ତି ତ ହୋଇଗଲା । ବି. ଏ. ପଢ଼ିବାକୁ ଆଉ କିଛି ଅସୁବିଧା ନାହିଁ । ପରୀକ୍ଷା ଫଳ ନ ବାହାରୁଣୁ ମନ ଯେତେବେଳେ ବଡ଼ ଉଦ୍‌ବିଗ୍ନ ଥିଲା ସେତେବେଳେ ମୁଁ ଥରେ ସ୍ୱପ୍ନ ଦେଖିଥିଲି ଯେ ମୋ ନାଁଟା ଉପରେ ଅଛି । ଏଥର ମୋର ସ୍ୱପ୍ନ ସତ ହେଲା । ମନ ଆନନ୍ଦରେ କୁଣ୍ଢେ ମୋଟ ହୋଇଗଲା ।

କଲେଜକୁ ଗଲେ ପିଲାମାନେ ଓ ଅଧ୍ୟାପକମାନେ ଯେ ସମ୍ବର୍ଦ୍ଧନା କରିବେ ତାହା ଆଖିଆଗରେ ନାଚିଗଲା । ଆହା ଏ ଆନନ୍ଦ ପିତାମାତା ପାଇପାରିଲେ ନାହିଁ । ଗାଁରେ ତ ଲୋକମାନେ କିଛି ବୁଝନ୍ତି ନାହିଁ । ସେମାନେ ଖାଲି ବୁଝିଲେ ମୁଁ ପରୀକ୍ଷାରେ ପ୍ରଥମ ହୋଇଛି, ମାସକୁ ପଚିଶି ଟଙ୍କା ପାଇବି ଆଉ ବି. ଏ. ପଢ଼ିବାକୁ ଯିବି । ଏଥିରେ କେତେକଙ୍କ ଆନନ୍ଦ ଓ କେତେକଙ୍କ ଈର୍ଷା ମଧ୍ୟ ହେଲା ।

କିନ୍ତୁ କଲେଜ ଯିବା ଆଗରୁ ମୋର ସାନଭାଇ ରାଧାନାଥର ଇଂରେଜୀ ସ୍କୁଲରେ ପଢ଼ା ଚାଲୁକରିବାକୁ ହେବ । ସେ ଦୁଇ ବର୍ଷ ହେଲା ଯାଇ ପୁରୁଷୋ-ତ୍ତମପୁରର ଡେପୁଟି ଇନ୍‌ସପେକ୍ଟର ବୈଦ୍ୟନାଥ ରଥଙ୍କ ଘରେ ରହି ପଢ଼ୁଥିଲା । ମୁଁ ଆଇ. ଏ. ପରୀକ୍ଷା ଦେଇ ଘରକୁ ଗଲାପରେ ସେ ମଧ୍ୟ ଆସିଲା । ଛୁଟି ପରେ ସେ ସେଠାରେ ସ୍ୱାଗତ ହେବ କି ନାହିଁ ତାର ସନ୍ଦେହ ଥିଲା । ବୈଦ୍ୟନାଥ ବାବୁ ବଡ଼ ଭଲ ଲୋକ । ରାଧାନାଥ ବୟସର ତାଙ୍କର କେତୋଟି ପୁଅ ଥିଲେ । ପିଲାପିଲାଙ୍କ ମଧ୍ୟରେ କିଛି କଜିଆ ହେଉଥିବ ବା ଅନ୍ୟ କୌଣସି କାରଣରୁ ତାଙ୍କର ସ୍ତ୍ରୀ ସନ୍ତୁଷ୍ଟ ନ ଥିଲେ । ବି. ଏ. ପଢ଼ିବାକୁ ଯିବା ଆଗରୁ ମୁଁ ଆଗ ପୁରୁଷୋତ୍ତମ-ପୁର ଯାଇ ବୈଦ୍ୟନାଥ ବାବୁଙ୍କ ସଙ୍ଗେ କଥା କରିବାକୁ ଠିକ୍ କଲି । ସେତେ-ବେଳକୁ ଆଷାଢ଼ ମାସ । ଘୋର ବର୍ଷା ଯୋଗୁଁ ପୁରୁଷୋତ୍ତମପୁର ଯିବା ବାଟରେ ଖରଖରି ନଈରେ ଜୋର ବଢ଼ି ଆସିଥାଏ । ଖରଖରିର ନାମ ଚରିତାର୍ଥ କରି ନଈରେ ଖୁବ୍ ପ୍ରବଳ ସୁଅ । ଚଉଡ଼ା ପ୍ରାୟ ପଚିଶ ଷାଠିଏ ହାତ ହେବ । ମୁଁ ନଈକୂଳେ ପହଞ୍ଚି ବଢ଼ିକୁ ନିରୀକ୍ଷଣ କଲି । ମୋତେ ଯେକୌଣସି ପ୍ରକାରେ ଯିବାକୁ ହେବ । ନ ହେଲେ ଭାଇର ବର୍ଷେ ପାଠ ନଷ୍ଟ ହୋଇଯିବ । ଆଗରୁ ଧାରେଶ୍ୱର କୁଣ୍ଡରେ ପହଁରି କିଛି ପହଁରିବା ଅଭ୍ୟାସ ଥାଏ । ତେବେ ସୁଅ ନଈରେ କେବେ ପହଁରି ନ ଥିଲି । ଯାହାହେଉ ସାହସ କଲି । ଗାମୁଛା ପିନ୍ଧି ପିନ୍ଧାଲୁଗା ଓ ଛତାକୁ ମୁଣ୍ଡରେ ବାନ୍ଧିଲି ଏବଂ ନଈ ଭିତରେ ପଶିଲି । ପ୍ରଖର ସୁଅ ଭସାଇନେଲା । ଆସ୍ତେ ଆସ୍ତେ ସୁଅ କାଟି ଆର ପଟେ ପହଞ୍ଚିଲି । ଏହା ପରେ ବଡ଼ ସନ୍ତୋଷ ଓ ଗର୍ବ ଆସିଲା । ଭାବିଲି ମନର ବଳ ଥିଲେ କିଛି ଅସମ୍ଭବ ନାହିଁ । ଖରସ୍ରୋତା ଖରଖରି ନଈରେ ବଢ଼ି ସମୟରେ ମୋ ଭଳିଆ ଅନଭିଜ୍ଞ ଅଳ୍ପବୟସ୍କ ଯୁବକ ସକାଶେ ପାରହେବାକୁ ଚେଷ୍ଟା କରିବା ଧୃଷ୍ଟତା । କିନ୍ତୁ ଏହାଛଡ଼ା ଆଉ ଉପାୟ ନ ଥିଲା । ନଈ ପାରହୋଇ ଲୁଗା ପାଲଟିଲି ଏବଂ ଝିପଝିପ ବର୍ଷାରେ ଚାଲିଲି । ବାଟଯାକ ଖାଲି ବିଲମାଳ, ବାଟ ପଡ଼ିଥାଏ

ବାଲଢୁଙ୍ଗା ଦେଇ । ଚକଟା ମାଟି, ଖସଗ୍, ଗୋଟିଏ ଜାଗାରେ ଗୋଡ଼ଦେଲେ ଆଉ ଗୋଟିଏ ଜାଗାରେ ପଡ଼ୁଥାଏ । କିନ୍ତୁ ସମସ୍ତ ବାଧାବିଘ୍ନ ଅତିକ୍ରମ କରି ବାକୁ ହେବ । ତେଣୁ କିଛି ଭ୍ରୂକ୍ଷେପ ନ କରି ଚାଲିଲି । ଟିକିଏ କଷ୍ଟ ସହି ଯାଇ ସାନ ଭାଇକୁ ପୁରୁଷୋତ୍ତମପୁରରେ ପଢ଼ିବାର ବନ୍ଦୋବସ୍ତ କରିପାରିବ ତେବେ ମୁଁ ନିଶ୍ଚିନ୍ତରେ କଟକ ଯାଇ ବି. ଏ. ପଢ଼ିବି । ଏହା କରି ନ ପାରିଲେ ମୋର ପଢ଼ାରେ ଶାନ୍ତି ହେବନାହିଁ । ବହୁତ କଷ୍ଟରେ ଯାଇ ବୈଦ୍ୟନାଥ ବାବୁଙ୍କ ଘରେ ପହଞ୍ଚିଲି, ଖାଇଲି; କିନ୍ତୁ ବୈଦ୍ୟନାଥ ବାବୁଙ୍କଠାରୁ ନିରାଶ ବାଣୀ ଶୁଣି ଅବାକ୍ ହୋଇଗଲି । ସେ ମୋତେ ଏବଂ ମୋର ପରିବାରର ବହୁତ ସାହାଯ୍ୟ କରିଛନ୍ତି; କିନ୍ତୁ ସାଧାନାଥକୁ ଆଉ ରଖିବାର ଅନିଚ୍ଛା ମୂଳରେ ଘର ଭିତରର ପ୍ରତିବନ୍ଧକ ଥିଲାପରି ଅନୁମାନ ହେଉଥିଲା । ଆଉ ଉପାୟ ନାହିଁ । ଏତେ ପରିଶ୍ରମ ବୃଥା ହେଲା । ମୁଣ୍ଡ ବିଳବିଳେଇ ଗଲା । ମୃତବତ୍ ଫେରେ ପାଣି କାଦୁଅରେ ଆସି ନଈ ପାରିହୋଇ ଘରେ ପହଞ୍ଚି ଥକ୍‌କା ହୋଇ ବସିଲି । ବୁଢ଼ୀମାଆ ଶୁଣିଲା । କହିଲା ଶ୍ୱଶୁର ଘରେ ଗୁଡ଼ ଦେ । ନୂଆ ଶ୍ୱଶୁର ଘର । ଏପରି କଥାଟେ କିପରି କହିବ ?-ଲାଜ ମାଡ଼ିଲା, ମାନ ଉପରେ ବାଧା ଆସିଲା ପରି ମନେହେଲା । ଏ ପଟେ ମାନ, ସେ ପଟେ ଭାଇର ଭବିଷ୍ୟତ୍ । ତେଣୁ ମାଆଙ୍କୁ ମନ ମଧ୍ୟରେ ମାରି ଶ୍ୱଶୁର ଘରକୁ ଖବର ଦେଲି । ସେମାନେ ଅକୁଣ୍ଠିତ ଚିତ୍ତରେ ରାଜି ହେବାରୁ ଶ୍ୱଶୁର ଘରକୁ ଭାଇକୁ ପଠାଇଦେଲି । ସେ ସେଠାରେ ଇଂରେଜୀ ସ୍କୁଲରେ ପଢ଼ିଲା ଓ ମୁଁ କଟକ ଗଲି । ମନରେ ଶାନ୍ତି ଆସିଲା । ସେଠାରେ ସେ ପ୍ରାୟ ୩ ବର୍ଷ ପଢ଼ିଲା ପରେ ମୋର ଯେତେବେଳେ ଚାକିରି ହେଲା, ମୁଁ ସାଙ୍ଗରେ ଆଣିଲି । ଏଥି ସକାଶେ ମୁଁ ମୋର ଶଳାମାନଙ୍କ ପାଖେ କୃତଜ୍ଞ । ମୋ ସକାଶେ ଆଉ ଯଦି କିଛି କରି ନ ଥାନ୍ତେ ତେବେ ମଧ୍ୟ ଏହି ଉପକାର ଯୋଗୁଁ ମୁଁ ସେମାନଙ୍କ ପାଖେ ଚିର ଋଣୀ । ପିଲାଦିନୁ ବିବାହ ହୋଇଥିବାରୁ ଏତିକି ଉପକାର ହେଲା । ମୋର ଅକର୍ତ୍ତବ୍ୟ ଅବସ୍ଥାରେ ମୋର ଭାଇଟାର ଜୀବନଟା ଯେ ନଷ୍ଟ ହୋଇଯାଇଥାନ୍ତା, ସେଥିରୁ ରକ୍ଷା ପାଇଗଲା ।

□□□

## ବି. ଏ. ପଢ଼ା

ରେଭେନ୍‌ସା କଲେଜରେ ବି. ଏ. ଅନର୍ସରେ ନାମ ଲେଖାଇଲି । ମାୟାଧର ମାନସିଂହ ବିଶ୍ୱବିଦ୍ୟାଳୟରେ ତୃତୀୟ ସ୍ଥାନ ଅଧିକାର କରି ପଚଶ ଟଙ୍କା ମଧ୍ୟ ବୃତ୍ତି ପାଇଥିଲେ । ରତ୍ନାକର ଷଡ଼ଙ୍ଗୀ ମଧ୍ୟ ବୃତ୍ତି ପାଇ ବି. ଏସ୍‌-ସି. ଅନର୍ସରେ ପଢ଼ିଲେ । ମୁଁ ନେଲି ଅର୍ଥନୀତିରେ ଅନର୍ସ, ରତ୍ନାକର ଗଣିତରେ ଏବଂ ମାନସିଂହ ଇଂରେଜୀରେ । ମାୟାଧର ଓ ରତ୍ନାକରଙ୍କୁ ଅନର୍ସ ବାଛିବାରେ କିଛି କଷ୍ଟ ହେଲନାହିଁ । କାରଣ ସେ ହେଉଛି ତାଙ୍କର ପ୍ରିୟ ବିଷୟ । ମୋର କିନ୍ତୁ ପ୍ରିୟ ବିଷୟ ବୋଲି କିଛି କେବେ ନଥିଲା । ପିଲାଦିନୁ ବୃତ୍ତି ଉପରେ ନିର୍ଭର କରୁଥିବାରୁ ସବୁ ବିଷୟକୁ ସମାନ ଦୃଷ୍ଟି ଦେଉଥିଲି । ଗଣିତ ସବୁଠାରୁ ସହଜ ଲାଗୁଥିଲା । ଇଂରେଜୀ ଭାଷା ପ୍ରତି ବଡ଼ ଆଗ୍ରହ ଥିଲା । ସେତେବେଳେ ଅର୍ଥନୀତି ଏକ ନୂଆ ପାଠ, ବି. ଏ. ରେ ଆରମ୍ଭ ହୁଏ । ଗଣିତ ନେଲେ ପ୍ରଥମ ଶ୍ରେଣୀ ଥୁଆ । ଇଂରେଜୀ ନେଲେ ଏ ବିଷୟରେ ଆଗରୁ ମୂଳଦୁଆ ଅଛି । କିନ୍ତୁ ଅର୍ଥନୀତି ଭଳିଆ ନୂଆ ବିଷୟରେ କଣ ହେବ ଅନ୍ଧାର ଦିଶୁଥାଏ । ମାୟାଧର, ରତ୍ନାକର ଓ ମୁଁ ତିନିହିଁଙ୍କର ସ୍ନାତକୋତ୍ତର ବୃତ୍ତି ଉପରେ ଏମ୍‌. ଏ. ପଢ଼ା ନିର୍ଭର କରୁଥିଲା ଏବଂ ଗୋଟିଏ ବିଷୟରେ ଗୋଟିଏ ରୁ ବେଶୀ ବୃତ୍ତି ମିଳିବାର ବ୍ୟବସ୍ଥା ନଥିଲା । ସେମାନେ ସେମାନଙ୍କର ପ୍ରିୟ ବସ୍ତୁ ଇଂରେଜୀ ଓ ଗଣିତ ନେଇଯିବାରୁ ମୋତେ ବାଧ୍ୟ ହୋଇ ଅର୍ଥନୀତି ନେବାକୁ ପଡ଼ିଲା; କିନ୍ତୁ ମୋର ଅତି ପରିଚିତ ଗଣିତକୁ ଦ୍ୱିତୀୟ ବିଷୟ କରି ରଖିଲି । ତଦ୍ୱାରା ମୋର ବିଶେଷ ଉପକାର ହେଲା । ବି. ଏ.ରେ ଅର୍ଥନୀତି ଅନର୍ସରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କଲି ଏବଂ ଗଣିତ ଯୋଗୁ ବି. ଏ., ବି. ଏସ୍‌-ସି.ରେ ସବୁଠାରୁ ବେଶୀ ମାର୍କ ରଖି ସର୍ବୋତ୍କୃଷ୍ଟ ଡିଗ୍ରୀଧାରୀର ସ୍ୱର୍ଣ୍ଣପଦକ ପାଇଲି । ମାୟାଧର, ରତ୍ନାକର ଓ ମୁଁ ସ୍ନାତକୋତ୍ତର ବୃତ୍ତି ପାଇଲୁ ।

ବି. ଏ. ପଢ଼ିଲା ସମୟର କେତୋଟି ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ । ମୋର ବନ୍ଧୁ ଚନ୍ଦ୍ରେଶ୍ୱର ମିଶ୍ର ଯେ ଦର୍ଶନଶାସ୍ତ୍ର ଅନର୍ସରେ ନାମ ଲେଖାଇଥାନ୍ତି, ସେ ଏବଂ ଆଉ କେତେକ ବନ୍ଧୁ ମୋତେ ଉପଦେଶ ଦେଲେ ଆଇ. ଏ.ରେ ଯେତେବେଳେ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଛି ମୋର ପାଟନା କଲେଜରେ ପଢ଼ିବା କଥା । ମୁଁ ମଧ୍ୟ ଯିବା ସକାଶେ ଉତ୍କଣ୍ଠିତ ଥିଲି । ଯିବା ସକାଶେ

ଦରଖାସ୍ତ ଲେଖାଗଲା, ସିଟ୍ ମଧ୍ୟ ମିଳିଗଲା । ରେଭେନ୍‌ସା କଲେଜରେ ଅର୍ଥନୀତିରେ ସେତେବେଳେ ଭଲ ପ୍ରଫେସର କେହି ନ ଥିଲେ । ଘଟେଯା ସାହେବ ପାଟନା ଚାଲିଯାଇଥିଲେ । ତାଙ୍କ ସ୍ଥାନରେ ଗୋରଖନାଥ ସିନ୍‌ହା ନାମରେ ଯେଉଁ ପ୍ରଫେସର ଆସିଥିଲେ ସେ ଅବଶ୍ୟ ଅକ୍‌ସଫୋର୍ଡ଼ର ଉଚ୍ଚ ଉପାଧିଧାରୀ ଥିଲେ; କିନ୍ତୁ ନୂଆ ଲୋକ, ପଢ଼ାପଢ଼ିରେ ବିଶେଷ ଅନୁଭୂତି ବା ଆଗ୍ରହ ନଥିଲା । ଅର୍ଥାଭାବରୁ ପାଟନା ଯାଇପାରିଲି ନାହିଁ । ତେବେ ପାଟନା କଲେଜରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାରୀଙ୍କୁ ଛାତ୍ରାବାସରେ ତୃତୀୟ ବର୍ଷରେ ମଧ୍ୟ ଜଣିକିଆ କମରା ଦେଉଥିବାରୁ ମୋତେ ମଧ୍ୟ ଗୋଟିଏ ଜଣିକିଆ କମରା ମିଳିଲା । କିନ୍ତୁ ମୁଁ ନାମ ଲେଖାଇଲା ପରେ ବହୁତ ଧନ୍ଦା ହେଲି । ପ୍ରଫେସରଙ୍କଠାରୁ ବେଶୀ ଦିଗ୍‌ଦର୍ଶନ ନାହିଁ; ନିଜେ ଧନ୍ଦା ହୋଇ ଯାହା ପଢ଼ିବା କଥା ଅନ୍ଧାର ଘରେ ବାଡ଼ି ବୁଲେଇଲା ପରି । ଋଷିପ୍ରତିମ, ଶାନ୍ତପ୍ରକୃତି ଡକ୍ଟର ପ୍ରାଣକୃଷ୍ଣ ପରିଜା ଆମର ଓ୍ୱାର୍ଡ଼େନ ଥାନ୍ତି । ସେ ପ୍ରତିଦିନ ଥରେ ଛାତ୍ରାବାସ ବୁଲିଯାନ୍ତି । ତାଙ୍କ ଶୃଙ୍ଖଳାଚେତନା ଯୋଗୁଁ ପିଲାମାନେ ଥରହର । ଧୀର, ଶାନ୍ତ, ସହାନୁଭୂତିଶୀଳ; କିନ୍ତୁ କର୍ତ୍ତବ୍ୟପାଳନରେ ଏବଂ ଶୃଙ୍ଖଳାରକ୍ଷାରେ ଅଟଳ ମେରୁ । ଥରେ କିନ୍ତୁ ପିଲାମାନେ ତାଙ୍କ ଇଚ୍ଛା ପୂର୍ତ୍ତି କରିବାରେ ଅବାଧ ହୋଇଥିଲେ ଏବଂ ସେଥିରେ ମୁଁ ମଧ୍ୟ କିଛି ଭାଗ ନେଇଥିଲି । ବାଞ୍ଛା ଗୁଡ଼ିଆ ନାମରେ ଜଣେ ଗୁଡ଼ିଆ ଛାତ୍ରାବାସ ପଛରେ ମେସ୍ ପାଖରେ ରସଗୋଲା ଦୋକାନ କରିଥାଏ । ପିଲାମାନେ ତାଠାରୁ ଧାରରେ ରସଗୋଲା ଖାଇ ବହୁତ ଋଣୀ ହୋଇଯାନ୍ତି ଏବଂ ଟଙ୍କା ଆସିଲାକ୍ଷଣି ସେ ଧାରଣା ଦେଇ ଅସୁଲ କରିନିଏ; ଏଣେ କଲେଜ ଦରମା ଏବଂ ମେସ୍ ଖର୍ଚ୍ଚା ଦେବାକୁ ପଇସା ରହେନାହିଁ । ତେଣୁ ପିଲାମାନେ ଦିନେ ମନସ୍ଥ କଲେ ଯେ ବାଞ୍ଛାଗୁଡ଼ିଆଠାରୁ ଆଉ ଖାଇବେ ନାହିଁ । ସକାଳୁ ବାଞ୍ଛା ବହୁତ ଜିନିଷ ତିଆରି କରି ରଖିଛି, କେହି ହେଲେ ପିଲା ଗଲେ ନାହିଁ । ସେ ଓ୍ୱାର୍ଡ଼େନଙ୍କ ପାଖରେ କହିଥିବ । ଓ୍ୱାର୍ଡ଼େନ ଆସି ପିଲାମାନଙ୍କୁ ପଚାରିଲେ । ମୁଁ ଜଣେ **prefect** ବା ବଡ଼ ଛାତ୍ର ହିସାବରେ ମୋତେ ମଧ୍ୟ ପଚାରିଲେ । ମୁଁ କହିଲି, ମୁଁ କଣ କରିବି, ମୁଁ ନାଚାର, ପିଲାମାନେ ତ ଖାଉନାହାନ୍ତି । ସେଥିରେ ପରିଜା ସାହେବ ବିରକ୍ତ ହେଲେ; କିନ୍ତୁ କଣ କରିବେ ? ପିଲାମାନେ ଖାଇଲେ ନାହିଁ । ଆଉ କେତେ ଦିନ ପରେ ବାଞ୍ଛାଗୁଡ଼ିଆ ଛାତ୍ରାବାସ ଛାଡ଼ି ବାହାରେ ରହିଲା । ଏଥିରେ ମୋର କିଛି ଲାଭକ୍ଷତି ନଥିଲା; କାରଣ ମୋର ବାଞ୍ଛାଗୁଡ଼ିଆ ପାଖକୁ ଯିବାର ସମ୍ବଳ

ନଥିଲି । ମୁଁ ମେସରେ ସକାଳେ ସଞ୍ଜବେଳେ ପେଟପୂରା ଠୁଙ୍କି ଦିଏ; ଗୁଡ଼ିଆ ପାଖକୁ ଯିବାର ଅବକାଶ ନଥାଏ । ଅନ୍ୟ ବଡ଼ଲୋକ ପିଲମାନେ ବାଞ୍ଛାପାଖେ ଠୁଙ୍କି ମେସ୍‌ରେ କମ୍ ଖାନ୍ତି । ତେଣୁ ପୂଜାରୀ ସେମାନଙ୍କୁ ଭଲପାଏ ଏବଂ ମୋପରି ପିଲ ପୂରା ପେଟେ ଖାଇଲାବେଳେ ସେ ହତାଶ ଦୃଷ୍ଟି ପକାଏ ।

କଲେଜରେ ପଢ଼ିଲାବେଳେ ପ୍ରଫେସର ଆର୍ତ୍ତବନ୍ଧୁ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, ସାରଦା ଗାଙ୍ଗୁଲି, କୃପାସିନ୍ଧୁ ସାମନ୍ତରାୟ, ଗିରିଜାଶଙ୍କର ରାୟ ଓ ରତ୍ନାକର ପତିଙ୍କ ପ୍ରିୟ ଛାତ୍ର ଥିଲି । ଲକ୍ଷ୍ମୀକାନ୍ତ ବାବୁ ମାସକ ସକାଶେ ତାଙ୍କ କ୍ୱାଟରରେ ରହୁଥିବା ତାଙ୍କ ଭଗ୍ନିପତି ସ୍ୱନାମଧନ୍ୟ ଶିଳ୍ପପତି ଭାସ୍କର ମହାପାତ୍ରଙ୍କ ପିଲମାନଙ୍କ ପାଇଁ ଗୋଟିଏ ଟିଉସନ ଠିକ୍ କରିଦେଇଥିଲେ । ଏଥିରୁ ତିରିଶ ଟଙ୍କା ପାଇ ଭଲ ଯୋତା ହଳେ ଓ ସାର୍ଟଟେ କିଣିଲି । ଟଙ୍କାକୁ ଲୋଭ କଲେ ପଢ଼ାପଢ଼ିରେ ଖରାପ ହେବ ବୋଲି ଟିଉସନକୁ ଛାଡ଼ିଦେଲି । ଏ ମହାଶୟଙ୍କ ମୋ ପ୍ରତି ଅପାର କରୁଣା । ଯେମିତି ଡେପୁଟି କଲେକ୍ଟରର ଚାକିରି ଆରମ୍ଭ କରି କଟକରେ ରହୁଥାଏ ସେ ମୋତେ ତାଙ୍କ ଭଣିଜୀ ଯେ କି ଭବିଷ୍ୟତରେ ମୋର ପ୍ରିୟବନ୍ଧୁ କାଶୀନାଥ ମିଶ୍ରଙ୍କ ସହଧର୍ମିଣୀ ହେଲେ, ତାଙ୍କୁ ବି. ଏ.ର ଅର୍ଥନୀତି ପଢ଼ାଇବାକୁ ଅନୁରୋଧ କରିଥିଲେ । କିଛିଦିନ ପଢ଼ାଇଲି । କିନ୍ତୁ ନୂତନ ଚାକିରିରେ ସଞ୍ଜବେଳଟା ଏପରି ଆବଦ୍ଧ ଭାବରେ କଟାଇବାକୁ ଇଚ୍ଛା ନ ହେବାରୁ ମୁଁ ବେଶୀଦିନ ତାଙ୍କର ଅନୁରୋଧ ରକ୍ଷାକରି ପାରିଲି ନାହିଁ ।

ବି. ଏ. ପଢ଼ିଲାବେଳେ ହରିବାବୁ, ପିଲମାନେ ଯାହାଙ୍କୁ 'ହରି ଥଟା' ବୋଲି ଡାକନ୍ତି, ଜଣେ ଗଣିତ ଅଧ୍ୟାପକ ଥାନ୍ତି । ସେ ବଡ଼ ଭଦ୍ର ଏବଂ ଆନ୍ତରିକତାପୂର୍ଣ୍ଣ । ତାଙ୍କର ସରଳ ଓ ପୁରୁଣାକାଳିଆ ଢଙ୍ଗର ସୁଯୋଗ ପିଲମାନେ ନେବାକୁ ଚେଷ୍ଟା କରନ୍ତି । ସେ କହନ୍ତି ଯେ କଲିକତାରେ ପଢ଼ିଲାବେଳେ ଚୌରଙ୍ଗୀରେ ଥିଲେ; କିନ୍ତୁ ଚୌରଙ୍ଗୀ ବାହାରକୁ କେଉଁଆଡ଼େ ଯାଇନାହାନ୍ତି ଏବଂ ପରୁଣ ରମ୍ କାଗଜ ଖାଲି ଗଣିତ ଅଭ୍ୟାସ କରିବାରେ ବ୍ୟବହାର କରିଥିଲେ । ପିଲମାନେ ଏ କଥା ନେଇ ଥଟ୍ଟା କରନ୍ତି । ସେ ସାଇକେଲରେ କଲେଜକୁ ଆସନ୍ତି । ପିଲମାନେ ବାଟରେ କିଏ ଦଣ୍ଡବତ କଲେ ସେ ସାଇକେଲରୁ ଓହ୍ଲାଇ ପ୍ରତିଦଣ୍ଡବତ କରନ୍ତି । କାରଣ ସାଇକେଲରେ ତାଙ୍କ ଆସ୍ଥାନ ଟଳଟଳ ହେଉଥାଏ ଏବଂ ଗୋଟିଏ ହାତରେ ଯଦି ପ୍ରତିଦଣ୍ଡବତ କରିବେ, ତେବେ ପଡ଼ିଯିବେ । ସେ ତେଣୁ ସବୁ ପିଲମାନଙ୍କୁ କ୍ଲାସରେ କହିଥାନ୍ତି "If you want to do me, do me in

**the class, not on the road."** ଏହା କଥା ନେଇ ପିଲାମାନେ ବହୁତ ହସନ୍ତି । ତାଙ୍କୁ ପ୍ରମୋଶନ ନ ମିଳିବାରୁ ସେ ବଡ଼ ମନବ୍ୟସ୍ତରେ ଥାନ୍ତି । କିନ୍ତୁ ତାଙ୍କ ମନ ସବୁବେଳେ ପିଲାମାନଙ୍କର କିପରି ଉନ୍ନତି ହେବ ସେଥିରେ ଥାଏ । ସେ ଥଟ୍ଟାରେ, ଉପହାସରେ ବିଚଳିତ ହୁଅନ୍ତି ନାହିଁ । ଯେପରି ଜଣାପଡ଼େ କିଛି ଗୋଟାଏ ଦୁଃଖ ତାଙ୍କୁ ସବୁବେଳେ ଚାପିରଖିଛି ।

ଥରେ ଆମେ ବି.ଏ. ଛାତ୍ରମାନେ ପ୍ରଫେସର ଘନଶ୍ୟାମ ଦାସଙ୍କ ତତ୍ତ୍ୱାବଧାନରେ ଦିଲ୍ଲୀ ଭ୍ରମଣରେ ଯାଇଥିଲୁ । ସେତେବେଳେ ଘନଶ୍ୟାମ ବାବୁ ନୂଆହୋଇ ବିଲାତରୁ ଫେରି ଇତିହାସ ଅଧ୍ୟାପକଭାବେ ଯୋଗ ଦେଇଥାନ୍ତି । ଘରି କଥା । ଦିଲ୍ଲୀରୁ ଇନ୍ଦ୍ରପ୍ରସ୍ଥ ଯିବାକୁ ଆମମାନଙ୍କ ସକାଶେ ଦୁଇଟି ବସ୍ ବନ୍ଦୋବସ୍ତ ହୋଇଥାଏ । ଦୈବାତ୍ ଆମ ବସ୍‌ଟି ଆଗରେ ଚାଲିଗଲା; ତାଙ୍କ ବସ୍‌ଟି ପଛରେ ଆସିଲା । ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ସେ ଆମ ଉପରେ ବହୁତ ଚିଡ଼ିଲେ । ମୁଁ ତାହା ସମ୍ଭାଳିପାରିଲି ନାହିଁ । ମୁଁ କହିଲି ଆମେ ପିଲା ହୋଇନାହୁଁ, ଆଉ ଦୁଇବର୍ଷ ପରେ ଏମ. ଏ. ପାସକଲେ ଆପଣଙ୍କ ସଙ୍ଗେ ସମାନ ହେବୁ । ଆପଣଙ୍କର ଏବଂ ଆମମାନଙ୍କର ବ୍ୟବଧାନ କେବଳ ମାତ୍ର ଦୁଇ ବରଷ । ଆପଣ ଆମମାନଙ୍କୁ ଏପରି ହୀନଦୃଷ୍ଟିରେ କାହିଁକି ଦେଖୁଛନ୍ତି ? ଆମେ ଫେରିଗଲେ ପ୍ରିନ୍‌ସିପାଲଙ୍କ ପାଖେ ଅଭିଯୋଗ କରିବୁ । ଏଥିରେ ତାଙ୍କର ରାଗ ଥଣ୍ଡା ପଡ଼ିଗଲା । ସେ କ୍ଷଣରାଗୀ, ରାଗ ପରେ ବଡ଼ ନରମ । ସେଦିନ ରାତିରେ ସେ ତାଙ୍କ ଖର୍ଚ୍ଚାରେ ଆମକୁ ଖାଇବାକୁ ଦେଲେ । ତାଙ୍କର ଏ ମହାନୁଭବତା ଆମକୁ ମୁଗ୍‌ଧ କରିଦେଇଥିଲା ।

## ବି. ଏ. ପରେ

ବି. ଏ. ପରୀକ୍ଷା ଦେଇ ଗାଁକୁ ଚାଲିଗଲି ଖଲ୍ଲିକୋଟ ଅନ୍ତର୍ଗତ ସେହି ସୁଦୂର ମଫସଲ ସୁରମ୍ୟ କୃଷ୍ଣଗିରି ପର୍ବତର ଅଧସ୍ତଳରେ ଥିବା ତଳଗ୍ରାମପଲ୍ଲି ଗ୍ରାମକୁ । ପିତାଙ୍କ ମୃତ୍ୟୁପରେ ତାଙ୍କ ପ୍ରାଇମେରୀ ସ୍କୁଲର ମ୍ୟାନେଜର ହୋଇ ସବୁ ତିନିବର୍ଷ କାମ କରିଛି । କିନ୍ତୁ ଗାଁର କେତେକ ଲୋକ ମୋର ଏ ଲାଭର ପନ୍ଥା

ସହ୍ୟପାରୁ ନଥିଲେ । ଏଣେ କଲେଜରେ ପଢ଼ିବ, ତେଣେ ମ୍ୟାନେଜର ହୋଇ କିଛି ଟଙ୍କା ପାଇବ, ଏ କଥା ତାଙ୍କ ପ୍ରତି ଅସହ୍ୟ ହେଉଥିଲା । ସେମାନେ ସବୁବେଳେ ଏହି ଶିକ୍ଷକମାନଙ୍କୁ ମୋ ବିରୁଦ୍ଧରେ ମତାଉଥିଲେ ଏବଂ ସ୍କୁଲର କର୍ତ୍ତୃପକ୍ଷମାନଙ୍କ ପାଖକୁ ବିରଖାସ୍ତ ଦେବାକୁ ଲାଗିଲେ ମୁଁ ଯେପରି ମ୍ୟାନେଜର ରହିପାରିବି ନାହିଁ । ତେଣୁ ତିନିବର୍ଷ ମ୍ୟାନେଜର ରହିବାପରେ ମୋର ମ୍ୟାନେଜରସିପ୍ କଟିଗଲା ଏବଂ ଶେଷ ବର୍ଷ ଯେ ମୁଁ ବହୁତ ପରିଶ୍ରମ କରି ଭଲ ଫଳ ଦେଖାଇଥିଲି ସେଥିସକାଶେ ମୋତେ ଗୋଟିଏ ପଇସା ମଧ୍ୟ ମିଳିଲା ନାହିଁ । ସେବର୍ଷ ଡାନ୍ୟେଲ ନାମକ ଜଣେ ଡେପୁଟି ଇନ୍‌ସପେକ୍‌ଟର ଥାନ୍ତି । ସେ ସ୍କୁଲ ପରୀକ୍ଷା କରି ସମସ୍ତ କାଗଜପତ୍ର ନେଇ ୩ ମାଇଲ ଦୂରରେ ଥିବା କଞ୍ଚଣାସ୍କୁଲକୁ ଯିବାକୁ ଆଦେଶ ଦେଲେ । ମୁଁ କାଗଜପତ୍ର ନେଇ ଗୋଟିଏ ରାତି ଚଢ଼ା ହେବାଇ ସେଠି ରହି ତାଙ୍କ ଆଗରେ ପେଶ୍‌କଲି । କିନ୍ତୁ ତାଙ୍କୁ ଗ୍ରାମବାସୀମାନେ ବୋଧହୁଏ ବିଷାକ୍ତ କରିଦେଇଥାନ୍ତି । ସେ କାଗଜପତ୍ର ଦେଖିଲେ; କିନ୍ତୁ ଗ୍ରାଣ୍ଟ କାଟିଦେଲେ । ଏଥିରେ ମୋର ଅଶେଷ ଦୁଃଖ ହେଲା । କହିବି କାହାକୁ ? ଅପିଲ କରିବାକୁ ସମୟ ଓ ଅର୍ଥ ନାହିଁ । ନିଜ କିରମ ଆଦରି ରହିଲି ଏବଂ ଗ୍ରାମବାସୀମାନେ ମନେ ମନେ ଖୁସିହେଲେ । ଏଥିରେ ଅବଶ୍ୟ ସମସ୍ତ ଗ୍ରାମବାସୀମାନଙ୍କୁ ଦୋଷ ଦେଇପାରିବି ନାହିଁ । ତେବେ ଏଥିରେ ଯେ ପୂର୍ବତନ ମ୍ୟାନେଜର କାର୍ଯୀ ଏବଂ ତାଙ୍କ ବରାଦରମାନେ ଥିଲେ, ଏଥିରେ ସନ୍ଦେହ ନାହିଁ । ସେମାନଙ୍କର ଈର୍ଷା ମୁଁ ଗାଁରେ ମୋର ପିତାଙ୍କ ପରି ଶିକ୍ଷକ ନ ରହି କାହିଁକି ପଢ଼ୁଛି । ଆଗରୁ କହିଛି ଏହି କାର୍ଯୀଙ୍କର ପୁଅ ଓ ପୁତୁରା କେତେ ଦିନ ମୋ ସଙ୍ଗେ ବାଣପୁରରେ ପଢ଼ି ସ୍ୱଭାବସୁଲଭ ଚପଳତା ଯୋଗୁଁ ଛାଡ଼ିଦେଇଥିଲେ । ତେଣୁ ମୋର ବେଶୀ ପଢ଼ିବା ସେମାନଙ୍କ ପ୍ରତି ଅସହ୍ୟ ହୋଇଉଠୁଥିଲା ।

ପିତାଙ୍କର ତିନିଜଣ ବନ୍ଧୁ ଯେ କି ମୋ ଉପରେ ଭାରି ଝସି ଥିଲେ ସେ ହେଉଛନ୍ତି ବୟୋଜ୍ୟେଷ୍ଠ ଖାଡ଼ଙ୍ଗା, ବିଶ୍ର ପାତ୍ର ଓ ଭୋବନ ଲେଙ୍କା । ଏହି ଖାଡ଼ଙ୍ଗା ହେଉଛନ୍ତି ଷାଠିଏ ଉପରର ଲୋକ, ଛଅଫୁଟ ଉଚ୍ଚ, ଖୁବ୍ ମୋଟା, ଗୋରା ଦେହ, ବଡ଼ ଉଦାର, ହାତୀପରି ଚାଲନ୍ତି । ସେ ସବୁଦିନେ ସକାଳ ଓ ଉପରବେଳା ଆସି ସ୍କୁଲପାଖ ବାରଣ୍ଡାରେ ବସନ୍ତି । ବିଶ୍ର ପାତ୍ର, ଭୋବନ ଲେଙ୍କା ମଧ୍ୟ ପିତାଙ୍କ ସମବୟସ୍କ । ସେମାନେ ମଧ୍ୟ ଆସନ୍ତି । ଭୋବନ ଲେଙ୍କାଙ୍କ ସ୍ୱର ଭଲ । ସେ ଭଲ ଛାନ୍ଦ ବୋଲିପାରନ୍ତି । ପିତାଙ୍କ ସମୟରେ ଯେ ଛାନ୍ଦ

ବୋଲୁଥିଲେ ଏବଂ ଗୀତା ତାହାର ଅର୍ଥ କରୁଥିଲେ । ଏହି ସବୁ ଅଧିବେଶନରେ ସେମାନେ ଦେଶବିଦେଶର ଓ କଟକର କଥା ବହୁତ ପଚାରନ୍ତି; ମୁଁ କହେ । ମୁଁ କଟକରୁ ପାସ କରି ପାଟନା ଗଲାପରେ ସେମାନେ ପାଟନା କଥା ମଧ୍ୟ ପଚାରନ୍ତି । ମୋ ଭଳିଆ ଗୋଟିଏ ପିତୃମାତୃହୀନ ଗରିବ ମଫସଲିଆ ପିଲା, କିଛି ସମ୍ବଳ ନ ନେଇ ପାଟନାରେ ଯାଇ ପଢ଼ୁଛି, ଏହା ସେମାନଙ୍କୁ ଆଶ୍ଚର୍ଯ୍ୟ ଲାଗେ । କାର୍ଜୀ କେତେ କେତେ ବେଳେ ସେଠାକୁ ଆସନ୍ତି । କିନ୍ତୁ ତାଙ୍କ ମନରେ ଆନନ୍ଦ ନ ଥାଏ । ପରେ ତାଙ୍କ ସାନଭାଇ ମୋ ହାତରେ ଖଣ୍ଡେ ଚିଠି ତାଙ୍କ ଓକିଲଙ୍କ ପାଖକୁ ଲେଖିଥିଲେ । ସେଥିରେ ତାଙ୍କ ସମ୍ବନ୍ଧରେ କେତେ କଥା ଥିଲା । ଉଭୟେ ତ ମାଲିମକଦମା କରୁଥାନ୍ତି ତେଣୁ ଚିଠିରେ ସମ୍ବନ୍ଧ କଥା ଥିବା ସ୍ୱାଭାବିକ । ମୁଁ ଲେଖାଳି, ମୋତେ ଯାହା କହିଲେ ଲେଖିଲି । କାର୍ଜୀ ସେ ଲେଖା ଓକିଲପାଖରେ ଦେଖି ମୋ ନାମରେ ମାନହାନି ମକଦ୍ଦମା କରିବାକୁ ଧମକେଇଲେ । ମୁଁ ତ ପିଲାଲୋକ, କେଶ୍ କଥା କିଛି ବୁଝେନାହିଁ । କେଶ୍‌ରେ ମୋ ପାଖକୁ ନୋଟିସ ଯିବ ବୋଲି କହିଲେ । ମୁଁ ମନଦୁଃଖରେ ଥକ୍‌କା ପଡ଼ି ରହିଲି । ପ୍ରତିଦିନ ଭାବୁଥାଏ କାଳେ ନୋଟିସ ଆସି ପହଞ୍ଚିବ, କଣ କରିବି ? ଏଣେ ପାଠ ପଢ଼ିବାକୁ ଯିବି ନା କେଶ୍ ଲଢ଼ିବି । କେଶ୍‌ରେ ଦଣ୍ଡ ହୋଇଗଲେ ମୋର ଭବିଷ୍ୟତ ଜୀବନରେ ଆଞ୍ଚ ଆସିଯିବ ଏବଂ ଉପଯୁକ୍ତ ଚାକିରି ନମିଳିପାରେ—ଏପରି ଦୁର୍ଶ୍ଚିନ୍ତାରେ ଅନେକ ଦିନ କଟେଇଲି ।

ଗାଁରେ ସକାଳେ ସଞ୍ଜବେଳେ ଯେଉଁ ବୈଠକ ହୁଏ ସେତେବେଳେ ମୋତେ ପଚାରନ୍ତି ମୁଁ ପଢ଼ୁଛି କଣ କରିବି ? ମୋର ଆଇ. ସି. ଏସ୍. କୁ ବୟସ ନ ଥାଏ । ବି. ଏ. ପରେ ଆଇ. ପି. ପରୀକ୍ଷା ଦେବାକୁ ଗୋଟିଏ ମୌକା ଥାଏ । ଭାବୁଥାଏ ହୁଏତ ଏ ପରୀକ୍ଷାଟା ଦେବି । ତେଣୁ ସେମାନଙ୍କୁ କହେ, ଆଇ. ପି. ହେଲେ ମାସକୁ ୩୫୦ ଟଙ୍କାରେ ଆରମ୍ଭ କରିବି, ଡେପୁଟି କଲେକ୍ଟର ହେଲେ ୨୫୦ ଟଙ୍କାରେ ଆରମ୍ଭ କରିବି, ନ ହେଲେ ଏମ୍. ଏ. ପାସ୍ କରି ଲେକ୍‌ଚରର ହେଲେ ୧୮୦ ଟଙ୍କା ପାଇବି । ସବ୍‌ଡେପୁଟି ଚାକିରି ଗ୍ରହଣ କରିବି ବୋଲି ମୋର ଇଚ୍ଛା ନଥାଏ । ଏ କଥା ଶୁଣି ସେମାନେ ଅବାକ୍ ହୋଇଯାଆନ୍ତି । କାର୍ଜୀ କହନ୍ତି ଘରର ତ ବୁନିଆଦ ନାହିଁ, ପୋଲିସ ସାହେବ ଓ ଡେପୁଟି କଲେକ୍ଟର ଚାକିରି ମିଳିବା ସମ୍ଭବ ନୁହେଁ । କାର୍ଜୀଙ୍କର ପୁଅ ହୋଇଥିଲେ ବୋଧହୁଏ ହୋଇଥାନ୍ତା । ଯାହାହେଉ ଲୋକମାନେ ବିଶ୍ୱାସ କରନ୍ତି କିଛି ଗୋଟାଏ ବଡ଼ ଚାକିରି ପାଇବି ।

ଗାଁରେ କେହି ସାଥୀ ନଥାନ୍ତି । ପିଲାଦିନେ ଯେଉଁମାନେ ସାଙ୍ଗରେ ପଢ଼ୁଥିଲେ ସେମାନେ ଗୃହବାସରେ ବ୍ୟସ୍ତ ? କାହା ସଙ୍ଗେ ସାଥିହେବ ? ତେଣୁ ମୋର ଏକମାତ୍ର ସାଥୀ ଥାନ୍ତି ଗାଁର ବୟସ୍କ ପିତୃତୁଲ୍ୟ ଲୋକମାନେ ଯେଉଁମାନଙ୍କର ମୋ ପ୍ରତି ସହାନୁଭୂତି ଥାଏ । କେବଳ ଲୋକେ କହନ୍ତି, ବାବୁ ତୁମେ ଗୃକଂ କଲେଜର ସାଇକେଲରେ ଚାଲିଯାଉଥିବ, ଆମକୁ ଚିହ୍ନିବ ତ ? ଏ ସରଳ ପ୍ରଶ୍ନ ଆଜି ସୁଦ୍ଧା ମନେ ପଡ଼ୁଛି ।

## ପରମାର୍ଥ ଧର୍ମ

କାର୍ଯୀ ହେଉଛନ୍ତି ପରମାର୍ଥୀ । ତାଙ୍କ ସାଙ୍ଗରେ ଆଉ ଜଣେ ପରମାର୍ଥୀ କେବଳ ଲୋକେ । କାର୍ଯୀ ପରମାର୍ଥୀ ହେଲେ ମଧ୍ୟ ପରମାର୍ଥୀଙ୍କ ଦୟା କରୁଣା ତାଙ୍କ ପାଖରେ କିଛି ନଥାଏ । କେବଳ ଲୋକେ ଅମାୟିକ ଲୋକ; କାର୍ଯୀଙ୍କ ପାଖେ ବସି ବିଦଗ୍ଧଚିନ୍ତାମଣି ପଢ଼ନ୍ତି । ମୋତେ ଅନେକ ସମୟରେ ଡାକନ୍ତି ଏହି ସବୁ ଛାନ୍ଦର ଅର୍ଥ କହିବାକୁ । ପିତାଙ୍କ ପରେ ଛାନ୍ଦର ଅର୍ଥ କହିବାକୁ ଆଉ କେହି ନଥାନ୍ତି । ମୋତେ ମଧ୍ୟ ପରମାର୍ଥ ଧର୍ମରେ ଦୀକ୍ଷିତ କରିବାକୁ ଚେଷ୍ଟା କରନ୍ତି । ସେମାନଙ୍କ କହିବା ମତେ ପରମାର୍ଥ ଧର୍ମର ପ୍ରଥମ କର୍ତ୍ତବ୍ୟ ହେଉଛି ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ; କିନ୍ତୁ ଏହି ବ୍ରହ୍ମଚର୍ଯ୍ୟ ସଂସାର ଛାଡ଼ି ଅରଣ୍ୟରେ ନୁହେଁ । ଏ ହେଉଛି ସଂସାର ମଧ୍ୟରେ, ଗୃହ ମଧ୍ୟରେ ଏବଂ ସ୍ତ୍ରୀଜନମାନଙ୍କ ସମାରୋହରେ । ଏହି ଧର୍ମର ତାତ୍ପର୍ଯ୍ୟ ହେଉଛି ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ଏକମାତ୍ର ପୁରୁଷ । ଆଉ ସମସ୍ତେ ହେଉଛନ୍ତି ରାଧା ଅର୍ଥାତ୍ ରାଧାଭାବାପନ୍ନ । ତେଣୁ ତୁମେ ପୁରୁଷ ବୋଲି ଏକଦମ୍ ଭୁଲିଯିବାକୁ ହେବ । ତୁମେ ହେଉଛ ରାଧା, ସଂସାରରେ ସମସ୍ତେ ହେଉଛନ୍ତି ରାଧା ବା ତୁମର ସଖୀ, ତୁମର ଭଉଣୀ ପରି । ରାଧା ଯେପରି ସ୍ୱାର୍ଥତ୍ୟାଗ କରି କୃଷ୍ଣଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ ତୁମକୁ ମଧ୍ୟ ସେପରି ନିଜକୁ ଭୁଲିଯାଇ କୃଷ୍ଣଙ୍କ ନିକଟରେ ନିଜର ସମସ୍ତ ସମର୍ପଣ କରିବାକୁ ହେବ । ଏଥିରେ ଦୟା, କରୁଣା ଓ ଆନନ୍ଦ ଅଛି । ଏଥିରେ ହିଂସା, ରାଗ, କ୍ରୋଧ, ସ୍ୱାର୍ଥ ବା ଦ୍ୱେଷର ସ୍ଥାନ ନାହିଁ । ଏଥିରେ ସ୍ତ୍ରୀପ୍ରତି ଆସକ୍ତ ହେବାର ଅବକାଶ ନାହିଁ । କାରଣ ତୁମେ ଓ ସମସ୍ତେ ତ ସ୍ତ୍ରୀ, କୃଷ୍ଣ ଏକମାତ୍ର ପୁରୁଷ । ସଂସାର ସୌନ୍ଦର୍ଯ୍ୟରେ

ନାରୀର ସୌନ୍ଦର୍ଯ୍ୟରେ ଆନନ୍ଦ ଅନୁଭବ କରିବେ; କିନ୍ତୁ ଆସକ୍ତି ଅନୁଭବ କରିବ ନାହିଁ । ଧୂଳିଟିଏ ଦେଖିଲେ ଆନନ୍ଦ ଉପଭୋଗ କରିବ; କିନ୍ତୁ ତାକୁ ନିଜସ୍ୱ କରିବାକୁ ଚେଷ୍ଟା କରିବ ନାହିଁ । ପରର ଧନକୁ ଲୋଷ୍ଟ୍ର ପରି ମନେ କରିବ । ଆତ୍ମବଳ ଦେଇ ପରକୁ ସୁଖୀ କରିବାକୁ ଚେଷ୍ଟା କରିବ । ପରର ସୁଖରେ ନିଜର ସୁଖ, ନିଜର ଅଲଗା ସୁଖ କିଛି ନାହିଁ । ମନୁଷ୍ୟର ନାରୀ ପ୍ରତି ଯେ ଆସକ୍ତି ସେ ଏକ ପ୍ରବଳ ଶକ୍ତି । ଋଷି ମହର୍ଷିମାନେ ଯୋଗ ସାଧନା କରି ମଧ୍ୟ ଶେଷରେ ଏ ଶକ୍ତିର ବଶବର୍ତ୍ତୀ ହୁଅନ୍ତି । ପରମାର୍ଥୀମାନେ ଏହି ଶକ୍ତିକି ଆସକ୍ତିରୂପେ ବ୍ୟବହାର ନ କରି ବା ଏହାଠାରୁ ଦୂରରେ ନ ରହି ନିଃସ୍ୱାର୍ଥପର କୃଷ୍ଣଭକ୍ତିରୂପେ ବ୍ୟବହାର କରିବାକୁ ଚାହାନ୍ତି । ପରମାର୍ଥୀମାନେ ପରକୀୟା ମତରେ ଅନ୍ୟ ଗୋଟିଏ ଅବିବାହିତା ଯୁବତୀଙ୍କୁ କୃଷ୍ଣରୂପରେ ଧ୍ୟାନ କରନ୍ତି । ସେହି ଯୁବତୀ ଅତି ସୁନ୍ଦରୀ ଓ ସବୁ ଶୁଭଲକ୍ଷଣଯୁକ୍ତା ହୋଇଥିବ । ପିଲାଦିନୁ ତାଠାରେ କୃଷ୍ଣସ୍ୱରୂପ ଆରୋପ କରି ଉପାସନା କରିବେ । ପ୍ରେମ, ଅଭିମାନ, ଆଶା, ଆକାଙ୍କ୍ଷା, ଉତ୍କଣ୍ଠା ସମସ୍ତ ପ୍ରକାଶ ପାଇବ । ଆସକ୍ତି ନ ଥାଇ ସେହି କୃଷ୍ଣରୂପୀର ଆନନ୍ଦ ପ୍ରକାଶେ କାର୍ଯ୍ୟ କରୁଥିବ । ତାର ଚାଲିବା ପଥର ଧୂଳି ପ୍ରେମରେ ଦେହରେ ବୋଳୁଥିବ । ସେହି କନ୍ୟାର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାକୁ ଗୋବିନ୍ଦ, ଗୋପୀନାଥ ଓ ମଦନମୋହନ ଆଖ୍ୟା ଦିଆଯିବ ।

ଏହି ସାଧନା ସମାଜରେ ରହି କରିବା କଷ୍ଟ । ଲୋକେ ନଷ୍ଟସ୍ୱ ଭୁଲ ବୁଝିବେ । ଶେଷରେ ରକ୍ତ ମାଂସ ଶରୀର, ସ୍ଖଳନ ହୋଇପାରେ । ସେମାନେ କହନ୍ତି, ଅନଳ ଭିତରେ ଘର କରିଥିବ ନ ଥିବ ଅନଳ ଝାଇ । ଏହି ଭକ୍ତି ମାର୍ଗ ସାଧାରଣ ଲୋକଙ୍କ ପ୍ରକାଶେ କଠୋର । ପରମାର୍ଥୀମାନେ ସମୁଦାୟ ଭାରତ-ବର୍ଷରେ ଗୋଟିଏ ସଂପ୍ରଦାୟ ବୋଲି ମନେ କରନ୍ତି । ସେମାନଙ୍କର ଜାତିଭେଦ ବା ବର୍ଣ୍ଣଭେଦ ନାହିଁ । ତଥାକଥିତ ଅଛୁଆ ଜାତି ମଧ୍ୟରେ ଅନେକ ସିଦ୍ଧ ପରମାର୍ଥୀ ଅଛନ୍ତି । ସମସ୍ତେ ସଂସାରର କର୍ମଧନ୍ଦା କରନ୍ତି କିନ୍ତୁ ଜୀବନ ପ୍ରଣାଳୀରେ ପରମାର୍ଥ ଧର୍ମ ଆଚରଣ କରନ୍ତି । କିଏ କେଉଁଠି ମେହେନ୍ତରର କାମ କରୁଛି ତ କିଏ ଜାତିରେ ବାଉରି । କିନ୍ତୁ ସେମାନେ ସମସ୍ତେ ସମାନ ଓ ନିଜ ନିଜ ଭାଇ ପରି । ନାରୀ ପରମାର୍ଥୀମାନେ ମଧ୍ୟ ଅଛନ୍ତି । କଥାରେ ଅଛି ଜଣେ ସିଦ୍ଧ ପୁରୁଷ ପରମାର୍ଥୀ ନାରୀ ପରମାର୍ଥୀଙ୍କୁ ଦେଖି ନାକ ଟେକିଲେ ଏବଂ କହିଲେ ନାରୀମାନେ ପରମାର୍ଥୀ ହୋଇପାରିବେ ନାହିଁ । ଏହା ଶୁଣି ନାରୀ ପରମାର୍ଥୀ କହିଲେ, ଆପଣ ପରମାର୍ଥ ଧର୍ମର ତାତ୍ପର୍ଯ୍ୟ ଜାଣନ୍ତି ନାହିଁ ।

ସଂସାରରେ ଭଗବାନ ଶ୍ରୀକୃଷ୍ଣ ହେଉଛନ୍ତି ଏକମାତ୍ର ପୁରୁଷ । ସମସ୍ତ ପରମାର୍ଥୀ ସ୍ତ୍ରୀ, ରାଧାଭାବାପନ୍ନ ଓ ଶ୍ରୀକୃଷ୍ଣଙ୍କ ଉପାସକ । ଆପଣ ଯେ ନିଜକୁ ପୁରୁଷ ବୋଲି ଭାବୁଛନ୍ତି ସେ ଅତି ଆଶ୍ଚର୍ଯ୍ୟ କଥା ।

ସିଦ୍ଧ ପରମାର୍ଥୀମାନଙ୍କର ପ୍ରସନ୍ନ ବଦନ, ହସହସ ମୁହଁ, ବ୍ରହ୍ମଚର୍ଯ୍ୟ-ଦୀପ୍ତ ଉଜ୍ଜ୍ୱଳ କପାଳ ଓ ନିର୍ମଳ ଆଚରଣ ଦେଖିଲେ ମନ ପ୍ରକୃତରେ ପ୍ରଫୁଲ୍ଲ ହୋଇଯାଏ । କାର୍ଯ୍ୟୀ ଓ ସେବକ ଲୋକ ଏହି ସଂପ୍ରଦାୟର ଲୋକ ଯଦିଓ ସେମାନେ ସିଦ୍ଧି ଲାଭ କରିପାରି ନାହାନ୍ତି । ଗଞ୍ଜାମ ଓ ପୁରୀ ଜିଲ୍ଲାରେ କେଉଁଠି କେଉଁଠି ସିଦ୍ଧ ପରମାର୍ଥୀମାନେ ଅଛନ୍ତି ସେମାନଙ୍କ ନାମ ସେମାନେ କହନ୍ତି । କାର୍ଯ୍ୟୀ ଯେଉଁ କୃଷ୍ଣରୂପୀଙ୍କଠାରେ ଉପାସନା କରନ୍ତି ସେ କଥା ନେଇ ଗାଁରେ ବହୁତ ଭୁଟୁଭୁଟୁ କଥା ହୁଏ । ମୋତେ ସେ ପଚାରିଲେ ତୁମର କିଛି ଉପାସନା ଅଛି କି ? ସେତେ-ବେଳେ କିଶୋର ବୟସ, ଯୌବନର ଆରମ୍ଭ । କୃଷ୍ଣଭାବ ଆରୋପ କରି ମୋର ମାନସୀ କୁମାରୀକୁ ଉପାସନା କରିବା ମୋ ମନକୁ ଖୁବ୍ ଲାଗୁଥାଏ । କୈଶୋରରେ ମୋର ଏପରି ଯେ କିଛି ମାଦକତା ନ ଥିଲା ତାହା ନୁହେ । ତାହା ସମସ୍ତ କିଶୋର-ଙ୍କର ଜୀବନରେ ଘଟେ; ମୋର ମଧ୍ୟ ଥିଲା । ମୁଁ କହିଲି ମୋର ମଧ୍ୟ ଅଛି, ତୁମର ଜଣେ ଅତି ନିକଟ ସମ୍ପର୍କୀୟଠାରେ । ଏହା ଶୁଣି ସେ ତୁନି ରହିଲେ । ମୋର ଉପାସନା ଖାଲି ଦୂରରୁ ଦେଖା, ଆକାଙ୍‌କ୍ଷା ଓ ଦୀର୍ଘ ନିଃଶ୍ୱାସ ଛଡ଼ା ଆଉ କିଛି ନ ଥିଲା । ତେବେ ଏପରି ଏକ ମାଦକତା ମନରେ ଆନନ୍ଦ ଦେଉଥିଲା । ତାର ବିବାହ ଉତ୍ସବରେ ଅତି ଆନନ୍ଦର ସହ ମୁଁ ଯୋଗ ଦେଇଥିଲି ଏବଂ ସେ ଶାଶୁ-ଘରକୁ ଗଲାବେଳେ ଦୈବାତ୍ ରେଲରେ ଦେଖା ହୋଇଥିଲା । ଭାବିଥିଲି ଭବିଷ୍ୟତ ଜୀବନରେ ଭାଇ ଭଉଣୀ ପରି ନିର୍ମଳ ସମ୍ପର୍କ ରହିବ ଏବଂ କିଶୋର ଜୀବନର ସ୍ୱପ୍ନନେଇ ଜୀବନ ସରସ ହୋଇଉଠିବ । କିନ୍ତୁ ନିଜସ୍ୱ କରିବା ମୋର ଅଭିପ୍ରାୟ ନ ଥିଲା । ସେ ତାର ନିଜ ସଂସାରରେ ସୁଖରେ ରହୁ ଏହା ମୋର କାମନା ଥିଲା । ଖାଲି ଇଚ୍ଛା ଥିଲା ନିକଟ ସଂପର୍କୀୟ ଭାବରେ ମଝି ମଝିରେ କେବେ କେବେ ଦେଖା ହେଉ ଏବଂ ପଦେ ଅଧେ କଥା ହେଉ । ଏହା ବାହାରେ ତାର ଯଦି କିଛି ଉପକାର କରିପାରିବି ତେବେ ଆନନ୍ଦ ମିଳିବ ବୋଲି ଆଶା ଥିଲା । କିନ୍ତୁ ବିବାହପରେ ତୁମେ ଆଉ ନିଜସ୍ୱ ହୋଇ ରୁହନାହିଁ । ସ୍ତ୍ରୀ ମନେ କରେ ସ୍ୱାମୀ ତାର ନିଜର ସମ୍ପତ୍ତି ଏବଂ ପୁରୁଷ ମଧ୍ୟ ସେଇୟା । ପୁରୁଷର ନିଜର ଔରସ ଭଉଣୀ ଛଡ଼ା ଆଉ କାହାକୁ ଭଉଣୀପରି ସ୍ନେହ କରିବା ସ୍ତ୍ରୀ ଚକ୍ଷୁରେ ଅସହ୍ୟ । ଏଥିରେ ଖାଲି ସ୍ତ୍ରୀକୁ ଦୋଷ ଦେଲେ ଚଳିବ ନାହିଁ । ପୁରୁଷମାନେ

ମଧ୍ୟ ଯେତେ ନିର୍ମଳ ହେଲେ ମଧ୍ୟ ସ୍ତ୍ରୀର ଅନ୍ୟ ପୁରୁଷ ସଙ୍ଗେ କୌଣସି ସମ୍ପର୍କ ରଖିବାକୁ ଆଦୌ ପସନ୍ଦ କରନ୍ତି ନାହିଁ । ତେଣୁ ଭବିଷ୍ୟତ ଜୀବନରେ ଏ ଆଶା କେବଳ ଆଶାରେ ହିଁ ରହିଗଲା । ଏଥିସକାଶେ ମୋର ସ୍ତ୍ରୀକୁ ମୁଁ ଆଦୌ ଦୋଷ ଦେଉନାହିଁ । ସେ ସଂସାରର ପ୍ରଥା ହିଁ ଅନୁସରଣ କରୁଥିଲା । ମୋର ମଧ୍ୟ ବୋଧହୁଏ କିଛି ଦୋଷ ରହି ଯାଇଥିଲା କାରଣ ମୋର ନିର୍ମଳ ସ୍ନେହର ଅନ୍ତରାଳରେ ବୋଧହୁଏ ଉତ୍କଣ୍ଠା କିଛିଏ ଅତିମାତ୍ରାରେ ରହି ଯାଇଥିଲା ଯାହାକି ବୈବାହିକ ଜୀବନରେ ଆଦୌ ସମୀଚୀନ ନୁହେଁ । ତେବେ ସେ ସ୍ୱାମୀ ଓ କୁଟୁମ୍ବ ନେଇ ସୁଖରେ ଅଛି ଏବଂ ତାର ସ୍ୱାମୀ ତାକୁ ଖୁବ୍ ଆଦର କରନ୍ତି ତାହା ଦେଖି ମୁଁ ସୁଖୀ । ସେ ସୁଖମୟ ଜୀବନରେ ମୋର କରାଳ ଛାୟା ପକାଇ ତାକୁ ବିଷମୟ କରିବାକୁ ମୁଁ ଉଚିତ ମନେ କଲିନାହିଁ ଏବଂ କଠୋର ବାସ୍ତବତାର ପରିବେଶରେ କିଶୋର ଜୀବନର ଏହି ସ୍ୱପ୍ନକୁ କ୍ରମେ କ୍ରମେ ଭୁଲିଯିବାକୁ ସ୍ଥିର କଲି । ମୁଁ ମଧ୍ୟ ପରେ ମୋର ସୁଖମୟ ଦାମ୍ପତ୍ୟ ଜୀବନ ଗଢ଼ିନେଲି ଏବଂ ଭାଇ ଭଉଣୀ ସନ୍ତାନମାନଙ୍କର ଆବେଷ୍ଟନୀରେ ସଂଯତ ଜୀବନ ଯାପନ କରିବାକୁ ଚେଷ୍ଟା କଲି । ତେବେ ଏହିପରି ଭଉଣୀମାନଙ୍କ ପ୍ରତି ମୋ ମନର ଯେଉଁ ଦରଦ ତାକୁ ମୁଁ ସବୁବେଳେ ଲୁଚାଇ ପାରୁ ନଥିଲି ଏବଂ ସେଥିଯୋଗୁଁ ମୋର ସ୍ତ୍ରୀ ସଙ୍ଗେ ମଝି ମଝିରେ କିଛି କିଛି ମନାନ୍ତର ହେଉଥିଲା । କିନ୍ତୁ ମୁଁ ଏତିକିମାତ୍ର କହିପାରେ ଯେ ଏ ସବୁ ଦରଦ ସତ୍ତ୍ୱେ ମୋର ସ୍ତ୍ରୀ ପ୍ରତି ମୋର ସ୍ନେହ ଓ କର୍ତ୍ତବ୍ୟ-ଜ୍ଞାନ ତିଳେମାତ୍ର କମ୍ ନ ଥିଲା । କିନ୍ତୁ ତା ମନରେ ମୁଁ ତାର ସର୍ବସ୍ୱ ହୋଇ-ପାରି ନ ଥିଲି । ସେଥିସକାଶେ ତାର ଅନ୍ତରରେ କିଛି ଅବଶୋଷ ରହିଯାଇଛି ବୋଲି ମୋର ମନେହୁଏ । ଏପରି ଅବଶୋଷ ବୋଧହୁଏ ଅଧିକାଂଶ ସ୍ତ୍ରୀ ମାନଙ୍କ ମନରେ ରହିଥିବ ବୋଲି ମୋର ଆଶଙ୍କା । □□□

## ଏମ୍. ଏ. ପଢ଼ା

ପରମାର୍ଥ ଧର୍ମର ଚର୍ଚ୍ଚା କରୁ କରୁ ଜୀବନରେ ବହୁତ ଆଗେଇ ଗଲି । ବର୍ତ୍ତମାନ ଫେରିଯିବି ମୋର ସେହି ବି. ଏ. ପାସ୍ କରିବା ସମୟକୁ । ବି. ଏ. ପରୀକ୍ଷା ଦେଇ ଗାଁରେ ରହିଲି । ସକାଳେ ସଞ୍ଜବେଳେ ଅନତିଦୂରରେ କୃଷ୍ଣଗିରି ପର୍ବତ

ତଳେ ସୁରମ୍ୟ ପରିବେଶରେ ଅବସ୍ଥିତ ଝାରେଶ୍ୱର ଠାକୁର, ରାମଚଣ୍ଡୀ ଠାକୁରାଣୀ ଦର୍ଶନ ଏବଂ ଝାରେଶ୍ୱରର ନିର୍ମଳ ଜଳକୁଣ୍ଡରେ ସ୍ନାନ—ଏ ହେଉଥିଲା ମୋର ଦୈନନ୍ଦିନ କାର୍ଯ୍ୟ । ତା ପରେ ଦିନସାରା ପଢ଼ାରେ ଯାଉଥିଲା । ଏହା କରି ପରୀକ୍ଷା ଫଳ ପ୍ରକାଶ ଉତ୍କଣ୍ଠା ସହ ଅପେକ୍ଷା କରିଥାଏ । ଯଥା ସମୟରେ ଖବର ପାଇଲି ଯେ ମୁଁ ବିଶ୍ୱବିଦ୍ୟାଳୟରେ ଅର୍ଥନୀତି ଅନର୍ସରେ ପ୍ରଥମ ସ୍ଥାନ ଅଧିକାର କରିଛି । ବୃତ୍ତି ମିଳିବା ନିଶ୍ଚୟ । କିଛି ଟଙ୍କା ସଂଗ୍ରହ କରି ଆଗ କଟକ ଗଲି ଏବଂ ସେଠାରୁ ସାର୍ଟିଫିକେଟ ପ୍ରଭୃତି ସଂଗ୍ରହ କରି ପାଟନା ଗଲି । ତୃତୀୟ ଶ୍ରେଣୀ ଉବାରେ ଏତେ ବାଟ ଯିବା କଷ୍ଟକର ଥିଲା । ପାଟନାରେ ରାଣୀଘାଟରେ ଥିବା ପୋଷ୍ଟଗ୍ରାଜୁଏଟ ଛାତ୍ରାବାସରେ ପହଞ୍ଚିଲି । ଏହା ଗୋଟିଏ ସୁରମ୍ୟ ଜାଗା; ଗଙ୍ଗା ନଦୀ କୂଳରେ ଅବସ୍ଥିତ । ଯେ ଆଇ. ଏ. ରେ ଓ ବି. ଏ. ରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଛି ତାକୁ ଦେଖି ପାଟନା ପିଲାମାନେ ଅବାକ୍ ହୋଇଗଲେ । ଗୋଟିଏ ଅଳୁଆ ପିଲା, ପରିଧାନ ଧୋତି ଏବଂ ଖଣ୍ଡେ ଅଳ୍ପ ଦାମର ସାର୍ଟ, ଚଟି ହଳେ; ବାକି କନିଷପତ୍ର ଓ ବହିପତ୍ର କିଛି ନାହିଁ । ମୋର ବନ୍ଧୁ ମାୟାଧର ମାନସିଂହ ମଧ୍ୟ ସେହି ହଷ୍ଟେଲରେ ରହିଲେ । ଅନ୍ୟ ବନ୍ଧୁ ରତ୍ନାକର ଷଡ଼ଙ୍ଗୀ ବାହାରେ ଗୋଟିଏ ଛାତ୍ରାବାସରେ ରହୁଥିଲେ । ମୋ ଆଗରୁ ପ୍ରାଣନାଥ ମହାନ୍ତି ଓ ବିମ୍ବାଧର ପଟ୍ଟନାୟକ ସେଠାରେ ପଢ଼ୁଥାନ୍ତି । ସେମାନେ ମୋଠାରୁ ବର୍ଷେ ଆଗୁଆ । ସେମାନଙ୍କଠାରୁ ବହୁତ ସାହାଯ୍ୟ ସହାନୁଭୂତି ପାଇଲି । ସେଠି ରୀତି ପଢ଼ାପଢ଼ି ଆରମ୍ଭ କଲି । ପ୍ରଫେସର ଘୋଷ, ପ୍ରଫେସର ଶରଣ ଓ ପ୍ରଫେସର ଜ୍ଞାନଚନ୍ଦ୍ର ତାଙ୍କ ବିଭାଗରେ ଧୁରନ୍ଧର । ସେମାନଙ୍କଠାରୁ ଶିକ୍ଷା ପାଇ ମନରେ ବଡ଼ ତୃପ୍ତି ଲାଗିଲା । ପିଲାମାନଙ୍କର ମୋ ପ୍ରତି ଯେ ସମ୍ମାନ ତାହା ଦେଖି ମନ ଖୁସି ଥାଏ । ବିହାରୀ ପିଲାମାନଙ୍କର ପଢ଼ାପଢ଼ିରେ ବଡ଼ ଆଗ୍ରହ । ବି. ଏ.ରେ ଅନର୍ସ ପାଇଲାକ୍ଷଣି ଅଧିକାଂଶ ଆଇ. ସି. ଏସ୍. ପରୀକ୍ଷାରେ ବସନ୍ତି । ଏପରି ଦେଉ ଦେଉ ଦ୍ୱିତୀୟ ଶ୍ରେଣୀର କେତେକ ଛାତ୍ର ଆଇ. ସି. ଏସ. ହୋଇ-ଯାଆନ୍ତି ଏବଂ ପ୍ରଥମ ଶ୍ରେଣୀ ଛାତ୍ରମାନେ ମଧ୍ୟ ବାଦ୍ ପଡ଼ିଯାନ୍ତି । ଓଡ଼ିଶାର କେତୁ ବଡ଼ ବଡ଼ ପ୍ରଥମ ଶ୍ରେଣୀର ଛାତ୍ର ଏ ପରୀକ୍ଷା ଦିଅନ୍ତି । ଶ୍ରୀମାନ୍ ପ୍ରାଣନାଥ ମହାନ୍ତି ଇତିହାସରେ ଏମ୍. ଏ. ପଢ଼ୁଥିଲେ । ସେ ବି. ଏ. ଅନର୍ସରେ ପ୍ରଥମ ଶ୍ରେଣୀ ପାଇଥିଲେ । ତାଙ୍କର ଜୀବନ ପ୍ରଣାଳୀ ଏତେ ସଂଯତ, ପଢ଼ାପଢ଼ି ଏତେ ସୁଶୃଙ୍ଖଳିତ ଏବଂ ବ୍ୟବହାର ଏତେ ଭଦ୍ର ଯେ ମୋର ତାଙ୍କ ପ୍ରତି ବହୁତ ସମ୍ମାନଥିଲା । ତାଙ୍କର ସମ୍ପର୍କୀୟ ଭାଇ ବିମ୍ବାଧର ପଟ୍ଟନାୟକ ଅର୍ଥନୀତିରେ

ଏମ୍. ଏ. ପଢ଼ୁଥାନ୍ତି । ଦେଖିବାକୁ ଗ୍ରେଟ ଓ ସ୍ଥୂଳ, ସ୍ୱଭାବ ବଡ଼ ମଉଜ ଓ ମେଳାପି । ପଢ଼ାପଢ଼ି ବେଶୀ କରନ୍ତି ନାହିଁ; କିନ୍ତୁ ଭାରି ବୁଦ୍ଧିମାନ୍ । ମଉଜ ସ୍ୱଭାବରେ ସେ କାରଣ ସାଆନ୍ତଙ୍କର ପ୍ରତୀକ ।

ପର ବର୍ଷରେ ଆସିଲେ ସଦାଶିବ ମିଶ୍ର, ଶ୍ୟାମସୁନ୍ଦର ମିଶ୍ର, ଈଶ୍ୱରଚନ୍ଦ୍ର ମିଶ୍ର, ଧନବନ୍ଧୁ ସାହୁ ଓ ଭଗବତୀ ପାଣିଗ୍ରାହୀ । ସଦାଶିବ ଭାରି ବୁଦ୍ଧିମାନ ଓ ଧନବନ୍ଧୁ ଥିଲେ ବଡ଼ ଉତ୍ସାହୀ, ଯୋଗାଡ଼ି ଏବଂ ମେଳାପି । ପାଟଣାରେ ଦୁଧ ଓ ମାଛ ବଡ଼ ଶସ୍ତା । ସେ ଗୋଟିଏ ଷ୍ଟୋଭ୍ ରଖି ମାଛ ଭଜା, କୋବି ଭଜା, ଦୁଧରୁ ରାବିଡ଼ି କରି ତାଙ୍କର ବନ୍ଧୁମାନଙ୍କୁ ଆପ୍ୟାୟିତ କରୁଥିଲେ । ଆମେମାନେ ଏତେ ଓଡ଼ିଆ ପିଲା ଥିବାରୁ ପାଟନା କିଛି ବିଦେଶ ଜାଗା ପରି ଜଣା ପଡ଼ୁ ନ ଥିଲା । ମୁଁ ଖୁବ୍ ଭଲ ପହଁରି ପାରୁଥିଲି । ସ୍ନାତକୋତ୍ତର ଛାତ୍ରାବାସ ଗଙ୍ଗା ନଦୀ ଉପରେ ଥିବାରୁ ମୁଁ ସବୁଦିନେ ଏଥିରେ ପହଁରୁଥିଲି । ବଂଶୀଧର ବାବୁ ମଧ୍ୟ ମୋ ସଙ୍ଗେ ପହଁରୁଥିଲେ । ଥରେ ଛାତ୍ରାବାସରେ ଗୋଟିଏ ସନ୍ତରଣ ପ୍ରତିଯୋଗିତାରେ ବଂଶୀଧର ବାବୁ ଓ ମୁଁ ସନ୍ତରଣ କରି ଗଙ୍ଗା ନଦୀ ପାର ହୋଇ ଫେରେ ସନ୍ତରଣ କରି ଫେରିଆସିଲୁ । ଆମ ସାଙ୍ଗରେ ଅବଶ୍ୟ ଗୋଟିଏ ଡଙ୍ଗା ଯାଉଥାଏ ଏବଂ ଯେଉଁ ପହଁରାଳିମାନେ ଥକିଯାଉଥିଲେ ସେମାନଙ୍କୁ ଡଙ୍ଗା ଉପରକୁ ଉଠାଇ ଦିଆଯାଉଥାଏ । ପହଁରା ଶେଷ ସମୟକୁ ମୋର ତଳ ଗୋଡ଼ର ମାଂସପେଶୀ ଅଚଳ ହୋଇଗଲା; କିନ୍ତୁ ସେତେବେଳକୁ କାମ ସରିଆସିଥିଲା । ଚାକିରି ପରେ ଭଞ୍ଜନଗରରେ ଥିଲାବେଳେ ସେଠା ଘାଇରେ ପହଁରିଥିଲି; କିନ୍ତୁ ସେତେ ଭଲ ହେଲା ନାହିଁ । ସେହି ଅଭ୍ୟାସ ଯୋଗୁଁ ମୁଁ ପରେ ଭୁବନେଶ୍ୱର ଓ ମୋର ମଫସଲ ବାସସ୍ଥାନ କେଶପୁର ଛକ ପାଖରେ ଦୁଇଟି ପୋଖରୀ ଖୋଳିଛି, ଯେଉଁଥିରେ ସେଠାରେ ଥିଲାବେଳେ ପ୍ରତିଦିନ ପହଁରେ ।

ଏମ୍. ଏ. ରେ ପଢ଼ିଲାବେଳେ ଚିନ୍ତା ଲାଗିଲା ଚାକିରି । ସେତେବେଳକୁ ମୋର ବୟସ ୨୨ ବର୍ଷ ଉପରେ । ଅପର ପ୍ରାଇମେରୀ ପରେ ଏମ୍. ଇ. ପଢ଼ି-ଥିବାରୁ ମୋର ଦୁଇବର୍ଷ ନଷ୍ଟ ହୋଇଯାଇଥାଏ । ଆଇ. ସି. ଏସ୍. ସକାଶେ ବୟସ ନ ଥାଏ । ଆଇ. ପି. ସକାଶେ ଗୋଟିଏ ମୌକା ଥିଲା । ମୁଁ କିନ୍ତୁ ବି. ଏ. ପରୀକ୍ଷା ଦେଇ ଗାଁରେ ଥିଲାବେଳେ ସେ ପରୀକ୍ଷା ସକାଶେ ଦରଖାସ୍ତ ଗ୍ରହଣ କରାଯାଇଥିଲା । ମୁଁ ଜାଣି ପାରି ନ ଥିଲି । ଭିନ୍ନ ଭିନ୍ନ ବିଷୟରେ ବିଶ୍ୱ-ବିଦ୍ୟାଳୟର ପ୍ରଥମ ଶ୍ରେଣୀରେ ପାସ କରିଥିବା ଏମ୍. ଏ. ଓ ଏମ୍. ଏସ-ସି. ଛାତ୍ରମାନଙ୍କୁ ସରକାର ଷ୍ଟେଟ ବୃତ୍ତି ଦେଇ ବିଲାତ ପଠାଉଥିଲେ । ମୋର ଏମ୍.ଏ.

ପାସ୍ କରିବା ସମୟକୁ ଜଣଙ୍କୁ ଅର୍ଥନୀତିରେ ବିଲାତ ପଠାଇବା କଥା ଥାଏ । ମୁଁ ସେଥିକୁ ଆଶା କରିଥାଏ । କିନ୍ତୁ ଯେତେବେଳକୁ ପୃଥିବୀରେ ତଥା ଭାରତରେ ଆର୍ଥନୀତିକ ଅବସାଦ ଏତେ ବେଶୀ ହୋଇ ଉଠିଲା ଯେ ସବୁ ଜିନିଷରେ ଦରଦାମ ହୁ-ହୁ ଖସିବାକୁ ଲାଗିଲା ଏବଂ ସରକାରଙ୍କ ଆୟ ମଧ୍ୟ କମିଗଲା । ତେଣୁ କୃତୀ ଛାତ୍ରମାନଙ୍କୁ ବିଲାତ ପଠାଇବା କାର୍ଯ୍ୟକ୍ରମ ସରକାର ବନ୍ଦ କରିଦେଲେ । ମୋର ଯେ ଗୋଟିଏ ସ୍ୱପ୍ନ ଥିଲା ଏମ୍. ଏ. ପାସ କରି ବିଲାତ ଯିବି ଏବଂ ସେଠାରେ ଅର୍ଥନୀତିର ଗାଣିତିକ ଆଭିମୁଖ୍ୟ ବିଶେଷ ଭାବରେ ଅଧ୍ୟୟନ କରି ଆସି ପ୍ରଫେସର ହେବି, ତାହା ମଉଳିଗଲା । ତେଣୁ ଏକମାତ୍ର ଚାକିରି ରହିଲା ଡେପୁଟି କଲେକ୍ଟର । ସେତେବେଳେ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରମାନଙ୍କୁ ଡେପୁଟି କଲେକ୍ଟର ଭାବେ ନିଆଯାଉଥିଲା । ମୋର କିଛି ବର୍ଷ ଆଗରୁ ଶ୍ରୀମାନ୍ ଶରତ ମୁଖାର୍ଜୀ ବି. ଏ.ରେ ଅର୍ଥନୀତି ଅନର୍ସରେ ପ୍ରଥମଶ୍ରେଣୀ ପାଇ ଡେପୁଟି କଲେକ୍ଟର ହୋଇଥିଲେ । ମୋର ମଧ୍ୟ ସେପରି ହେବା କଥା । ଚାକିରିରେ ସୁବିଧା ସକାଶେ ମୁଁ ମଧ୍ୟ ଗଣିତ ବା ଇଂରେଜୀ ଅନର୍ସ ନ ନେଇ ଅର୍ଥନୀତି ଅନର୍ସ ନେଇଥିଲି । ମୋର ଏମ୍. ଏ.ର ପ୍ରଥମ ବର୍ଷରେ ଏହି ଚାକିରି ସକାଶେ ପ୍ରାର୍ଥୀ ହୋଇଥିଲି । କିନ୍ତୁ ସେ ବର୍ଷ କଲେଜରେ ମୋର ଦୁଇବର୍ଷର ଉପରିସ୍ଥ ଶ୍ରୀମାନ ଜଗଦ୍‌ବନ୍ଧୁ ମହାପାତ୍ର ଯେ କି ଅର୍ଥନୀତିରେ ପ୍ରଥମ ଶ୍ରେଣୀରେ ଏମ୍. ଏ. ପାସ କରିଥିଲେ ସେ ଡେପୁଟି କଲେକ୍ଟର ହେଲେ । ତାଙ୍କର ପ୍ରତିଭା ମୁଁ ଆଇ. ଏ. ପଢ଼ିଲାବେଳେ ରେଭେନ୍‌ସା କଲେଜରେ ଦେଖିଛି । ସଂସ୍କୃତରେ ତାଙ୍କର ଅଗାଧ ପାଣ୍ଡିତ୍ୟ । ଶ୍ଳୋକ ଓ କାବ୍ୟ ଅନର୍ଗଳ ବୋଲି ପାରନ୍ତି । ସ୍ମରଣ ଶକ୍ତି ଏତେ ପ୍ରବଳ ଯେ ଯାହା ଥରେ ପଢ଼ନ୍ତି ମନେ ରଖନ୍ତି । ଏତେ ପ୍ରତିଭା ଥିଲେ ମନରେ ଟିକିଏ ବଡ଼ିମା ଥିବା କଥା । ସେଥିରୁ ଅବଶ୍ୟ ମାତ୍ରାଏ ଥାଏ; ତେବେ ବନ୍ଧୁ ହିସାବରେ ବଡ଼ ମେଳାପି । କଲେଜରେ ଅବଶ୍ୟ ତାଙ୍କ ସଙ୍ଗେ ମୁଁ ବେଶୀ ସଂସର୍ଗରେ ଆସି ନ ଥିଲି । କିନ୍ତୁ ପରେ ଚାକିରି ଜୀବନରେ ତାଙ୍କ ସଙ୍ଗେ ଘନିଷ୍ଠ ସଂସର୍ଗରେ ଆସିଛି ଏବଂ ତାଙ୍କ ଗୁଣରେ ମୁଗ୍ଧ ହୋଇଛି । ପରେ ତାଙ୍କର ଅବସରପ୍ରାପ୍ତ ଅକାଳ ବିୟୋଗ ମୋ ଜୀବନ ଉପରେ ଗୋଟିଏ କରୁଣ ଛାୟା ପକାଇ ଦେଇଥିଲା ।

ମୁଁ ପୁଣି ଏମ୍. ଏ. ଦ୍ୱିତୀୟ ବର୍ଷରେ ଯେତେବେଳେ ପ୍ରାର୍ଥୀ ହେଲି ସେ ବର୍ଷ ଜଣେ ବିହାରରୁ ଓ ଜଣେ ଓଡ଼ିଶାରୁ ଡେପୁଟି କଲେକ୍ଟର ନିଆଯିବାର ସିଦ୍ଧାନ୍ତ ହୋଇଥିଲି । ଶ୍ରୀମାନ ପ୍ରାଣନାଥ ମହାନ୍ତି ଭାରତବର୍ଷସ୍ତରରେ ଦୁଇ ଥର ଆଇ. ସି. ଏସ୍. ପରୀକ୍ଷାଦେଇ ଅକୃତକାର୍ଯ୍ୟ ହୋଇ ଡେପୁଟି କଲେକ୍ଟର

ସକାଶେ ପ୍ରାର୍ଥୀ ଥିଲେ । ସେ ଆଇ. ସି. ଏସ. ବିଭିନ୍ନ ପରୀକ୍ଷାରେ ଷଷ୍ଠ ସ୍ଥାନ ଅଧିକାର କରିଥିଲେ । ସେ ବର୍ଷ ମୋଟେ ପାଞ୍ଚ ଜଣ ନିଆଗଲେ । ସେ ଅପୂର୍ବ ମେଧାବୀ ଛାତ୍ର ଥିଲେ । ତାଙ୍କଠାରୁ ନ୍ୟୂନ ଛାତ୍ର ଚନ୍ଦ୍ରଶେଖର ଝା ସେବର୍ଷ ଆଇ. ସି. ଏସ. କୁ ଚାଲିଗଲେ । ଆଉ ଜଣେ କୃତୀ ଛାତ୍ର କୃପାସିନ୍ଧୁ ମିଶ୍ର ସେ କ ଲଣ୍ଡନରେ ଆଇ. ସି. ଏସ. ପରୀକ୍ଷା ଦେଇ ଫେରିଥିଲେ ଏବଂ ଫଳ ବାହାରିବାପାଇଁ ଅପେକ୍ଷା କରିଥିଲେ ସେ ମଧ୍ୟ ଡେପୁଟି ଚାକିରି ସକାଶେ ପ୍ରାର୍ଥୀ ଥିଲେ । ଏହା ଦେଖି ମୋର ଆଶା ଶୁଖିଯାଉଥାଏ । ଭାବିଲି ଏମ୍. ଏ. ପାସ କରି ଲେକ୍ଚରର ହେବି; କିନ୍ତୁ ଭାଗ୍ୟତଃ କୃପାସିନ୍ଧୁ ଆଇ. ସି. ଏସ୍. ରେ କୃତକାର୍ଯ୍ୟ ହୋଇଥିଲେ ଏବଂ ଏହା ଦେଖି ପ୍ରାଣନାଥ ବାବୁ ଉତ୍ସାହିତ ହୋଇ ବିଲାତରେ ଆଇ. ସି. ଏସ. ପରୀକ୍ଷା ଦେବାକୁ ଚାଲିଗଲେ । ଛାତ୍ରହିସାବରେ କୃପାସିନ୍ଧୁବାବୁ ପ୍ରାଣନାଥବାବୁଙ୍କଠାରୁ ନ୍ୟୂନ । ସେ ଯେତେବେଳେ ହୋଇଗଲେ ପ୍ରାଣନାଥ ବାବୁଙ୍କର ଉତ୍ସାହ ନିଶ୍ଚୟ ବଢ଼ିବା କଥା । ସେମାନେ ଯେତେବେଳେ ଓହରିଗଲେ ମୁଁ ଡେପୁଟି କଲେକ୍ଟର ପଦ ସକାଶେ ଅପ୍ରତିଦ୍ୱନ୍ଦ୍ୱୀ ହୋଇଗଲି । ଶ୍ରୀଯୁକ୍ତ ହରିହର ମହାପାତ୍ର ଯେ ପରେ ପାଟନାର ହାଇକୋର୍ଟ ଜଜ୍ ହେଲେ ସେ ମଧ୍ୟ ଡେପୁଟି କଲେକ୍ଟର ସକାଶେ ପ୍ରାର୍ଥୀ ହୋଇ ଅକୃତକାର୍ଯ୍ୟ ହେଲେ । ଏଇଟା କିନ୍ତୁ ତାଙ୍କ ସକାଶେ ଭଗବାନଙ୍କ ଆଶୀର୍ବାଦ ପରି କାମ କଲା । ଜୀବନରେ ସେ ବହୁତ ଉଚ୍ଚପଦ ସକାଶେ ସେ ଅଭିପ୍ରେତ, ତାଙ୍କ ଭାଗ୍ୟରେ ଡେପୁଟି କଲେକ୍ଟର ହୋଇ ହାକିମ କ୍ୟାରେକ୍ଟର ଭିଲିଆ ଧରଡ଼ ଗାତରେ ଗଡ଼ି କରିବା ଦୁର୍ଯୋଗ ନ ଥିଲା । ☐☐☐

## ଚାକିରି ପାଇଲି

ଡେପୁଟି କଲେକ୍ଟର ଚାକିରି ହୁକୁମ ପାଇଲି ୧୯୩୨ ମସିହା ଜାନୁଆରୀରେ । ତେଣୁ ଆଉ ଏମ୍. ଏ. ପରୀକ୍ଷା ଦେଇପାରିଲି ନାହିଁ । ବୋଧହୁଏ ଲେକ୍ଚରର ପରସେଣ୍ଟେଜ ହୋଇଯାଇଥିଲା । ଚାହିଁଥିଲେ ପରୀକ୍ଷା ଦେଇ-ପାରିଥାନ୍ତି; କିନ୍ତୁ ଚାକିରିପରେ ପଢ଼ି ପରୀକ୍ଷାଦେବାକୁ ଆଉ ପ୍ରବୃତ୍ତି ନ ଥାଏ; ବରଂ ସେ ପରିଶ୍ରମ କରି ଡିପାର୍ଟମେଣ୍ଟାଲ ପରୀକ୍ଷା ଦେଲେ ଲାଭ ଅଛି । ସବୁ-ବେଳେ ବୃତ୍ତି ପାଇବା ଉଦ୍ଦେଶ୍ୟରେ ପଢ଼ି ପଢ଼ି ଥକିଯାଇଥାଏ । ଡେପୁଟି

କଲେକ୍ଟର ଭବେ ନୂତନ ଜୀବନ ଉପଭୋଗ କରିବାକୁ ଭାରି ଇଚ୍ଛା ହେଉଥାଏ । ସେତେବେଳେ ଓଡ଼ିଶାରେ ମାତ୍ର ପ୍ରାୟ ୩୦ ଜଣ ଡେପୁଟି କଲେକ୍ଟର ଥାନ୍ତି ଏବଂ ତାଙ୍କର ମର୍ଯ୍ୟାଦା ଖୁବ୍ ଉଚ୍ଚରେ ଥାଏ । ଆଇ. ସି. ଏସ୍. ରେ ବର୍ଷକୁ ମୋଟେ ୪୫ ଜଣ ସମ୍ପ୍ରଦାୟ ଭାରତବର୍ଷରୁ ଗ୍ରହଣ କରାଯାଏ । ବାଳା ସବ୍‌ଭାରତୀୟ ଚାକିରି ମଧ୍ୟ କମ୍ । ତେଣୁ ସବୁ ପ୍ରଦେଶରେ କୃତୀ ଛାତ୍ରମାନେ ଡେପୁଟି କଲେକ୍ଟର, ସବ୍‌ଡେପୁଟି କଲେକ୍ଟର ନହେଲେ ଲେକଚରର୍ ହୁଅନ୍ତି । ଡେପୁଟି କଲେକ୍ଟରର ଚାକିରିର ମର୍ଯ୍ୟାଦା ଏତେ ଉଚ୍ଚ ଥିଲା ଯେ ଶ୍ରୀଯୁକ୍ତ ମନ୍ମଥନାଥ ଗୁହ ଯେ କି କିଛି ବର୍ଷ ଆଗରୁ ଭାରତୀୟ ପୋଲିସ ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲେ, ସେ ଚାକିରିକୁ ନ ଯାଇ ଡେପୁଟି କଲେକ୍ଟର ହେଲେ । ଚାକିରି ହୁକୁମ ପାଇଲାକ୍ଷଣି ପ୍ରଥମେ ଗଲି ମୋର ସେହି ପ୍ରିୟ ବାସସ୍ଥାନ ଚଳଗ୍ରାମପଲ୍ଲିକୁ । ସେଠାରୁ ମୋର ବୁଢ଼ୀମା'ଙ୍କୁ ସଙ୍ଗରେ ଆଣିଲି । ବଗୁଲି ପୁଅ ବୋଲି ହୁରି ଏକାକା ପଡ଼ିଥାଏ । ମୋର ବଡ଼ ଚାକିରି କଥା ଶୁଣି ସେ ଆନନ୍ଦରେ ଅଭିଭୂତ ହୋଇଯାଇଥିଲା । ପିତାଙ୍କ ମୃତ୍ୟୁ ପରେ କିଛି ଗୋଟାଏ ଚାକିରି ନ କରି ଅଭାବ ଅସୁବିଧା ସତ୍ତ୍ୱେ ଖାଲି ପଢ଼ୁଥିବାରୁ ସେ ବଡ଼ ହତାଶ ହୋଇଯାଇଥିଲା । ମୋର ବଡ଼ ଶଳା ଯେ କି ରେଭେନ୍ୟୁ ଇନ୍‌ସପେକ୍ଟର ଥିଲେ ତାଙ୍କର କେତେ କ୍ଷମତା, ସେପରି ଚାକିରିଖଣ୍ଡେ ହେଲେ କଣ ହୁଅନ୍ତାନି ! ଆଗେ ପାଳ ପଡ଼ିଲେ ଘରେ ଭାଇ ପଡ଼ିବ, ଆଗ ଗୋଟେ ଚାକିରି ଖଣ୍ଡେ ହେଲେ ପରେ ବଢ଼ି ବଢ଼ି ଯିବ; ତା ନ କରି ଖାଲି ତାଳ ଗଛରେ ଚଢ଼ିବାକୁ ଧାଉଁଛି ବୋଲି ସେ ସମସ୍ତଙ୍କ ଆଗରେ କହୁଥାଏ । ବର୍ତ୍ତମାନ କିନ୍ତୁ ସେ ତୁନି ହୋଇଗଲା । ଗାଁର ଲୋକମାନେ ଅବାକ୍ ହୋଇଗଲେ । ଖାଣ୍ଡୁଆ, ବାସ୍ତ ପାତ୍ର, ଭୋବନ ଲେଙ୍କା ଯେଉଁମାନେ ମୋତେ ଭଲ ପାଉଥିଲେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । କାର୍ଯ୍ୟୀ ଶୁଣି ତୁନି ହୋଇ ରହିଲେ । ଆମର ପଡ଼ିଶାଘର ବୁଢ଼ୀଆବୋଉ ଯେ ମୋତେ ଭାରି ଭଲ ପାଉଥିଲେ, ସେ ଦେଖିଥିଲେ ମୁଁ ଗାଁରେ ଥିଲାବେଳେ ସମୟ ସମୟରେ କୃଷ୍ଣଗିରି ପର୍ବତରୁ ଜାଳେଣି କାଠ ଆଣିଛି, ସମୟ ସମୟରେ ନଡ଼ା ଓ ଘାସ କାଟିଛି—ସେ ଥଟ୍ଟାରେ କହିଲେ ଉଦିଆ କଲେକ୍ଟର ହୋଇ ବସିଥିବାବେଳେ ଲୋକମାନେ ଆସି କହିବେ, ଆଜ୍ଞା କାଠହାଣି, ଘାସକାଟି ମଲୁଣି, କଣ କରିବୁ ? ସେତେବେଳେ ଉଦିଆ କହିବ, ମୁଁ କାଠ ହାଣିଛି ମୁଁ ବି ଘାସ କାଟିଛି । ତାର ଏ ସ୍ନେହବୋଳା କଥା ଆଜି ପର୍ଯ୍ୟନ୍ତ ମନେ ପଡ଼ୁଛି । ମୁଁ କେନ୍ଦୁଝରରେ ଜିଲ୍ଲା କଲେକ୍ଟର ଥିଲାବେଳେ ସେ ତାର ପୁତୁରାକୁ ନେଇ ଚାକିରି ପକାଶେ ଆସିଥିଲା ।

ମୁଁ ତାର ପୂତୁରକୁ ଅବକାଶ ବିଭାଗରେ ଭର୍ତ୍ତି କରିଦେଇଥିଲି ।

ମୋର ବଡ଼ ଭଉଣୀ ଯେ କି ବାଣପୁରର ପାଟପୁରରେ ବିବାହ ହୋଇଥିଲା ଏବଂ ତାର ସ୍ୱାମୀ କଲିକତା ଯାଇ ଆଉ ନ ଫେରିବାରୁ ବିଧବା ହେଲା, ମୋ ସାନଭାଇ ରାଧାନାଥ ଯେ କି ଖଲ୍ଲିକୋଟରେ ମୋର ଶ୍ୱଶୁରଘରେ ଥାଇ ପଢ଼ୁଥିଲା ଓ ମୋର ସବା ସାନଭାଇ ଦେବେନ୍ଦ୍ର ଯେ କି ପିତାମାତା ମଲାବେଳକୁ ପ୍ରାୟ ବର୍ଷେ ହୋଇଥିଲା ଏବଂ ଯାହାକୁ ଖଲ୍ଲିକୋଟ ମଥୁରି ଗ୍ରାମରେ ମୋର ମାମୁ ତାଙ୍କ ପୁଅଝିଅ ନ ଥିବାରୁ ପୁଅ କରିବା ଅଭିପ୍ରାୟରେ ନେଇ ପାଳୁଥିଲେ—ଏ ସମସ୍ତଙ୍କୁ ଓ ବୁଢ଼ୀମାକୁ ନେଇ ଗାଁର ସମସ୍ତଙ୍କଠାରୁ ବିଦାୟ ନେଇ ମୋର ପ୍ରଥମ ନିଯୁକ୍ତି ସ୍ଥାନ କଟକକୁ ଆସିଲି । ମୋର ସବା ସାନଭାଇକୁ ଆଣିବା ସକାଶେ ମୋତେ ଟିକିଏ ଠେଲା ଆଚରଣ କରିବାକୁ ପଡ଼ିଥିଲା । ସନ୍ତାନହୀନ ମୋର ମାମୁ ମାଇଁ ତାକୁ ଏତେ ଆଦରରେ ପାଳିଥିଲେ ଯେ ସେମାନେ ତାକୁ ଛାଡ଼ିବାକୁ ଏକାନ୍ତ ନାରାଜ । ଅଳ୍ପଦିନ ସକାଶେ ନେଇ ଫେରେ ଛାଡ଼ିଦେବି, ଏହି ପ୍ରତିଶ୍ରୁତି ଦେଇ ନେଇଆସିଲି । ଆସି ମାଣିକଘୋଷ ବଜାରରେ ଅଧର ବାବୁଙ୍କ ଭଡ଼ାଘରେ ରହିଲି । ଅଧରବାବୁ ସେତେବେଳେ କଲେକ୍ଟର ଅଫିସରେ ପେସ୍କାର ଥାନ୍ତି । ସେ ଓ ତାଙ୍କ ସ୍ତ୍ରୀ ମୋତେ ପୁଅପରି ସ୍ନେହ କଲେ । ରାଧାନାଥ କଲେଜିଏଟ ସ୍କୁଲରେ ନାମ ଲେଖାଇଲା । ବୁଢ଼ୀମା ସାନଭାଇ ଉପରେ ସମସ୍ତ ସ୍ନେହ ଅଜାଡ଼ିଦେଲା ।

କଟକ ଆସିବାର ଦୁଇ ମାସ ପରେ ମାମୁ ମାଇଁ ଆସି କଟକରେ ପହଞ୍ଚିଲେ । କହିଲେ ଆମ ପୁଅକୁ ନେଇଯିବୁ । ମୁଁ କହିଲି—ତାକୁ ଗାଁକୁ ନେଇ କଣ କରିବ, ମୁଁ ତାକୁ ପଢ଼େଇବି, ତୁମେ ପୁଅ କର, ବ୍ରତ କର, ବିବାହ କର, କିଛି ଗୋଟାଏ ଗୃହକରି କର ସେ ତୁମକୁ ପୋଷିବ । ସେମାନେ କିନ୍ତୁ ନଛୋଡ଼-ବନ୍ଧା । ମାମୁଘର ବହୁତ ଯେଜମାନ ଥାଏ ଓ ଜମି କିଛି ଥାଏ । ସେ କହିଲେ ମୋର ପୁଅର ବେଶୀ ପଢ଼ା ଆବଶ୍ୟକ ନାହିଁ । ସେ ଗାଁରେ ପଢ଼ି ମୋ ସଙ୍ଗେ ଯେଜମାନି କରିବ ଏବଂ ସେହି କାମ କରି ମୋତେ ପୋଷିବ । ମୋର ଖଣ୍ଡେ ଜମି କୋଣକୁ ତୋର ଗୃହକରି ସରି ନୁହେ । ଏପରି ଜିଦ୍‌ଧରି ବସିବାରୁ ମୋର ବୁଦ୍ଧି ବଣା ହୋଇଗଲା । ପିଲାଟିକୁ ଜୀବନସାରା ଯେଜମାନ କାର୍ଯ୍ୟ କରିବାକୁ ଛାଡ଼ି-ଦେବାକୁ ମୋର ମନ ଆଦୌ ମାନିଲାନାହିଁ । ତେଣୁ ଶେଷରେ ନିଷ୍ଠୁର ହେବାକୁ ପଡ଼ିଲା । ମୁଁ କହିଲି ଛାଡ଼ିବିନାହିଁ । ଏହା ଶୁଣି ମାମୁଁ ଅଗ୍ନିଶର୍ମା ହୋଇ ବହୁତ ଅଭିଶାପ ଦେଲେ । କହିଲେ ତୋର କୁଳ ବୁଡ଼ିବ, ବଂଶ ବୁଡ଼ିବ,

ଡହରେ ଦୁଦୁସ ଉଠିବ, ମୋର ନିଃଶ୍ୱାସ ପଡ଼ିବ । ଏପରି କହି କିଛି ନ ଖାଇ ମାଇଁଙ୍କୁ ଧରି ଗୁଳପିବାକୁ ବସିଲେ । ମୁଁ କହିଲି, ଏକଥା ହୋଇପାରିବ ନାହିଁ, ତୁମେ ଖାଇପିଇ ଯିବ, ନ ହେଲେ ମାଇଁଙ୍କ ଛାଡ଼ିବ ନାହିଁ । ବିଚାରୀ ମାଇଁ ଚୁପ୍ ହୋଇଥାଏ । କଣ କରିବ ? ପିଲାଦିନୁ ମାମୁଙ୍କର ଆମ ପ୍ରତି ସେତେ ସ୍ନେହ ନ ଥିଲେ ମଧ୍ୟ ମାଇଁଙ୍କର ଥାଏ । ସେ ଗଲେ ଭଲ ଖାଇବାପିଇବାକୁ ଦିଅନ୍ତି । ଶେଷରେ ସେମାନେ ଖାଇପିଇ ଗଲେ । ସାନଭାଇ ଦେବେନ୍ଦ୍ରର ବ୍ରତ କଟକରେ ହେଲା । ମାମୁଙ୍କୁ ଡାକିବାରୁ ଆସିଲେ ନାହିଁ । ତେବେ ମଝିମଝିରେ ଆମେ ତାଙ୍କ ଘରକୁ ଯାଉଥିଲୁ । ମାମୁ ମାଇଁ ଚକେଇ ସକାଶେ ଆମ ଘରକୁ ଆସୁଥିଲେ । ଆମେ ମଧ୍ୟ ସାମୟିକ ସାହାଯ୍ୟ ଦେଉଥିଲୁ । ଦେବେନ୍ଦ୍ର ତାର ଚାକିରି ପରେ ମଧ୍ୟ କିଛି କିଛି ସାହାଯ୍ୟ ଦେଉଥାଏ । ପରେ ଦେବେନ୍ଦ୍ରର ଚାକିରି ଦେଖି ସେମାନେ ନିଶ୍ଚୟ ପସ୍ତେଇଥିବେ । ପିଣ୍ଡସକାଶେ ଭାଇପୁଅଙ୍କଠାରୁ ଗୋଟିଏ ପୁଅ କଲେ । ସେ କନ୍ତୁ କଷ୍ଟ ଦେଲା । ଶେଷରେ ଉଭୟେ ଦୁଃଖରେ ଇହଲୀଳା ସାଙ୍ଗକଲେ ।

## ପ୍ରଥମ ଚାକିରି

କଟକରେ କାର୍ଯ୍ୟରେ ଯୋଗଦେବାର ଚାରିମାସ ପରେ ମୋର ସ୍ତ୍ରୀ ଆସିଲେ । ସେତେବେଳକୁ ମୋର ଦେହ ଭାରି ଖରାପ ଥିଲା । ଦାମ୍ପତ୍ୟ ଜୀବନର ପ୍ରଥମ ଦୁଇମାସ ସୁଖମୟ ନ ଥିଲା । ଚାକିରି ଆରମ୍ଭ କଲି ୧୯୩୨ ଫେବ୍ରୁୟାରୀ ୪ ତାରିଖରେ । ମୋ ସାଙ୍ଗରେ କାର୍ଯ୍ୟରେ ଯୋଗଦେଲେ ଶ୍ରୀ ବ୍ରଜମୋହନ ମହାପାତ୍ର ଓ ଶ୍ରୀ ଲୋକନାଥ ପଣ୍ଡା । ବ୍ରଜବାବୁ ସବ୍‌ଡେପୁଟି କଲେକ୍ଟର ହିସାବରେ ନିଯୁକ୍ତ ହୋଇଥିଲେ ଓ ଶ୍ରୀ ଲୋକନାଥ ପଣ୍ଡା ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯୋଗ ଦେଇଥିଲେ । ସେତେବେଳକୁ ଶ୍ରୀଯୁକ୍ତ ଆର୍. ଏଲ୍. ନରସିଂହମ୍ ଆଇ. ସି. ଏସ୍. ଗତ ସେପ୍ଟେମ୍ବର ମାସରୁ କାର୍ଯ୍ୟରେ ଯୋଗଦେଇ କଟକରେ ଥିଲେ । ସେତେବେଳକୁ ପ୍ରୋବେସନର ଅଫିସରମାନଙ୍କ ବସିବାକୁ ଜାଗା ନ ଥାଏ । ଆମେମାନେ ଲାଇବ୍ରେରୀରେ ବସି ଡିପାର୍ଟମେଣ୍ଟାଲ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଉଁ । ସେତେବେଳେ କଲେକ୍ଟର ଥାଆନ୍ତି ହର୍ଣ୍ଣଲେ ସାହେବ ଏବଂ ସଦର ଏସ୍. ଡି. ଓ. ଥାଆନ୍ତି ଟି. ଭି. ଏନ୍. ଆୟାର୍ ଆଇ. ସି. ଏସ୍., ଯେ କି ପରେ ପାଟନା ହାଇକୋର୍ଟର ବିଚାରପତି ହେଲେ । ସେତେବେଳକୁ ତାଙ୍କର ଚାକିରି ଦଶବର୍ଷ ହୋଇଥିଲା; ତଥାପି ସେ ସଦର ଏସ୍. ଡି. ଓ. ଥିଲେ । ଆଜିକାଲି ଆଇ. ଏ. ଏସ୍. ମାନେ ୫ ବର୍ଷପରେ କଲେକ୍ଟର ନ ହେଲେ ଅସମ୍ମାନ ହେଉଛନ୍ତି; ସେତେବେଳେ କିନ୍ତୁ ସମୁଦାୟ ଭାରତବର୍ଷରେ ବର୍ଷକୁ ୪୫ ଜଣ ଆଇ. ସି. ଏସ୍. ନିଯୁକ୍ତ ପାଉଥାନ୍ତି । ବର୍ତ୍ତମାନ ଆଇ. ଏ. ଏସ୍. ରେ ବର୍ଷକୁ ଶହେ ଶହେ । ସେତେବେଳେ ବ୍ୟବସାୟ ନ ଥିଲା, ଡାକ୍ତରୀ କିମ୍ବା ଇଞ୍ଜିନିୟରିଙ୍ଗରେ ଚାକିରି ନ ଥିଲା । ସବୁ ଭଲ ପିଲାଙ୍କ ପାଇଁ ଆଇ. ସି. ଏସ୍. ବା ଡେପୁଟି କଲେକ୍ଟର ଛଡ଼ା ଅନ୍ୟ ରାସ୍ତା ନ ଥିଲା । ଅବଶ୍ୟ ଭାରତୀୟ ପୋଲିସ ଓ ଆଉ କିଛି ସର୍ବଭାରତୀୟ ଚାକିରି ଥିଲା; କିନ୍ତୁ ତାହା ବହୁତ କମ୍ ।

କଲେକ୍ଟର ଅଫିସରେ ସର୍ବେସର୍ବା ଥିଲେ ଅଫିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ରଘୁନାଥ ରାଓ । ସେ ବଡ଼ ପାରିବାର ଥିଲେ । ଆମର ଡିପାର୍ଟମେଣ୍ଟାଲ ପରୀକ୍ଷା

ହେଲା ଏପ୍ରିଲ ମାସରେ । ଏଥିସକାଶେ ପ୍ରସ୍ତୁତ ହେବାକୁ ମୁଁ ଦୁଇମାସ ସମୟ ପାଇଥିଲି । ମିଷ୍ଟର ନରସିଂହମ୍, ବ୍ରଜବାବୁ, ଲୋକନାଥ ଚନ୍ଦ ଓ ମୁଁ ପରୀକ୍ଷା ଦେବାକୁ ପାଟନା ଗଲୁଁ । ପରୀକ୍ଷାଫଳ ବାହାରିଲାବେଳକୁ ଦେଖାଗଲା ମୁଁ ସମସ୍ତ ପରୀକ୍ଷାରେ ତଳ ଓ ଉପର ଶ୍ରେଣୀରେ, ଆକାଉଣ୍ଟସ୍ ଓ ହିନ୍ଦୀରେ ପାସ୍ କରିଛି । ନରସିଂହମ୍ ସାହେବ ମଧ୍ୟ ସେପରି ପାସ୍ କରିଛନ୍ତି । ନରସିଂହମ୍ ପାଞ୍ଚ ମାସ ପଢ଼ିଥିଲେ । ମୁଁ ଦୁଇମାସ ପଢ଼ି ସବୁ ପରୀକ୍ଷାରେ ପାସ୍ କରିଯିବାରୁ ସେ ମୋତେ ପ୍ରଶଂସା କରିଥିଲେ । ସେତେବେଳେ ଆମର ପ୍ରୋବେସନର ଦୁଇବର୍ଷ ସମୟ ମଧ୍ୟରେ ୪ ଥର ପରୀକ୍ଷା ଦେବାକୁ ଅବକାଶ ମିଳୁଥିଲା । ମୁଁ ଥରକେ ପାସ୍ କରିଯିବାରୁ ଆଉ ପାଟନା ଯିବାକୁ ପଡ଼ିଲା ନାହିଁ । ଡିପାର୍ଟମେଣ୍ଟାଲ ପରୀକ୍ଷା ବାଦେ ଆମର ଆଉ ଗୋଟିଏ ଦାୟିତ୍ୱ ଥାଏ । ତାହା ହେଉଛି ଘୋଡ଼ାଚଢ଼ାରେ ପାସ୍ କରିବା । କଟକରେ ଚଢ଼ିବା ଘୋଡ଼ା ଆଦୌ ମିଳନ୍ତି ନାହିଁ; ଯାହା ଗାଡ଼ିଟାଣିବା ଘୋଡ଼ା । ସେମାନଙ୍କର ମନୁଷ୍ୟ ବସାଇବାର ଅଭ୍ୟାସ ନ ଥାଏ । ତେଣୁ ମନୁଷ୍ୟ ବସିଲେ ଡରନ୍ତି । ଦରଘାବଜାରର ବାବୁମିଆଁ ନାମକ ଜଣେ ଘୋଡ଼ାଚଢ଼ାଳ ଆମକୁ ଘୋଡ଼ାଚଢ଼ା ଶିଖେଇଲେ । ସେ ସମସ୍ତ ପ୍ରୋବେଶନର ଅଫିସରଙ୍କୁ ଶିଖାନ୍ତି । କାଳଗଳେ ଜମିଦାର କମିରୁଦ୍ଦିନ ସାହେବଙ୍କର ଗୋଟିଏ ବଡ଼ ନାଲି ଘୋଡ଼ା ଥାଏ । ସେଥିରେ ଆମେ ଶିଖିଲୁ । ବାବୁମିଆଁ ଲଗାମ୍ ଧରି ଆଗେ ଆଗେ ଚାଲନ୍ତି; ଆମେ ଜଣକ ପରେ ଜଣେ ଘୋଡ଼ାରେ ବସି ଚାଲୁ । ଏପରି କିଛିଦିନ ଗଲାପରେ ମୁଁ ବାବୁମିଆଁଙ୍କୁ କହିଲି, ତୁ ଲଗାମ୍ ଛାଡ଼ିଦେ ମୁଁ ଚଲାଇବ । ଘୋଡ଼ା ଜାଣେ ମୁଁ ଭଲରୂପେ ବସିବା ଶିଖିନାହିଁ । ବାବୁମିଆଁ ଲଗାମ୍ ଛାଡ଼ିଦେବାରୁ ଘୋଡ଼ା ଖରବେଗରେ ଦୌଡ଼ିବାକୁ ଆରମ୍ଭ କଲା, ମୋର ଲଗାମ୍ ମାନିଲା ନାହିଁ । ଥୋଡ଼େ ବାଟ ଯାଇ ଘୋଡ଼ାପିଠିରୁ ଖସିପଡ଼ିଲି । କାଲ୍ଲାପଡ଼ଆରେ ଶିଖୁଥିଲି । ଏକ ନମ୍ବର କୋଠି ସାମନାରେ ଖସିପଡ଼ିଲି । ଭାଗ୍ୟତଃ ଗୋଡ଼ ରେକବରୁ ଖସିଗଲା । ତଳେ ପଡ଼ି ଓଲଟିଗଲି । ଭଗବାନଙ୍କ କୃପାରୁ କିଛି ଜଖମ୍ ହେଲାନାହିଁ । ସେ ଦିନଠାରୁ ସେ ଘୋଡ଼ା ଛାଡ଼ିଲୁ । ବାବୁମିଆଁ ଆଉ ଗୋଟିଏ ସୁନ୍ଦର ଧଳାଘୋଡ଼ା ଆଣିଲା । ସେ ସେତେ ବଦ୍‌ମାସ ନ ଥିଲା ଏବଂ ପିଠିରେ ବସିବାକୁ ବଡ଼ ଆରାମ ଲାଗୁଥିଲା । ନିୟମ ଅନୁସାରେ କଲେକ୍ଟର ସାହେବ ଘୋଡ଼ାଚଢ଼ା ଦେଖି ସାର୍ଟିଫିକେଟ୍ ଦେବାକଥା । ମୁଁ ସେ ଘୋଡ଼ାରେ ଚଢ଼ି ହର୍ଣ୍ଣିଲେ ସାହେବଙ୍କ କୋଠିକୁ ଗଲି । ସେତେବେଳେ ଡାକ୍ତରଖାନା ପାଖରେ ଯେଉଁ ଘରେ ବର୍ତ୍ତମାନ ମିଲିଟରି ଅଫିସ ଅଛି, ସେଠା କଲେକ୍ଟରଙ୍କ ବଙ୍ଗଳା ଥାଏ । ସାହେବଙ୍କ

ମେମ୍‌ସାହେବ ଥାନ୍ତି । ମୁଁ ଘୋଡ଼ା ନେଇ ହତାରେ ପଶିବା ପରେ ସାହେବ ଓ ମେମ୍‌ସାହେବ ଆସିଲେ । ସାହେବ କହିଲେ କାଣ୍ଟର କରି ଯାଅ, ଗ୍ୟାଲପ କରି ଆସ । ମୁଁ ସେପରି କଲି । ତାପରେ ମେମ୍‌ସାହେବ ଚଢ଼ିଲେ । ଘୋଡ଼ାକୁ ଦେଖି ସେମାନେ ଖୁସି ହୋଇଗଲେ । ଏଥିରେ ମୋର ସାର୍ଟିଫିକେଟ୍ ହୋଇଗଲା । କିନ୍ତୁ ବ୍ରଜବାବୁ ଓ ଲୋକନାଥ ପଣ୍ଡା ଯେତେବେଳେ ଚଢ଼ିବାକୁ ଗଲେ, ସାହେବ କହିଲେ ମୋର ଆଉ ସମୟ ନାହିଁ ପୋଲିସ ସାହେବଙ୍କ ପାଖକୁ ଯାଅ । ସେମାନେ ପୋଲିସ ସାହେବଙ୍କ ପାଖକୁ ଗଲେ । ପୋଲିସ ମାନଦଣ୍ଡ ଟିକିଏ ବେଶୀ । ପୋଲିସ ସାହେବ ସେମାନଙ୍କୁ ଆହୁରି ଅଭ୍ୟାସ କରିବାକୁ କହିଲେ । ପରେ ସେମାନେ ବହୁତ କଷ୍ଟରେ ସାର୍ଟିଫିକେଟ୍ ପାଇଲେ ।

ଚାକିରିରେ ମୁକରର ହେବା ସକାଶେ ନିୟମ ଅନୁସାରେ ତିନୋଟି ସର୍ତ୍ତ ଥିଲା । ପ୍ରଥମେ ଚାକିରି ଦୁଇବର୍ଷ ଶେଷ ହେବ । ଦ୍ୱିତୀୟରେ ଡିପାର୍ଟମେଣ୍ଟାଲ ପରୀକ୍ଷା ସବୁ ସରିବ । ତୃତୀୟରେ ଘୋଡ଼ାଚଢ଼ା ସାର୍ଟିଫିକେଟ୍ ହାସଲ କରିବ । ୧୯୩୬ ଠାରୁ ଓଡ଼ିଶା ବିହାର-ଓଡ଼ିଶାରୁ ଅଲଗା ହୋଇଯିବା ପରେ ଏବଂ ଡେପୁଟି କଲେକ୍ଟର ଶ୍ରୀଯୁକ୍ତ ସୋମନାଥ ମିଶ୍ର ୧୯୩୭ ସାଲରେ ଘୋଡ଼ାରୁ ପଡ଼ି ହାତ ଭାଙ୍ଗିବା ପରେ ଏହି ଘୋଡ଼ାଚଢ଼ା ଓଡ଼ିଶାରେ ବନ୍ଦ ହୋଇଗଲା । ଦ୍ୱିତୀୟ ଦୁଇଟି ସର୍ତ୍ତ ଚାକିରି ଆରମ୍ଭର ଛଅମାସ ମଧ୍ୟରେ ମୋର ପୂରଣ ହୋଇଗଲା । ପ୍ରଥମ ସର୍ତ୍ତ ସକାଶେ ଖାଲି ମୋତେ ଦୁଇବର୍ଷ ଅପେକ୍ଷା କରିବାକୁ ପଡ଼ିଲା । ସବୁ ପରୀକ୍ଷାରେ ପାସ୍ କରି ଯାଇଥିବାରୁ ବର୍ଷକ ମଧ୍ୟରେ ମୋତେ ପ୍ରଥମଶ୍ରେଣୀ ମାଜିଷ୍ଟ୍ରେଟ କ୍ଷମତା ମିଳିଗଲା ଏବଂ କଟକରେ ଅଧିକାଂଶ ଫୌଜଦାରୀ କେଶ୍ ମୋତେ କରିବାକୁ ପଡ଼ୁଥିଲା । ଚାକିରିର ପ୍ରାୟ ଦେଢ଼ବର୍ଷ ପରେ କଟକ ସଦରରେ ଗୋଟିଏ ମସ୍ତବଡ଼ ବଢ଼ି ହୋଇ ସଦର ଥାନାର ଖଣ୍ଡେଇତା ଘାଇ ଭାଙ୍ଗିଗଲା । ତଳେ ମଧ୍ୟ ଆଉ ଗୋଟିଏ ଦୁଇଟି ଘାଇ ଭାଙ୍ଗିଗଲା । ଏଥିରେ ବହୁତ ଜମି ବାଲିଚର ହୋଇଗଲା ଏବଂ ଫସଲ ନଷ୍ଟ ହୋଇଗଲା । ଗରିବ ଲୋକେ ଖାଇବାକୁ ପାଇଲେ ନାହିଁ । ତେଣୁ ମୋତେ ରିଲିଫ୍ କାମରେ ପ୍ରାୟ ବର୍ଷକ ଉପରେ କଣ୍ଟାପଡ଼ା, ଗୋବିନ୍ଦପୁର ଓ ତେଲେଙ୍ଗାପେଣ୍ଠରେ ରହିବାକୁ ପଡ଼ିଲା । ଅବଶ୍ୟ ଯିବାଆସିବା କରୁଥାଏ, ତେବେ ଅଧିକାଂଶ ସମୟ ବାହାରେ ରହିବାକୁ ପଡ଼ୁଥାଏ । ମୋର ଶ୍ରଦ୍ଧେୟ ବନ୍ଧୁ ବ୍ରଜ ମହାପାତ୍ର ନିଆଳି କ୍ୟାମ୍ପରେ ରହିଲେ । ଯେତେବେଳେ ଆମର ଏସ. ଡ଼ି. ଓ. ଥାଆନ୍ତି ଦିଲବାର ଅଲି ଖାଁ ଏବଂ କଲେକ୍ଟର ଥାଆନ୍ତି ଶ୍ରୀଯୁକ୍ତ ବି.ସି. ମୁଖାର୍ଜୀ ଯେଏ

କ ପରେ ଓଡ଼ିଶାର ଚିଫ୍ ସେକ୍ରେଟେରୀ ହେଲେ । ଦିଲବାର ଅଲି ନବାବ୍ ମିର୍ଜାଙ୍କର ଲୋକ, ସମସ୍ତଙ୍କର ପିଲ୍ଲିଭୁଲି । ଆମମାନଙ୍କୁ ବଡ଼ ଭଲ ପାଆନ୍ତି, ଉତ୍ସାହ ଦିଅନ୍ତି । ମୁଖାର୍ଜୀ ସାହେବ କାମରେ ଧୁରନ୍ଧର । ଧୋଇଯିବା ଇଲାକାରେ ପ୍ରଥମେ ଚୂଡ଼ା ଗୁଡ଼ଳ ବାଣ୍ଟି ଏବଂ ଭଙ୍ଗାଘର ସଜାଡ଼ିବା ସକାଶେ ଓ ଫସଲ କରିବା ସକାଶେ କିଛି କିଛି ସାହାଯ୍ୟ ଓ ଋଣ ବାଣ୍ଟି ତା ପରେ ପ୍ରତି ଗାଁ ଗାଁ ବୁଲି ଯେଉଁମାନଙ୍କୁ ଆସନ୍ତା ଫସଲ ପର୍ଯ୍ୟନ୍ତ ରିଲିଫ ଗୁଡ଼ଳ ଦେବାକୁ ହେବ, ସେମାନଙ୍କ ତାଲିକା କରିବାକୁ ପଡ଼ିଲା । ସପ୍ତାହକୁ ଥରେ ତେଲଙ୍ଗାପେଣ୍ଠ, କଣ୍ଟାପଡ଼ା ଓ ଗୋବନ୍ଦପୁର କ୍ୟାମ୍ପରେ ଗୁଡ଼ଳ ବଣ୍ଟାଗଲା । ଏହା ସଙ୍ଗେ ସଙ୍ଗେ ଗାଁ ଗାଁ ବୁଲି ଯେଉଁ ଲୋକମାନେ ଘର ତିଆରି ଓ ଫସଲ ସକାଶେ ଋଣ ନେଇଥିଲେ, ସେମାନେ ତାକୁ କିପରି ବ୍ୟବହାର କରିଛନ୍ତି, ଅନ୍ୟମାନେ କିପରି ଫସଲ ଉଠାଉଛନ୍ତି, ରିଲିଫ୍ ଗୁଡ଼ଳ ପାଇବା ଦୁଃଖୀରଙ୍କିମାନେ କିପରି ଅଛନ୍ତି, ଖୋରାକ ଖାଦ୍ୟ ମିଳୁଛି କି ନାହିଁ—ଏସବୁ ଦେଖିବାକୁ ପଡ଼ିଲା । ପ୍ରାୟ ବର୍ଷାଧିକ କାଳ ମଫସଲରେ ରହିବାରୁ ଏବଂ କଣ୍ଟାପଡ଼ା ପାଖ ପ୍ରାଚୀ ନଦୀରେ ବହୁତ ଲାଲମୁଣ୍ଡିଆ ବତକ ବସୁଥିବାରୁ ଏ ସମୟରେ ମୁଁ ଗୋଟିଏ ଦୁଇନଳିଆ ବନ୍ଧୁକ କିଣିଲି ଏବଂ ଯିବା ଆସିବା ସକାଶେ ଯେଉଁଠାରେ ସାଇକଲ ଯାଏନାହିଁ ସେ ସବୁ ଇଲାକାକୁ ଯିବାକୁ ସ୍ଥାନୀୟ ପ୍ରେସିଡ଼େଣ୍ଟଙ୍କ ଗୋଟିଏ ଘୋଡ଼ା ରଖିଲି । ତଥାପି ବର୍ଷାଦିନେ ପାଣି କାଦୁଅରେ ଚାଲିବା ଛଡ଼ା ଉପାୟ ନଥାଏ । ଏହି ଘୋଡ଼ାର ଗତିବିଧି ଢିଲା ଥାଏ । ସେହି କାରଣରୁ ଥରେ ଏହି ଘୋଡ଼ାରୁ ପଡ଼ିଯାଇ କଟକରେ ଯାଇ ପନ୍ଦର ଦିନ ରହିଲି । ବାଁ ହାତ ମୋଡ଼ି ହୋଇ ଯାଇଥିଲା । ସେତେବେଳେ ମୁଁ କାଳିଗଳିରେ ରହୁଥିଲି । ପ୍ରସିଦ୍ଧ ସର୍ଜନ ଡାକ୍ତର ଜୟନ୍ତ ରାଓ ଏହାକୁ ପ୍ରତିଦିନ ଘଷି ଘଷି ପନ୍ଦର ଦିନରେ ଭଲ କରିଦେଲେ । ତା ପରେ ପୁଣି ରିଲିଫ କ୍ୟାମ୍ପକୁ ଗଲି । ତା ପରବର୍ଷ ବର୍ଷା ଆରମ୍ଭରେ ଆମେ ସମସ୍ତେ କ୍ୟାମ୍ପରୁ ଫେରିଲୁ । କ୍ୟାମ୍ପରୁ ଫେରି ମୁଁ ସଙ୍ଗେ ସଙ୍ଗେ ପାରା ଟାଇଫଏଡ଼ରେ ପଡ଼ି ତିନି ସପ୍ତାହ ପରେ ସୁସ୍ଥ ହେଲି ।

କଟକକୁ ଆସିବା ପରେ ଅଫିସ କାମ ଜୋରରେ ଚାଲିଲା । ଫୌଜଦାରୀ କେଶ ସାଙ୍ଗରେ ମୋତେ ସାର୍ଟିଫିକେଟ ଓ ସାତ ଆଇନ କେଶ୍ ବିଚାର କରିବାକୁ ପଡ଼ିଲା । ସାତ ଆଇନ କେଶର ସଂଖ୍ୟା ପ୍ରାୟ ୩୦,୦୦୦ । ଖାଲି ଦସ୍ତଖତ

କରିବାକୁ ଦୁଇଘଣ୍ଟା ଲାଗେ । ଫୌଜଦାରୀ କେଶରେ ଗୋଟିଏ ବଡ଼ କେଶ୍ ବିଚାର କରିବାର ମୋର ମନେ ଅଛି । ନଟାଣିଆ ସାଆଁନ୍ତ ନାମରେ ପୁରୀ ଜିଲ୍ଲାର ଜଣେ ବଡ଼ ପ୍ରତାପଶାଳୀ ନିଶୁଆ ଜମିଦାର, ଯାହାଙ୍କୁ ଦେଖିଲେ ଗର୍ଭିଣୀ ଗାଈ ବାଛି ଗୁଡ଼ୁଥିଲା, ସେ ଗୋଟିଏ ଠକାଇ କେଶରେ ଅଭିଯୁକ୍ତ ହୋଇ ମୋ କୋର୍ଟକୁ ଆସିଲେ । ପ୍ରଭାବଶାଳୀ ବହୁତ ଲୋକ ତାଙ୍କ ସପକ୍ଷରେ ମୋ ଉପରେ ପ୍ରଭାବ ପକାଇବାକୁ ଚେଷ୍ଟା କଲେ । କିନ୍ତୁ ସେତେବେଳେ ଭଲ ହାକିମର ଲକ୍ଷ୍ୟ ଥାଏ କିପରି ଦୁଷ୍ଟଲୋକଙ୍କୁ ଜବତ କରିବେ । ମୁଁ ତାଙ୍କୁ ଦଣ୍ଡ ଦେଲି । ରାୟ ଶୁଣି ସମସ୍ତେ ଚାଟକା ହୋଇଗଲେ ଏବଂ ଭଦ୍ରଲୋକଙ୍କର ଗୋରା ଚେହେରା କାଳିଆ ପଡ଼ିଗଲା । ମୁଁ ଶୁଣେ, ସେହି ଦିନଠାରୁ ସେ ଏକଦମ ଦବିଗଲେ । ସେତେବେଳେ ଆମର ଆଦର୍ଶ ଥିଲେ ଦୁର୍ଦ୍ଦାନ୍ତ ଡେପୁଟି କଲେକ୍ଟର ମାଧବ ମିଶ୍ର ଏବଂ ଦୁର୍ଗାଚରଣ ଦାସ । ସେମାନଙ୍କ ନାମ ଶୁଣିଲେ ଦୁଷ୍ଟ ଲୋକଙ୍କର ପିଳେହି ଫାଟୁଥିଲା । ଆମର ସେପରି ଉଦ୍ଦେଶ୍ୟ ଥିଲା, ଆମ ଇଲାକାରେ ଦୁଷ୍ଟ ଲୋକଙ୍କୁ କିପରି ଜବତ କରି ରଖିବୁ, କିଛି ଗୋଳମାଳ କଲେ ଜେଲରେ ଠୁଙ୍କିବୁ, ଜାମିନ ଦେବୁ ନାହିଁ ଏବଂ କଠୋର ଦଣ୍ଡ ଦେବୁ । ସେ ଆଦର୍ଶ ବର୍ତ୍ତମାନ ଆଉ ନାହିଁ । ବର୍ତ୍ତମାନ ହାକିମମାନେ ଦେଖୁଛନ୍ତି ଦୁଷ୍ଟ ଲୋକଙ୍କ ସଙ୍ଗେ ଦ୍ୱନ୍ଦ୍ୱ ନ କରି ସମସ୍ତଙ୍କ ସଙ୍ଗେ ଯେତେଦୂର ସମ୍ଭବ ମିଳିମିଶି ଶାନ୍ତିରେ ରହି ଉପର ହାକିମଙ୍କ ମର୍ଜି ଉଣ୍ଡି ସେ ଅନୁସାରେ କାମ କରି କିପରି ସୁଖରେ ରହିବେ । ଏ ହେବା କଥା । ଯୁଗ ବଦଳିଯାଇଛି । ମନ୍ତ୍ରିମଣ୍ଡଳ ଆସିଛନ୍ତି । ସେମାନଙ୍କର ପାର୍ଶ୍ୱ-ଚରମାନେ ପ୍ରଭାବଶାଳୀ ହୋଇଉଠିଛନ୍ତି । ସରକାର ତଥା ଉପର ହାକିମମାନେ ଏମାନଙ୍କ କଥାରେ ପରିଚାଳିତ ହେଉଛନ୍ତି । ଏପରି ଅବସ୍ଥାରେ ଚଳିଆ ଅଫିସର ସ୍ୱାଧୀନଚେତା ହୋଇ ଭୁଲଭୂଲ କଲେ ବିପଦରେ ପଡ଼ିବା ଛଡ଼ା ଅନ୍ୟ ଚାରା ନାହିଁ । ବର୍ତ୍ତମାନ ମନ୍ତ୍ର ହେଲା—ହାତେ ମାପି ଗୁଣ୍ଡେ ଖାଇବ, ପ୍ରଭାବଶାଳୀ ଲୋକଙ୍କ ସଙ୍ଗେ ସଙ୍ଘର୍ଷ କରିବ ନାହିଁ, ନିଜ କର୍ତ୍ତବ୍ୟରେ ଅତ୍ୟଧିକ ଆନ୍ତରିକତା ଓ ତତ୍ପରତା ଦେଖାଇବ ନାହିଁ । ନହେଲେ ଏକୂଳ ସେକୂଳ ଛାଡ଼ି ଡଙ୍ଗାରୁ ଠିକ୍ ମଝିନଈରେ ବୁଡ଼ିବ ଏବଂ ସବୁବେଳେ ଉପରିସ୍ଥ ହାକିମ ଓ ମନ୍ତ୍ରୀଙ୍କର ପ୍ରିୟପାତ୍ର ହେବାକୁ ଚେଷ୍ଟା କରୁଥିବ । ☐☐☐

## କଟକ ଘର ଓ ବଦଳ

ପିଲାଦିନେ କଟକରେ ପଢ଼ୁଥିବାବେଳେ ମୋର ଇଚ୍ଛା ଥାଏ କଟକରେ କଣ ଘର ଖଣ୍ଡେ ଥାଆନ୍ତା, ପିଲାମାନେ ଖର୍ଚ୍ଚାନ୍ତ ନ ହୋଇ ଘରେ ଗଣ୍ଡେ ଖାଇ କଲେଜରେ ପଢ଼ନ୍ତେ । ପ୍ରଥମ ଚାକିରି କଟକରେ ହେବାରୁ ଏହି ଇଚ୍ଛା ପୂରଣ କରିବା ପାଇଁ ସୁଯୋଗ ମିଳିଲା । କାଠଯୋଡ଼ି କୂଳରେ ସନସାଇନ ପଡ଼ିଆ ପାଖରେ ଘର ଖଣ୍ଡେ କରିବାକୁ ଭାରି ଇଚ୍ଛା ଥାଏ । ସେତେବେଳେ ମୁଁ ମାସିକ ଟ ୨୫୦-୦୦ରେ ଚାକିରି ଆରମ୍ଭ କଲି; କିନ୍ତୁ ଟ ୧୦୦.୦୦୦ ରୁ ବେଶୀ ଖର୍ଚ୍ଚ କରିବା ଉପାୟ ନଥାଏ । ଟଙ୍କାକୁ ଚାଉଳ କଟକ ୧୦ ସେର । ମାଛ କଟକ ସେର ଛଅଣା । ମାଂସ, ଦୁଧ ଓ ପନିପରିବା ଭାରି ଶସ୍ତା । ଯେ ଆମକୁ ଟଙ୍କାକୁ କଟକ ଚାରିସେର ଦୁଧ ଦେଉଥାଏ ସେ ଦଶହରାକୁ ୩।୪ ସେରର ଗୋଟିଏ ମାଛ ଭେଟିଦିଏ । ଏପରି ଅବସ୍ଥାରେ ମୋର ସଞ୍ଚିତ ଧନରେ ଖଣ୍ଡିଏ ଜାଗା କିଣି ଆସ୍ତେ ଆସ୍ତେ ଘର ଖଣ୍ଡେ କରିବି, ଏ ଇଚ୍ଛା ପ୍ରବଳ ହେଲା । ସେତେବେଳେ ଇଟା ଦର ହଜାର ଟ ୮.୦୦, ସିମେଣ୍ଟ ବସ୍ତା ବାରଅଣା ଓ ମିସ୍ତ୍ରୀ ମଜୁରି ଦଶଅଣା ଏବଂ କୁଲି ମଜୁରି ପାଞ୍ଚଅଣା । ସନସାଇନ ପଡ଼ିଆ ଚାରିପାଖେ ଦିନେ ସଞ୍ଜରେ ବୁଲୁ ବୁଲୁ ବର୍ତ୍ତମାନ ମୁଁ ଯେଉଁଠି ଘର କରିଛି, ସେଠି ଗୋଟିଏ ଚାଳଘର ଦେଖିଲି । ତା ଭିତରେ ପଶି ଜଣେ ବୁଢ଼ୀ ଏବଂ ଜଣେ ପ୍ରୌଢ଼ଙ୍କ ସହ ସାକ୍ଷାତ ହେଲା । ବୁଢ଼ୀ ସଙ୍ଗେ କଥାବାର୍ତ୍ତା ହେଲା । ପ୍ରଥମ ଦେଖାରୁ ସେ ମୋତେ ପୁଅପରି ଭାରି ସ୍ନେହ କଲା । ଏ ଜାଗାଟି ତାର ବନ୍ଧା ପଡ଼ିଥାଏ । ସାହୁକାର କେତେବେଳେ ଡିକ୍ରି କରି ତାକୁ ଦାଣ୍ଡରେ ବସାଇଦେବ, ଏ ଭୟ ତାକୁ ଘାରୁଥାଏ । ମୋତେ ଦେଖି ତାର ଆଶା ଓ ସାହସ ହେଲା । ସେ କହିଲା, "ପୁଅ, ଜାଗାଟି ବନ୍ଧକମୁକ୍ତ କରି କିଣେ, ବନ୍ଧକ ପରେ ମୋତେ କିଛି ଟଙ୍କା ଏବଂ ମୁଁ ମଲା ପର୍ଯ୍ୟନ୍ତ ମୋତେ ଏହିଠାରେ ରହିବାକୁ ଖଣ୍ଡେ ଜାଗା ଦେ ।" ମୁଁ ସେଥିରେ ରାଜି ହେଲି । ମୋର ପୂର୍ବପରିଚିତ କଲେକ୍ଟର ଅଫିସର ପେସ୍କାର ଅଧରବାବୁଙ୍କଠାରେ ଏ ଜାଗା ବନ୍ଧା ଥାଏ । ମୁଁ ତାଙ୍କୁ କିଣିବି ବୋଲି ଜଣାଇଲି । ସେ ଅନିଚ୍ଛା ସତ୍ତ୍ୱେ ରାଜି ହେଲେ କାରଣ ଏ ଜାଗା ତାଙ୍କର ନେବାର ଉଦ୍ଦେଶ୍ୟ ଥିଲା । ବନ୍ଧକ ବାବଦକୁ ତାଙ୍କୁ ହଜାରେ ଟଙ୍କା ଦେଇ

ବୁଢ଼ୀକୁ ଟ ୪୦୦.୦୦ ଦେଲି । ଜାଗାଟି ଅଢ଼େଇ ଗୁଣ୍ଠ । ସେତେବେଳର ଦର ଅନୁସାରେ ଟ ୧୪୦୦.୦୦ ଖୁବ୍ ବେଶୀ । ତଥାପି ଜାଗାଟି ମୋର ପସନ୍ଦ ହେବାରୁ ନେଲି ଏବଂ ବ୍ୟାଙ୍କରୁ ଦୁଇହଜାର ଋଣ ଆଣି ଘର ଆରମ୍ଭ କଲି । ସେତେବେଳ ସମୟ ୧୯୩୪ ସାଲ୍, ମୋର ଚାକିରିର ଠିକ୍ ଦୁଇବର୍ଷ ପରେ । ପୁଣି କଟକ ବ୍ୟାଙ୍କରୁ ୩ ହଜାର ଟଙ୍କା ଋଣ ଆଣି ଏବଂ ମୋର ପ୍ରତିମାସର ଉଦ୍‌ବୃତ୍ତ ଟ ୧୫୦.୦୦ ଲଗାଇ ଦୁଇବର୍ଷ ମଧ୍ୟରେ ଦୋତାଲା ସାରିଲି । ପଲସ୍ତରା ଝରକା କବାଟ ବାକି ଥାଏ; ପଛେ ଲାଗିଲା । ଘର ପ୍ରାୟ ସରିଲାବେଳକୁ ମୋର ଯାଜପୁର ବଦଳି ହୋଇଗଲା । ସେତେବେଳକୁ ଯାଜପୁରରେ ପ୍ରାୟ ୩୦,୦୦୦ ସ୍ୱାଗତ-ଆଇନ କେଶ ବାକି ପଡିଥାଏ । ମୋତେ ତିନିମାସ ସ୍ୱକାଶେ ପଠାଗଲା ଏହାକୁ ଫେଇସଲା କରିବାକୁ । ଯାଜପୁର ଅତି ମକଦ୍ଦମାଖୋର ଜାଗା । ଗୋଟିଏ ସ୍ୱାଗତ ଆଇନ କେଶ, ଗୋଟିଏ ଦେୱାନୀ କେଶ ସଙ୍ଗେ ସମାନ । ରହିବାକୁ ଗୋଟିଏ ଛୋଟ ଘର ମିଳିଥାଏ । ତାର ହତା ସର୍ପସଙ୍କୁଳ । ସମୟ ବର୍ଷା ଦିନ । ଯାହାହେଉ ସେଠି କଷ୍ଟରେ ତିନିମାସ କଟାଇ ଏସବୁ କେଶ୍ ସାରିଲି । ତା ପରେ ପରେ ମୋତେ କେନ୍ଦ୍ରାପଡ଼ାର ଅସ୍ଥାୟୀ ଏସ୍. ଡି. ଓ. କରି ପଠାଗଲା । ସେତେବେଳକୁ ମୋର ଚାକିରିର ଚତୁର୍ଥ ବର୍ଷ । ଦଶ ବାର ବର୍ଷ ନ ହେଲେ ଏସ୍. ଡି. ଓ. ହେବା ଅସମ୍ଭବ । ଆଇ. ସି. ଏସ୍. ଲୋକ ତ ଦଶ ବର୍ଷ ପର୍ଯ୍ୟନ୍ତ ଏସ୍.ଡି.ଓ. ହୋଇ ରହୁଥିଲେ । କେନ୍ଦ୍ରାପଡ଼ା ଯାଇ ସେଠାରେ ଛଅ ମାସ ରହିଲି । ଶ୍ରୀଯୁକ୍ତ ଦୀନବନ୍ଧୁ ସାହୁ ଥିଲେ ସେଠାର ଉତ୍ସାହୀ ଯୁବକ ଏବଂ ଯଦୁମଣି ମଙ୍ଗରାଜ ଥିଲେ ଜଣେ ପ୍ରଧାନ ବ୍ୟକ୍ତି । ଏମାନଙ୍କ ସାହାଯ୍ୟରେ ମୋର ଲେଖା ଗୋଟିଏ ନାଟକ ଅଭିନୀତ କରାଗଲା । ପରେ ଏ ନାଟକର ପାଣ୍ଡୁଲିପି କୁଆଡ଼େ ଗଲା, ଆଉ ମିଳିଲା ନାହିଁ ।

ସେହି ବର୍ଷ ଦକ୍ଷିଣ-ଓଡ଼ିଶା ଓ ଉତ୍ତର-ଓଡ଼ିଶା ମିଶି ନୂତନ ଓଡ଼ିଶା ପ୍ରଦେଶ ଗଠିତ ହୋଇଥାଏ । କେନ୍ଦ୍ରାପଡ଼ାରୁ ମୋତେ ଛତ୍ରପୁର ଟ୍ରେଜରି ଡେପୁଟି କଲେକ୍ଟର କରି ପଠାଗଲା । ସେତେବେଳେ ଏହା ଥିଲା ଗୋଟିଏ ବଡ଼ ପୋଷ୍ଟ । ଏହି ଅଫିସର ଥିଲେ କଲେକ୍ଟରଙ୍କ ଏକମାତ୍ର ସହକାରୀ ଏବଂ କଲେକ୍ଟର ଅଫିସର ସମସ୍ତ ଭାର ଏହାଙ୍କ ଉପରେ । ମୁଁ ଯାଇ ବୟୋଜ୍ୟେଷ୍ଠ ଶ୍ରୀଯୁକ୍ତ ଅନନ୍ତରାମ ରଥଙ୍କୁ ରିଲିଭ୍ କଲି ଏବଂ ସେ କଲେକ୍ଟରଙ୍କ ପି. ଏ. ହିସାବରେ ସେଠି ଅବସ୍ଥାପିତ ହେଲେ । ସେ ପି. ଏ. ହେବାରୁ ମୋର ଟ୍ରେଜେରୀ ଛଡ଼ା ଆଉ କିଛି

କାମ ନ ଥାଏ । ସେତେବେଳେ ସାମୁଏଲ ଦାସ ସେଠାକୁ ଆର୍. ଡ଼ି. ଓ ହୋଇ-
ଗଲେ । ଜୟପୁରରେ ମୋର କାମ ଥାଏ ସକାଳେ ସଞ୍ଜବେଳେ ଟେନିସ୍ ଖେଳିବା
ଏବଂ ରାତିରେ ବ୍ରିଜ ଖେଳିବା । ଏଠାରେ ଥିଲାବେଳେ ମୋର ସାନଭାଇ
ହରଭଦ୍ର ମିଶ୍ର ଯେ କି ପଞ୍ଚମ ଶ୍ରେଣୀ ପାସ କରି ପୋଷ୍ୟପୁତ୍ର ହୋଇ ପାରିକୁଦ
ଚାଲିଯାଇଥିଲା, ତାକୁ ଆଣି ରମ୍ଭାରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି ଏବଂ
ମୋର ଏକମାତ୍ର ଭଉଣୀ ପାରିକୁଦ ଅନ୍ତର୍ଗତ ଅଲଣ୍ଡାର ଭାଲୁ ଦାସେ କ୍ଷୟ-
କାଶରେ ଆକ୍ରାନ୍ତ ହୋଇ ଆସି ଏଠାରେ ଚିକିତ୍ସିତ ହୋଇ ବିଫଳ ମନୋରଥରେ
ଗାଁକୁ ଫେରିଯାଇ ସେଠାରେ ଦେହତ୍ୟାଗ କଲେ । ମୋର ସାନଭାଇ ଦୁଇଜଣ
ରାଧାନାଥ ଓ ଦେବେନ୍ଦ୍ର କେତେବେଳେ ମୋ ସଙ୍ଗରେ, କେତେବେଳେ ହଷ୍ଟେଲରେ
ରହି ପଢ଼ୁଥିଲେ । ସେମାନଙ୍କ ପଢ଼ାପଢ଼ିରେ ନିଶ୍ଚୟ ବ୍ୟାଘାତ ଜନ୍ମୁଥାଏ;
କିନ୍ତୁ ଉପାୟ କିଛି ନ ଥିଲା । ସେମାନଙ୍କ ସାଙ୍ଗକୁ ମୋର କକେଇପୁଅ ଭାଇ
ପୁରୁଷୋତ୍ତମ ମଧ୍ୟ ବାଣପୁର ଏମ୍. ଇ. ସ୍କୁଲରୁ ବୃତ୍ତି ପାଇ ଆସି ମୋର
ତତ୍ତ୍ୱାବଧାନରେ ରମ୍ଭାରେ ଯୋଗଦେଇଥାଏ ।

ଜୟପୁରରେ ରହିବାର ୮ ମାସ ପରେ ମୋର ଖୋର୍ଦ୍ଧା ସେକେଣ୍ଡ
ଅଫିସର ହୋଇ ବଦଳି ହେଲା । ସେତେବେଳେ କାର୍ତ୍ତିକଚନ୍ଦ୍ର ସେଠାରେ
ଏସ୍. ଡ଼ି. ଓ. ଥାନ୍ତି । ସେତେବେଳକୁ ତାଙ୍କର ବୟସ ପ୍ରାୟ ୫୦ ବର୍ଷ ହେବ ।
ମୁଁ ସାଜପୁରରେ ଥିବାବେଳେ ସେ ମଧ୍ୟ ସେଠାରେ ଏସ୍. ଡ଼ି. ଓ. ଥିଲେ ।
ଖୋର୍ଦ୍ଧାର ସେକେଣ୍ଡ ଅଫିସର ସେତେବେଳେ ବେଶ ଭଲ ପୋଷ୍ଟ । ଆଗରୁ
ସ୍ୱନାମଧନ୍ୟ ଶ୍ରୀଯୁକ୍ତ ଦୁର୍ଗାଚରଣ ଦାସ ସେଠାରେ ସେକେଣ୍ଡ ଅଫିସର ଥିଲେ ।
ତାଙ୍କ ନାମ ଶୁଣିଲେ ଲୋକେ ଥରହର ହେଉଥାନ୍ତି । ସେତେବେଳେ ମୁଁ ଓ ମାୟାଧର
ସେଠା ହାଇସ୍କୁଲରେ ପଢ଼ୁଥିଲୁ । ମାୟାଧର ସେତେବେଳେ କିଶୋର, ଭାବପ୍ରବଣ
ଓ କବି । କିଶୋରସୁଲଭ ଚପଳତା ଯୋଗୁ ସେ ଦୁର୍ଗାଚରଣ ବାବୁଙ୍କର ଅପ୍ରୀତି-
ଭାଜନ ହୋଇଥିଲେ ଏବଂ ସେ ମୋ ସାଙ୍ଗରେ ଏମ୍. ଏ. ପଢ଼ୁଥିବାବେଳେ
ସବ୍‌ଡେପୁଟି ଭାବରେ ମନୋନୀତ ହୋଇଥିଲେ ମଧ୍ୟ ପ୍ରତିକୂଳ ପୋଲିସ ରିପୋର୍ଟ
ଯୋଗୁଁ କାର୍ଯ୍ୟରେ ଯୋଗ ଦେଇ ପାରିଲେ ନାହିଁ । ସେହି ବର୍ଷ ଶରତଚନ୍ଦ୍ର
ଦାସ ମଧ୍ୟ ସବ୍‌ଡେପୁଟି ଭାବେ ମନୋନୀତ ହୋଇ ଆଖିଦୋଷ ଯୋଗୁଁ କଟିଗଲେ ।
ସ୍ୱନାମଧନ୍ୟ ହରିହର ମହାପାତ୍ର ମଧ୍ୟ ଡେପୁଟି ପୋଷ୍ଟ ସକାଶେ ପ୍ରାର୍ଥୀ ଥିଲେ ।
ଜୀବନରେ ତାଙ୍କର ଆହୁରି ବହୁତ ଉପରକୁ ଉଠିବାକୁ ଥିଲା । ତେଣୁ ସେ

ନିଜକୁ ଧନ୍ୟବାଦ ଦେଉଥିବେ ଯେ ସେ ଡେପୁଟି କଲେକ୍ଟର ହୋଇପାରିଲେ ନାହିଁ । ଆମେ ପଢ଼ିଲାବେଳେ ତାଙ୍କୁ ଦେଖିଛୁ । ଗୋରା ତକତକ ଚେହେରା । ଚାଲିଚଳଣିରୁ ଜଣାପଡ଼େ ଯେପରି କି ଖଣ୍ଡେ ଅଗ୍ନିକଣା । କଥା କହିଲାବେଳେ କି ଓଡ଼ିଆ କି ଇଂରାଜୀ ପାଟିରେ ବାଝିଲା ବାଜେ ନାହିଁ । ଏପରି ପ୍ରତିଭାଶାଳୀ ଜଣେ ବ୍ୟକ୍ତି ଡେପୁଟି କଲେକ୍ଟରଟିଏ ହୋଇଥିଲେ ଦେଶ ପ୍ରତି ଗୋଟିଏ କ୍ଷତି ହୋଇଥାନ୍ତା ।

ମୁଁ ଖୋର୍ଦ୍ଧା ଆସି ମୋର ଆଗରୁ ଯେଉଁ ବିରାଟ ବ୍ୟକ୍ତିମାନେ ସେକେଣ୍ଡ ଅଫିସର ଥିଲେ ସେମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କାର୍ଯ୍ୟ ଆରମ୍ଭ କଲି । ମୋର କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ସରକାର କିଛି ଦିନ ମୋତେ ସେଠାରେ ଏସ୍. ଡ଼ି. ଓ. ଭାବରେ ନିଯୁକ୍ତ କଲେ । ସେତେବେଳେ କାର୍ତ୍ତିକବାବୁ ବାଲେଶ୍ୱର କଲେକ୍ଟର ହୋଇ ଗଲେ । ସେଠି ଥିଲାବେଳେ ମୁଁ କେତେକ ପଟ୍ରୋମାନଙ୍କରେ ଡ୍ରାଇଭିଂ ଶିଖିଲି । ମୁଁ ଥିଲି ବାଣପୁରର ଓ ଖୋର୍ଦ୍ଧାର ପିଲା । ସେ ଇଲାକାର ସେକେଣ୍ଡ ଅଫିସର ଏବଂ ଏସ୍. ଡ଼ି. ଓ. ହେବାରୁ ପୁରୁଣା ସାଙ୍ଗମାନେ ବଡ଼ ଖୁସି ଥିଲେ । ମୋର ମନ ମଧ୍ୟ ବଡ଼ ପ୍ରଫୁଲ୍ଲ ଥିଲା ।

ଖୋରଧା ରହଣି ମଧ୍ୟରେ ଗୋଟିଏ ଘଟଣା ଏଠାରେ ଲେଖିବାକୁ ହେବ, ଯାହାଲାଗି ଭବିଷ୍ୟତ ଜୀବନରେ ମୋତେ ବନ୍ଧୁତା ଓ ସହାନୁଭୂତି ହରାଇବାକୁ ପଡ଼ିଥିଲା । ସେ ହେଉଛନ୍ତି ଗୋଦାବରୀଶବାବୁଙ୍କର ଡ୍ରାଇଭର ଗୋପୀନାଥ ମିଶ୍ର ଯେ କି ମୋର ଜଣେ ଆତ୍ମୀୟ । ତାଙ୍କ ନାମରେ ଗୋଟିଏ ଫସଲରକ୍ଷା ବନ୍ଧୁକ ଓ ଲାଇସେନ୍ସ ଥାଏ । କିନ୍ତୁ ଏହି ଲାଇସେନ୍ସ ବଳରେ ସେ ଓ ଏପରି ଲାଇସେନ୍ସ ପାଇଥିବା ଲୋକେ ଏହାର ଅସଦ୍ ବ୍ୟବହାର କରି ବେପରୁଆରେ ଶିକାର କରନ୍ତି । ତେଣୁ ମୁଁ ଗୋପୀନାଥଙ୍କୁ ଲାଇସେନ୍ସଟି ଫସଲରକ୍ଷା ଓ ଶିକାର ଉଭୟ ସକାଶେ ନେବାକୁ କହିଲି । ଫସଲରକ୍ଷା ଲାଇସେନ୍ସରେ କିଛି ଫିସ୍ ଦେବାକୁ ପଡ଼େ ନାହିଁ । ତେଣୁ ଏହା କରିବାକୁ ସେ କୁଣ୍ଠିତ ଥିଲେ ଏବଂ ମୁଁ ଏଥିରେ ଜୋର ଦେଇଥିବାରୁ ସେ ମୋ ପ୍ରତି ଅସନ୍ତୁଷ୍ଟ ଥିଲେ । ଭବିଷ୍ୟତରେ ଗୋଦାବରୀଶବାବୁ ଯେତେବେଳେ ମନ୍ତ୍ରୀ ହେଲେ ମୁଁ ତାଙ୍କଠାରୁ କୌଣସି ଆନୁକୂଲ୍ୟତା ପାଇ ପାରି ନ ଥିଲି । ଗୋଦାବରୀଶବାବୁ ନିଜେ ମହତ୍ ଓ ଉଦାର । ସେ ଏ କଥାକୁ ଆଦୌ ମନରେ ରଖନ୍ତେ ନାହିଁ; କିନ୍ତୁ ତାଙ୍କ ପାଖରେ ଆମର ଯେଉଁ ବନ୍ଧୁ ଗୋପୀନାଥ ଥିଲେ ସେ ଏହି ଖୋର୍ଦ୍ଧା ଘଟଣାକୁ ଗୋଦାବରୀଶବାବୁଙ୍କ ମନରେ ସବୁବେଳେ ସଜାଗ ରଖିବାକୁ ଚେଷ୍ଟା କରୁଥିଲେ ।

ଖୋର୍ଦ୍ଧା କିନ୍ତୁ ଆଇ. ସି. ଏସ. ସବ୍‌ଡ଼ିଭିଜନ । ତେଣୁ ମୁଁ ସେଠାରେ ଚାରିମାସରୁ ବେଶୀ ଏସ. ଡ଼ି. ଓ. ରହିପାରିଲି ନାହିଁ । କେ. ଏସ୍. ଭି. ରମନ ନାମରେ ଜଣେ ଆଇ. ସି. ଏସ. ଆସି ମୋ ଠାରୁ ଚାର୍ଜ ନେଲେ ଓ ମୁଁ ଡେପୁଟି କଲେକ୍ଟର ଭାବରେ ପୁରୀ ସଦରକୁ ବଦଳି ହେଲି । ଖୋରଧାରେ ଥିଲାବେଳେ ମୋର ବଡ଼ପୁଅ ଶରତକୁମାର ଜନ୍ମଲାଭ କରିଥିଲା । ତା ଆଗରୁ ପ୍ରଥମ ଦୁଇଟି ଝିଅ ଜନ୍ମ ହୋଇଥାନ୍ତି । ପ୍ରଥମ ପୁଅ ହେବାରୁ ସମସ୍ତେ ଖୁସି ଥିଲେ । ପୁରୀ ଯାଇ ବାଲୁଖଣ୍ଡରେ ଖଣ୍ଡେ ଘର ଭଡ଼ା ନେଇ ଆରାମରେ ରହିଲି । ସେତେବେଳେ ଏମ୍. ଏଚ୍. ରାଓ ଆଇ. ସି. ଏସ. କଲେକ୍ଟର ଥାନ୍ତି । ତାଙ୍କର ଚେହେରା ଯେପରି ସୁନ୍ଦର, ସ୍ୱଭାବ ମଧ୍ୟ ସେପରି ମଧୁର । କାମରେ ମଧ୍ୟ ସେପରି ଧୁରନ୍ଧର । ସେ ପରେ ବିହାରରେ ଚିଫ୍ ସେକ୍ରେଟେରୀ ହେଲେ ଏବଂ ବମ୍ବେର ହେଭି ଇଞ୍ଜିନିୟରିଂ କର୍ପୋରେସନର ଚେୟାରମ୍ୟାନ ହେଲେ ।

ପୁରୀରେ ଥିଲାବେଳେ ମୁଁ କେତୋଟି ଗୁରୁତ୍ୱପୂର୍ଣ୍ଣ ଫୌଜଦାରୀ କେଶ୍ ବିଚାର କରିଥିଲି । ଗୋଟିଏ ହେଉଛି ଉତ୍ତରପାର୍ଶ୍ୱ ମହନ୍ତ ବିରୁଦ୍ଧରେ ତାଙ୍କ ରକ୍ଷିତା ସ୍ତ୍ରୀ ନୟନା ଦେବୀଙ୍କର ୩୨୩ ଦଫା କେଶ୍ । ଡାକ୍ତର ସାର୍ଟିଫିକେଟ ନ ଥିଲା । ଶୁଣାକଥା ଛଡ଼ା ମାଡ଼ର କିଛି ପ୍ରମାଣ ନ ଥିଲା । ତେବେ ଏ କଥା ନିଶ୍ଚୟ ଯେ ମହନ୍ତ ମହାରାଜ ତାଙ୍କ ରକ୍ଷିତା ସ୍ତ୍ରୀକୁ ଜୋର ଜବରଦସ୍ତ ମଠରୁ ବାହାର କରି ଦେଇଥିଲେ । ରକ୍ଷିତା ସ୍ତ୍ରୀର ଭରଣପୋଷଣ ସକାଶେ ଆଇନରେ କୌଣସି ବ୍ୟବସ୍ଥା ନାହିଁ । ମହନ୍ତ ମହାରାଜଙ୍କୁ ଉତ୍ୟକ୍ତ କରିବାକୁ ଏହି ଫୌଜଦାରୀ କେଶ୍ କରାଯାଇଥିଲା । ସେ କେଶ୍ ମୋ କୋର୍ଟକୁ ବିଚାର ହେବାକୁ ଆସିଲା । ଏପରି ଅଧିକାଂଶ କେଶ୍ କଲମ ଇଖ୍ତାର ବେଳେ ଖାରଜ ହୋଇଯାଏ ବା ବିଚାର ପରେ ଖଲାସ ହୋଇଯାଏ । ଏପରି କେଶ୍ ଖଲାସ ହେବାର କଥା । ମହନ୍ତ ମହାରାଜଙ୍କ ଓକିଲ ଥିଲେ ସ୍ୱନାମଧନ୍ୟ ହରେକୃଷ୍ଣ ରାୟ ଏବଂ ନୟନାଦେବୀଙ୍କର ଓକିଲ ଥିଲେ ସେହିପରି ସ୍ୱନାମଧନ୍ୟ ମାନଧାତା ଗୋରାଚାନ୍ଦ ପଟ୍ଟନାୟକ । କେଶ୍ ବିଚାରବେଳେ କଚେରୀରେ ବହୁତ ଭିଡ଼ ହୁଏ । ପ୍ରଥମେ ବାଦବିବାଦ ହେଲା ଯେ ମହନ୍ତ ମହାରାଜ ଠିଆହେବେ ନା ତାଙ୍କୁ ବସିବାକୁ ଦିଆଯିବ । ଯଦି ବସିବାକୁ ଦିଆଯିବ ଡକ୍ ଭିତରେ ନା ବାହାରେ । ମହନ୍ତ ମହାରାଜ ପ୍ରୌଢ଼ ଏବଂ ସ୍ଥୂଳକାୟ ବ୍ୟକ୍ତି । ଦୀର୍ଘ ବିଚାର ସମୟରେ ତାଙ୍କ ପକ୍ଷେ ଠିଆହେବା ଅସମ୍ଭବ । ତେଣୁ ମୁଁ ହୁକୁମ କଲି, ସେ ବସିବେ । ତେବେ କେଉଁଠାରେ

ବସିବେ ? ଏ ବିଷୟରେ ମୁଁ ହୁକୁମ କଲି ଯେ, ୧୮ ଉକ୍ ଭିତରେ ବସିବେ । ଏହି ହୁକୁମରେ ସମସ୍ତେ ସନ୍ତୁଷ୍ଟ ହେଲେ । କେଶ୍ ଚାଲିଲା । ପଦ ପଦକେ ଉଭୟ ପକ୍ଷର ଓକିଲମାନେ ହାଇକୋର୍ଟକୁ ଯିବା ସକାଶେ ଧମକଉଥାନ୍ତି । ତେଣୁ ମୁଁ ସେମାନଙ୍କୁ ଲମ୍ବା ଉତ୍ତର ଦେଲି । ଯେତେ ଲମ୍ବା ଜେରା କରିବାକୁ ଚାହିଁଲେ ଅନୁମତି ଦେଲି; କିନ୍ତୁ ଏହି ରକମର କେଶ୍ ଯେ ସାଧାରଣତଃ ଖଲାସରେ ପରିଣତି ପାଏ, ତାହା ଏଠି ହେବାର ନ ଥିଲା । ଏ କେଶ୍ ଖଲାସ କରିଦେଲେ ଜନମତ ହେବ ଯେ ମୁଁ ଟଙ୍କା ଖାଇଗଲି । ପ୍ରଭାବଶାଳୀ ଲୋକମାନଙ୍କ ବିରୁଦ୍ଧରେ କେଶ୍ ଖଲାସ ହୋଇଗଲେ ଏହି ଲୋକାପବାଦର ଭୟ ଅଛି ଏବଂ ସେତେବେଳେ ମାଜିଷ୍ଟ୍ରେଟ୍‌ମାନଙ୍କର ନଜର ଚରିତ୍ର ବିଷୟରେ ଲୋକମତ ସକାଶେ ବଡ଼ ଦୃଷ୍ଟି ଥାଏ । ଏପରି କେତେଟା କେଶ୍‌ରେ ଦଣ୍ଡ ହୋଇଗଲେ ଉପର କୋର୍ଟରେ ଖଲାସ ହୋଇଗଲା ବୋଲି ମାଜିଷ୍ଟ୍ରେଟ୍‌ର ରେକର୍ଡ଼ ଉପରେ କିଛି ଆଞ୍ଚ ଆସିବ ନାହିଁ; କିନ୍ତୁ ତାଠାରୁ ବେଶୀ କ୍ଷତି ହେବ ପ୍ରଥମରୁ ଖଲାସ ହୋଇଗଲେ ଲୋକମାନଙ୍କର ଯେଉଁ ସନ୍ଦେହ । ତେଣୁ ଏହି କେଶ୍‌ରେ ମୋତେ ୨୦୦ ଟଙ୍କା ଜୋରିମାନା କରିବାକୁ ପଡ଼ିଲା । ଶେଷରେ ଉପର କୋର୍ଟରେ ଉଭୟ ପକ୍ଷ ମିଳାମିଶା ହୋଇଗଲେ ।

ଆଉ ଗୋଟିଏ ପ୍ରଧାନ ଫୌଜଦାରୀ କେଶ୍ ଥିଲି ଉସୁନା ବରପଦାର । ଏଟା ଗୋଟିଏ ବ୍ରାହ୍ମଣ ଗାଁ—କଟକ ରେଭେନ୍‌ସା କଲେଜର ସେକାଳର ଲାଇବ୍ରେରିୟାନ ଶ୍ରୀଯୁକ୍ତ ଦାମୋଦର ମିଶ୍ରଙ୍କ ଗାଁ । ଏ ଗାଁର ବ୍ରାହ୍ମଣମାନେ ଦୁଇଭାଗ ହୋଇ ଅନେକ ସମୟରେ ବାଡ଼ିଆପିଟା ମୁଣ୍ଡ ଫଟାଫଟି ହୁଅନ୍ତି; କିନ୍ତୁ ଆତ୍ମରକ୍ଷା ଆଦି ସଫେଇ ଦେଇ ଖଲାସ ହୋଇଯାନ୍ତି । ଏହି ଦୁଷ୍ଟ ପ୍ରକୃତିର ବ୍ରାହ୍ମଣମାନଙ୍କର ବାର୍ଷିକ ତମାସାକୁ ବନ୍ଦ କରିପାରିଲେ ଶେଷରେ ସେମାନଙ୍କର ଉପକାର ହେବ ଏବଂ ବାରମ୍ବାର ଯେ କୋର୍ଟର ଅକାରଣ ସମୟ ନଷ୍ଟ ହେଉଛି, ତାର ମଧ୍ୟ ଅବସାନ ହେବ । ମୁଁ ବ୍ରାହ୍ମଣ । ତେଣୁ ବ୍ରାହ୍ମଣମାନେ ଭାବିଲେ ମୁଁ ସେମାନଙ୍କ ଉପରେ ଦୟା କରିବି । ମୁଁ କିନ୍ତୁ ଉଭୟ ପକ୍ଷକୁ ଦଣ୍ଡ ଦେଲି । ଏଥିରେ ସେମାନେ ଅବାକ୍ ହୋଇଗଲେ । ଅପିଲ୍‌ରେ କଣ ହେଲା ମୁଁ ଖବର ରଖିନାହିଁ; କିନ୍ତୁ ପରେ ଏହି ପ୍ରଶଂସା ଶୁଣିଲି ଯେ ମୋ ଯୋଗୁଁ ସେ ଗାଁରେ ଏହି ବାର୍ଷିକ ତମାସା ବନ୍ଦ ହୋଇଗଲା । □□□

## କୋରାପୁଟ ବଦଳି

ପୁରୀରେ ପ୍ରାୟ ଆଠ ମାସ ରହିବା ପରେ ମୋତେ କୋରାପୁଟର ଟ୍ରେଜରି ଅଫିସର ଭାବେ ବଦଳି କରାଗଲା । ସେତେବେଳେ କୋରାପୁଟ ନୂଆ କରି ଓଡ଼ିଶାରେ ମିଶିଥାଏ ଏବଂ ସେଠାକୁ ଯେ ଯାଏ ସେ ଆଉ ଜୀବନ୍ତ ଅବସ୍ଥାରେ ଫେରିବ ନାହିଁ, ଏହି ଧାରଣା ଥାଏ । ନବରଙ୍ଗପୁରର ପ୍ରଥମ ଏସ୍. ଏ. ଏଜେଣ୍ଟ ଶଚୀ ମିଶ୍ର ଅଳ୍ପଦିନ ସକାଶେ ଯାଇ ଆଉ ଗଲେ ନାହିଁ । ଦ୍ୱିତୀୟ ଏସ୍. ଏ. ଏଜେଣ୍ଟ ଦୟାନିଧି ପଟ୍ଟନାୟକ କାର୍ଯ୍ୟରେ ଯୋଗଦେଲେ ନାହିଁ । ମୋର ଯେତେବେଳେ ଯେଉଁଠାକୁ ବଦଳି କରାଯାଇଛି, ମୁଁ କେବେହେଲେ ଆପତ୍ତି କରିନାହିଁ । ତିନି ବର୍ଷ ମଧ୍ୟରେ ମୋତେ ଯାଜପୁର, କେନ୍ଦ୍ରାପଡ଼ା, ଛତ୍ରପୁର, ଖୋରଧା, ପୁରୀ, କୋରାପୁଟ ଏବଂ ଶେଷରେ ନବରଙ୍ଗପୁର ଯିବାକୁ ପଡ଼ିଲା । ମୋର କିଛି ଦୁଃଖ ବା ଆପତ୍ତି ନ ଥିଲା । ପ୍ରଥମ ଚାକିରି-ଜୀବନରେ ନୂଆ ନୂଆ ଜାଗା ଦେଖିବାକୁ ମୋର ଭାରି ଆଗ୍ରହ ହେଉଥିଲା । ପାହାଡ଼ସଂକୁଳ କୋରାପୁଟ ଜିଲ୍ଲାକୁ ଯିବାକୁ ମୋର ବେଶୀ କୌତୂହଳ ଥାଏ । ମୁଁ ଗଲି ଫେବୃୟାରୀ ମାସରେ । ସେତେବେଳକୁ କୋରାପୁଟରେ ଖୁବ୍ ଶୀତ । ଗରମ ପାଣିରେ ନ ଗାଧୋଇଲେ ଉପାୟ ନାହିଁ । କୋରାପୁଟରେ ଦୁଇ ମାସ ରହିବାପରେ ରତ୍ନାକର ଷଡ଼ଙ୍ଗୀ ସେଠାକୁ ଟ୍ରେଜରି କାର୍ଯ୍ୟରେ ଆସିଲେ ଏବଂ ମୁଁ ନବରଙ୍ଗପୁର ଏସ୍. ଏ. ଏଜେଣ୍ଟ ହୋଇ ଗଲି । ସେତେବେଳେ ଏହି ଡିଭିଜନର ଆୟତନ ଥିଲା ୮ ହଜାର ବର୍ଗମାଇଲ । ବର୍ତ୍ତମାନ ଏହି ଡିଭିଜନରୁ ଚାରିଗୋଟି ଡିଭିଜନ ହେଲାଣି; ଯଥା—ନବରଙ୍ଗପୁର, କୋରାପୁଟ, ଜୟପୁର ଏବଂ ମାଲକାନଗିରି । ସେତେବେଳକୁ ଏଗୁଡ଼ିକ ଗୋଟିଏ ଗୋଟିଏ ତାଲୁକା ଥିଲା । ସେତେବେଳର ପ୍ରଥା ଅନୁସାରେ କଲେକ୍ଟର ବା ଏଜେଣ୍ଟ ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ, ସେସନ୍ସ ଜଜ୍ ଏବଂ ସମସ୍ତ ବିଭାଗର ସର୍ବେସର୍ବା । ଏସ୍. ଏ. ଏଜେଣ୍ଟମାନେ ଥିଲେ ତାଲୁକାବୋର୍ଡ଼ର ଚେୟାରମ୍ୟାନ, ଆସିଷ୍ଟାଣ୍ଟ ସେସନ୍ସ ଜଜ୍ ଓ ତାଙ୍କ ଇଲାକାରେ ସମସ୍ତ ବିଭାଗର ସର୍ବେସର୍ବା । ଏହି ଅଖଣ୍ଡ କ୍ଷମତା ପାଇ ବେଶ୍ ଖୁସି ଲାଗିଲା । ତାପରେ ଏତେ ବଡ଼ ଇଲାକାର ଅଧିକାରୀ ଥିବାରୁ ମନ ବଡ଼ ଫୁର୍ତ୍ତି ଥାଏ । କିନ୍ତୁ ଓଡ଼ିଶା ଅଲଗା ପ୍ରଦେଶ ହେବାର ୩ ବର୍ଷ ମଧ୍ୟରେ ଏହି

ଡିଭିଜନରେ କିଛି କାମ ହୋଇ ନ ଥାଏ । ସବୁ କେଶ ବାକି ପଡ଼ିଥାଏ । ପ୍ରଥମେ ପ୍ରଥମେ ଏହି ସବୁ ବାକି କେଶ୍ ଫୈସଲା କରିବାକୁ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ିଲା । ନବରଙ୍ଗପୁରରେ ଗୋଟିଏ ଭଡ଼ା ଘର ମୋର ବଙ୍ଗଳା ଥାଏ । ସବୁ ଜିନିଷପତ୍ର ଶସ୍ତା । ଜହ୍ନି, ଭେଣ୍ଡି, କଲରା ଯେକୌଣସି ପରିବା ହାତେ ଲମ୍ବାରୁ କମ୍ ନୁହେ । କୁକୁଡ଼ାଗୁଡ଼ାକ ଗୋଟାକୁ ଚାରଣା ଏବଂ ଅଣ୍ଡା ଟଙ୍କାକୁ କୋଡ଼ିଏଟା । ମାଲକାନଗିରିରେ ଘିଅ ତିଣ ଷୋଳ ଟଙ୍କା । ସେତି କାର୍ଯ୍ୟରେ ଯୋଗ ଦେଲାବେଳେ ମୋର କାର୍ ନ ଥାଏ । ବାସ୍‌ରେ ଯିବା ଆସିବା କରୁଥାଏ । ମୁଁ ଥରେ ସୁଦୂର ମାଲ୍‌କାନଗିରିରେ ଦୌରା କରୁଥିଲି । ନାଇବ୍ରଦର୍ସର ଜଣେ ଭାଇ ଗୋଟିଏ ଫୋର୍ଡ଼ ଗାଡ଼ି ନେଇ ମୋ ପାଖରେ ପହୁଞ୍ଚିଲେ । ମୁଁ ତାକୁ ସଙ୍ଗେ ସଙ୍ଗେ ସାତଶ ଟଙ୍କା ଦେବ ବୋଲି ପ୍ରତିଶ୍ରୁତି ଦେଇ କିଣିଲି । ସେ ଗାଡ଼ି ବର୍ଷେ ବ୍ୟବହାର କଲି; କିନ୍ତୁ ସେ ବଡ଼ ହଇରାଣ କଲା । ତା ପରେ ମୋର ବନ୍ଧୁ ଜୟପୁରର ଆସିଷ୍ଟାଣ୍ଟ ଦେବାନଙ୍କ ଆନୁକୂଲ୍ୟରେ ଓ୍ୱାଇଜାଗରୁ ଆଉ ଗୋଟିଏ ସପ୍ତସିଟ୍‌ବିଶିଷ୍ଟ ଲିମୋଜିନ ମଡ଼େଲ୍ ଚେଭ୍ରଲେଟ୍ ଗାଡ଼ିଟିଏ କିଣିଲି । ଦାମ୍ ପଚାଶିଶ' ଟଙ୍କା । ସେହି ଗାଡ଼ି ଆମ ଖଲ୍ଲିକୋଟ ରାଜାଙ୍କର ଥିଲା । ଦେଖିବାକୁ ବଡ଼ **aristocratic** । ସେଥିରେ ପୂରା ଡ୍ରାଇଭିଙ୍ଗ ଶିଖିଲି ଏବଂ ଆରାମରେ ମୋର ପ୍ରଶସ୍ତ ଇଲାକାରେ ବୁଲିଲି । ଏହି ଗାଡ଼ିକୁ ମୁଁ ୧୭ ବର୍ଷ ବ୍ୟବହାର କଲି ।

ଏହି ଇଲାକାରେ ମାଲେରିଆର ପ୍ରକୋପ । ଯୁଆଡ଼େ ଯିବ ପାହାଡ଼, ଜଙ୍ଗଲ, ଘାଟି ଏବଂ ଝରଣା । ଏହି ଇଲାକାର ଏମୁଣ୍ଡ ସେମୁଣ୍ଡକୁ ଲମ୍ବା ଦୁଇଶ' ମାଇଲ । ଏହି ସୁରମ୍ୟ ଦେଶରେ କାର୍‌ରେ ଯାଇ ପାହାଡ଼ ଉପରେ ଅବସ୍ଥିତ ଡାକବଙ୍ଗଳାରେ ରହିବାକୁ ଖୁବ୍ ଭଲ ଲାଗେ । ଏପରି ମନୋରମ ଇଲାକାକୁ ଆସିବାକୁ ଯେଉଁମାନେ ଡରୁଥିଲେ, ସେମାନଙ୍କ ଉପରେ ମୋର ଦୟା ହେଉଥାଏ । ପ୍ରଥମ ବର୍ଷ ମୁଁ ମ୍ୟାଲେରିଆକୁ ଆଦୌ ଭ୍ରୂକ୍ଷେପ କଲିନାହିଁ । ସେ ବର୍ଷ ଭଲଭାବରେ ଗଲିଗଲା; କିନ୍ତୁ ଦ୍ୱିତୀୟ ବର୍ଷକୁ ମ୍ୟାଲେରିଆ ଧରିଲା । ଜ୍ୱର ଟିକିଏ ଟିକିଏ ରହୁଥାଏ; ଆଦୌ ଭଲ ହୁଏନାହିଁ । ଏପରି ହେଲେ, ସମସ୍ତେ କହିଲେ କାଲାଜ୍ୱର ହେବ ବୋଲି । ମୁଁ ମଧ୍ୟ ବଡ଼ ବ୍ୟସ୍ତ ହୋଇପଡ଼ିଲି । ଆଟେବ୍ରାଇନ ଖାଇ ଖାଇ ଦେହ ହଳଦିଆ ପଡ଼ିଗଲା । ଶେଷରେ କୁଇନୋ ହୋମୋଜିନ ଖାଇ ଭଲ ହେଲା । ତୃତୀୟବର୍ଷ ଆଉ ଜ୍ୱର ହେଲାନାହିଁ ।

ମୁଁ ନବରଙ୍ଗପୁରରେ ଥିଲାବେଳେ ଯେଉଁମାନେ ଓଡ଼ିଶାର ଭବିଷ୍ୟତ

ଜୀବନରେ ଉଚ୍ଚସ୍ଥାନ ଅଧିକାର କରିବେ, ସେମାନଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କରେ ଆସିଥିଲି । ସେଥିରୁ ପ୍ରଥମ ହେଉଛନ୍ତି ଶ୍ରୀଯୁକ୍ତ ସଦାଶିବ ତ୍ରିପାଠୀ । ତାଙ୍କ ଘର ନବରଙ୍ଗପୁର ଟାଉନରେ । ଅବଶ୍ୟ ନବରଙ୍ଗପୁରକୁ ଗୋଟିଏ ଟାଉନ ବୋଲି କୁହାଯାଇ ନ ପାରେ । ଏହା ଗୋଟିଏ ବଡ଼ ଗାଁ । ଆଗରୁ ସଦାଶିବ ବାବୁ ପ୍ରାଇମେରୀ ସ୍କୁଲ ଶିକ୍ଷକ ଥିଲେ । ତାହା ଛାଡ଼ି ଦେଇ ସେ ସର୍ବସାଧାରଣ କାର୍ଯ୍ୟରେ ଯୋଗ ଦେଇଥାନ୍ତି । ସେ ଥାନ୍ତି ତାଲୁକାବୋର୍ଡ଼ର ମେମ୍ବର, ଯାହାର ସଭାପତି ମୁଁ ଥିଲି । ଏହି ତାଲୁକାବୋର୍ଡ ସବ୍‌ଡ଼ିଭିଜନସ୍ଥ ସମସ୍ତ ପ୍ରାଇମେରୀ ସ୍କୁଲ, ଡାକ୍ତରଖାନା ଓ ଷ୍ଟ୍ରେଟ ଷ୍ଟ୍ରେଟ ଟାଉନର କେତେ ରାସ୍ତାର ତତ୍ତ୍ୱାବଧାନ କରେ । ଏହି ଇଲାକାରେ ଲୋକମାନେ ସାଧାରଣତଃ ଅଶିକ୍ଷିତ ଓ ନିରକ୍ଷର ଥିବାରୁ ପ୍ରାଇମେରୀ ସ୍କୁଲର ଶିକ୍ଷକ ସେ ଇଲାକାର ନେତୃତ୍ୱ ନେଇଥାଏ । ସରକାରୀ ବା ବେସରକାରୀ ଅନୁଷ୍ଠାନମାନଙ୍କୁ ଯେତେ ଦରଖାସ୍ତପତ୍ର ସେ ଲେଖେ ଏବଂ ସ୍ଥାନୀୟ ବାଦବିସମ୍ବାଦରେ ମଧ୍ୟ ସେ ଭାଗ ନିଏ । ତେଣୁ ଏହି ଶିକ୍ଷକମାନଙ୍କୁ ନିତାନ୍ତପକ୍ଷରେ ୩ ବର୍ଷରେ ଥରେ ବଦଳି କରିବା ଆବଶ୍ୟକ । ମୁଁ ଯାଇ ଯେତେବେଳେ ଏହି ନିୟମକୁ କଡ଼ାକଡ଼ ଭାବରେ ପ୍ରୟୋଗ କରିବାକୁ ଚେଷ୍ଟା କଲି, ମୋତେ ବହୁତ ବିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ପ୍ରଭାବଶାଳୀ ଶିକ୍ଷକମାନେ ଯିବାକୁ ଆଦୌ ରାଜି ହେଲେ ନାହିଁ; ଡାକ୍ତର ସାର୍ଟିଫିକେଟ୍ ଏବଂ ବହୁତ ଆଳରେ ହୁକୁମ ଅମାନ୍ୟ କରିବାକୁ ଚେଷ୍ଟା କଲେ । ତା ପରେ ମାଲକାନଗିରି, ମୋଟୁ ଭଳିଆ ଭିତର ଜାଗାକୁ ଶିକ୍ଷକମାନେ ଯିବାକୁ ରାଜି ହୁଅନ୍ତି ନାହିଁ । ଏହି ଇଲାକାର ଅଧିକାଂଶ ଶିକ୍ଷକ ବାହାରର ବିଶେଷତଃ ଗଞ୍ଜାମ ଜିଲ୍ଲାର । ସେମାନଙ୍କ ମଧ୍ୟରୁ ଯେଉଁମାନେ ସହରରେ ରହିଯାଇଥିଲେ, ସେମାନେ ମଫସଲକୁ ବା ଭିତର ଇଲାକାକୁ ଯିବାକୁ ନାରାଜ । ଏମାନଙ୍କ ମଧ୍ୟରେ ହୁକୁମ ପ୍ରତି ସମ୍ମାନ ଜନ୍ମାଇବାକୁ କାଠିକର ପାଠ ହେଉଥିଲା । ମୁଁ ଏଠି ଥିଲାବେଳେ ପୋଷ୍ୟପୁତ୍ର ହୋଇଯାଇଥିବା ମୋର ଭାଇ ବୀରଭଦ୍ର ମିଶ୍ର ଟ୍ରେନିଂ ପାସ୍ କରି ଏଠାକୁ ଆସି ପ୍ରାଇମେରୀ ସ୍କୁଲର ଶିକ୍ଷକତା କଲେ । ପରେ ପରେ ମୋର ନବରଙ୍ଗପୁରରୁ ବଦଳି ହେଲାପରେ ସେ ଗଞ୍ଜାମ ଜିଲ୍ଲାକୁ ଯାଇ ଶିକ୍ଷକତା କଲେ । ନବରଙ୍ଗପୁରରେ ଥିଲାବେଳେ ଜୟପୁରର ଦୁଇଜଣ ବନ୍ଧୀ ୧ ଉତ୍କଳ ଶ୍ରୀ ଜଗନ୍ନାଥ ରାଓ ଓ ଶ୍ରୀ ବାଳକୃଷ୍ଣ ପାତ୍ରଙ୍କର ଘନିଷ୍ଠ ସଂପର୍କରେ ଆସିଥିଲି । ସେମାନେ ନବରଙ୍ଗପୁରରେ ଓ ମୋର କ୍ୟାମ୍ପ କୋର୍ଟ ଜୟପୁରରେ ବରାବର ଆସି ଓକିଲାତି କରୁଥାନ୍ତି । ଏହି ଉଦ୍ୟମମାନ୍ ଯୁବକଦ୍ୱୟ ପରେ

ଯଥାକ୍ରମେ କେନ୍ଦ୍ର ମନ୍ତ୍ରୀ ଓ ହାଇକୋର୍ଟ ଜଜ୍ ହେଲେ ।

ମୁଁ କୋରାପୁଟ ଗଲାବେଳେ ସେଠାର କଲେକ୍ଟର ଥିଲେ ମିଷ୍ଟର ଆଲଡ଼ରସନ୍ । ସେ ସ୍ଥଳବାଣୀ ଏସ. ଏ. ଏଜେଣ୍ଟ ପଦରୁ ଆସି କଲେକ୍ଟର ହୋଇଥିଲେ । ଆଙ୍ଗ୍ଲୋଇଣ୍ଡିୟାନ ହୋଇଥିବାରୁ ଇଂରେଜୀ ଲେଖିପାରୁଥିଲେ; କିନ୍ତୁ ବିଶ୍ୱବିଦ୍ୟାଳୟ ଡିଗ୍ରୀ କିଛି ନଥିଲା । ନିୟମର ବା ଆଇନକାନୁନର ଧାର ଧାରୁନଥିଲେ । ତାଙ୍କ ମତରେ ସାଧାରଣ ଜ୍ଞାନ ଥିଲା ଯଥେଷ୍ଟ; ତେଣୁ ଆଇନ-କାନୁନ ଜାଣିବା ଆବଶ୍ୟକ ନାହିଁ । ଥରେ ସେ ଜଣେ କିରାନିକୁ କେତେକ ଟଙ୍କା ମଞ୍ଜୁର କରିଦେବାକୁ ହୁକୁମ ଦେଲେ । ସେପରି କରିବା ନିୟମର ବ୍ୟତିକ୍ରମ ଥିବାରୁ କିରାନି ପଚାରିଲେ କେଉଁ ହେଡ଼୍‌ରେ ସେ ଟଙ୍କା ଡ୍ର କରିବ । ସେଥିରେ କଲେକ୍ଟର ସାହେବ ରାଗିଯାଇ କହିଲେ, ତୁମ ହେଡ଼୍‌ରେ ଡ୍ର କର । ଏହାଙ୍କ ସଙ୍ଗେ ମୋର ମଝିରେ ମଝିରେ ମଧ୍ୟ ଟିକିଏ ସଂଘର୍ଷ ହେଉଥିଲା । ଏପରି କରିବା ମୋର ଉଚିତ ନଥିଲା; କାରଣ ଚାକିରିରେ ଉନ୍ନତି ନିମନ୍ତେ ଉପରିସ୍ଥ ହାକିମ କଲେକ୍ଟରଙ୍କ ଅନୁକୂଳ ମତ ଖୁବ ଆବଶ୍ୟକ । କିନ୍ତୁ ଶତ ଚେଷ୍ଟା ସତ୍ତ୍ୱେ ଅନେକ ସମୟରେ ଏପରି ଅବସ୍ଥା ଉପୁଜେ, ଯେତେବେଳେ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼େ । ଏ ହେଉଛି ଭାଗ୍ୟ । ସେ ଥରେ ମୋର ଗସ୍ତ ଡାଏରି ଉପରେ ମନ୍ତବ୍ୟ ଦେଇ କହିଲେ ଯେ ଏସ. ଏ. ଏଜେଣ୍ଟ ଅର୍ଥାତ୍ ମୁଁ ନବରଙ୍ଗପୁରରୁ ପଟାଙ୍ଗି ଗଲାବେଳେ ମୋର ହେଡ଼କ୍ୱାର୍ଟରରୁ ଦୂରକୁ ଗଲି ଏବଂ ସେହି ରାସ୍ତାରେ ପୁଣି ହେଡ଼କ୍ୱାର୍ଟରକୁ ଫେରିଆସିଲି । ମୁଁ ସେ ଥର ନବରଙ୍ଗପୁରରୁ ଯାଇ ବାଟରେ ଜୟପୁରରେ କ୍ୟାମ୍ପ କରିଥିଲି । ସେଠାରୁ ପଟାଙ୍ଗି ଯାଇ ଜୟପୁର ବାଟେ ଫେରିଆସିଲି; କାରଣ ଫେରିବାର ଅନ୍ୟ ବାଟ ନଥିଲା । ଡାଏରିରେ ଏପରି ମନ୍ତବ୍ୟ ଦେଖି ମୋତେ କଷ୍ଟ ଲାଗିଲା । ମୁଁ ଅବଶ୍ୟ ଚୁପ୍ ରହିଥିଲେ ଭଲ ହୋଇଥାନ୍ତା । କିନ୍ତୁ ସେତେବେଳେ ଚାକିରି ମୋଟେ ସାତବର୍ଷ । ଜୀବନରେ ବେଶୀ ଧକ୍‌କା ପାଇନଥିଲି । ରକ୍ତ ଗରମ ଥିଲା ଏବଂ କଲମରେ ଜୋର ଥିଲା ବୋଲି ମନେ କରୁଥିଲି । ତେଣୁ ତାଙ୍କୁ ଗୋଟିଏ ଜବାବ ଦେଲି ଯେ ପଟାଙ୍ଗିକୁ ଯିବା ସକାଶେ ମୋତେ ହେଡ଼କ୍ୱାର୍ଟରରୁ ଦୂରକୁ ଯିବା ଛଡ଼ା ଅନ୍ୟ ଉପାୟ ନଥିଲା ଏବଂ ଫେରିଆସିବା ସକାଶେ ସେହି ରାସ୍ତା ଛଡ଼ା ଅନ୍ୟ ରାସ୍ତା ନଥିଲା । ସେ ହେଉଛନ୍ତି କଲେକ୍ଟର ସାହେବ, ବୁଢ଼ାଲୋକ; ଆଉ କିଛି ନ ପାଇ ଗୋଟିଏ ଖିଆଲରେ ଦୁଇପଦ ଲେଖିଦେଲେ । ଅବଶ୍ୟ ଏପରି ଲେଖିବାରୁ ମୋର ବୁଝିବା ଉଚିତ ଥିଲା, କଲେକ୍ଟର ସାହେବଙ୍କ ମୋ ଉପରେ ଭଲ ଭାବ

ନାହିଁ । ଥିଲେ ଏପରି ଅଯଥା ମନ୍ତବ୍ୟ କାହିଁକି କରିଥାନ୍ତେ ? ତାହା ନ ବୁଝି ମୁଁ ତାଙ୍କୁ ଆହୁରି ବେଶୀ ଚଟେଇଦେଲି । ଏହା ପରେ ଅଧସ୍ତନ ଗେଜେଟେଡ୍ ଅଫିସରଙ୍କ ଉପରେ ସେ ଯେଉଁ ବାର୍ଷିକ ରିପୋର୍ଟ ଦିଅନ୍ତି, ତାହା ମୋ ବିଷୟରେ ନିଶ୍ଚୟ ଭଲ ହୋଇନଥିବ । ଏଇଟା ବୋଧହୁଏ ହୋଇଥିବ ମୋର ଚରିତ୍ର ଖାତା ( character roll ) ରେ ପ୍ରଥମ ପ୍ରତିକୂଳ ରିପୋର୍ଟ । ତା ଆଗରୁ ମୋର କୌଣସି କଲେକ୍ଟରଙ୍କ ସହ ସଂଘର୍ଷ ହୋଇନଥିଲା ।

ତା ପରେ କୋରାପୁଟ ଏଜେନ୍ସି ଇଲାକା ଏବଂ ପ୍ରତିପତ୍ତିଶାଳୀ ଜୟପୁର ମହାରାଜାଙ୍କ ପୀଠସ୍ଥଳୀ । ଏଠାର ଜଳବାୟୁ ଥଣ୍ଡା ଏବଂ ଦୃଶ୍ୟ ମନୋରମ । କ୍ଷମତା ଖୁବ୍ ବେଶୀ । ତେଣୁ ସାହେବମାନେ ସବୁବେଳେ ଏଠାକୁ କଲେକ୍ଟର ହୋଇ ଆସନ୍ତି । ଆଲ୍ଡରସନ୍‌ଙ୍କ ପରେ ଆସିଲେ ଉଇଲକକ୍ ସାହେବ ଯେ କି ଆଗରୁ ଗଭର୍ଣ୍ଣରଙ୍କ ସେକ୍ରେଟେରୀ ଥିଲେ । ସେ ଖାଣ୍ଟି ସାହେବ ଏବଂ ଗୋରା ଜାତିର ବୋଝ (White man's burden) ବିଷୟରେ ଖୁବ୍ ଅବହିତ ଥିଲେ । ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା ପୋଲିସ ଏବଂ ଜମିଦାରଙ୍କୁ ଘଣ୍ଟ ଘୋଡ଼ାଇ ରଖିବା । କୋରାପୁଟରେ ଏସ. ପି. ମଧ୍ୟ ସବୁବେଳେ ସାହେବ ରହୁଥିଲେ । ସେତେବେଳେ ଜଣେ ଗୋରା ଏସ. ପି. ଥିଲେ ଯେ କି ବଡ଼ ଉଦ୍ଧତ । ଥରେ ମୁଁ ଜୟପୁର କ୍ୟାମ୍ପରେ କୋର୍ଟ କରୁଥିବାବେଳେ ମୋର କୋର୍ଟରୁମ୍‌କୁ ପଶିଯାଇ କହିଲେ ଗୋଟିଏ ୧୪୫ ଦଫା କେଶ୍ କାହିଁକି ଏତେ ଡେରି ହେଉଛି । ସେତେବେଳେ ଜୟପୁରରେ ତହସିଲଦାର ଥାନ୍ତି ବୃନ୍ଦାବନଚନ୍ଦ୍ର ପଟ୍ଟନାୟକ । ସେ ଜୟପୁର ସବ୍‌ଜେଲର ମଧ୍ୟ ସୁପରିଣ୍ଟେଣ୍ଡେଣ୍ଟ ଥାନ୍ତି । ସବ୍‌ଜେଲକୁ ଯାଇ ପୋଲିସ ସାହେବ ସୁପରିଣ୍ଟେଣ୍ଡେଣ୍ଟ ସାମନାରେ କିଛି କଟୁ ମନ୍ତବ୍ୟ ଦେଲେ । ରକ୍ତମାଂସର ଦେହ ଧରି କାଳେ ଚାକିରି-ଜୀବନରେ କିଛି ଆଞ୍ଚ ଆସିବ, ଏହି ଡରରେ ଏପରି ଲୋକଙ୍କର ଔଦ୍ଧତ୍ୟ କେତେ ସହ୍ୟ କରାଯାଇପାରେ । ମୋତେ ଯେତେବେଳେ ପୋଲିସ ସାହେବ ସେ କେଶ୍ କାହିଁକି ଡେରି ହେଉଛି ବୋଲି ପଚାରିଲେ, ମୁଁ କହିଲି, ଆଜ୍ଞା କଲେକ୍ଟର ସାହେବଙ୍କ ଜରିଆରେ ପଚାରନ୍ତୁ । ଏପରି ପ୍ରଶ୍ନର ଉତ୍ତର ସିଧା ପୋଲିସ ସାହେବଙ୍କୁ ଦେବା ଆମର ନୀତିବିରୁଦ୍ଧ । ଉତ୍ତର ଠିକ୍ ଅଛି; କିନ୍ତୁ ସେ ଏଥିରେ ରାଗିଗଲେ । କଲେକ୍ଟର ସାହେବଙ୍କୁ କହିଥିବେ । ଉଭୟେ ସାହେବ ଏବଂ ବନ୍ଧୁ । ଏଥିରେ କଲେକ୍ଟର ସାହେବଙ୍କ ଭାବ ମୋ ପ୍ରତି ନିଶ୍ଚୟ ଖରାପ ହୋଇଥିବ; କିନ୍ତୁ ଉପାୟ କଣ ? ସେହିପରି ଥରେ ଗୋଟିଏ ଟ୍ରକ ଜୟପୁର ଟାଉନର ସଂକୀର୍ଣ୍ଣ ରାସ୍ତାରେ ଗୁଡ଼ିଦେଇ ଡ୍ରାଇଭର

କୁଆଡ଼େ ଖାଇବାକୁ ପଳାଇଥିଲା । ମୁଁ ଆସି ରାସ୍ତାରେ ଅଟକଗଲି । ଡ୍ରାଇଭରକୁ ନ ପାଇ ଟ୍ରକ ନମ୍ବର ଟିପି କେଶ୍ କରିବାକୁ ପୋଲିସକୁ ଦେଲି । ମୁଁ ଜାଣି ନଥିଲି ଯେ ଏହି ଟ୍ରକଟି ଜଗଦଳପୁରରୁ ଆସିଛି ଏବଂ ଏହା ସେଠା ସାହେବଙ୍କର; ଯେ କି କଲେକ୍ଟର ସାହେବଙ୍କ ବନ୍ଧୁ । କଲେକ୍ଟର ମୋତେ ପରେ ପଚାରିଲେ, ମୁଁ କାହିଁକି କେଶ୍ କଲି । ମୁଁ ତାହାର କାରଣ କହିଲି । ଏଥିରେ ସେ ସନ୍ତୁଷ୍ଟ ହେଲେ ନାହିଁ । କେଶ୍‌କୁ ସେ ଉଠାଇନେଲେ ଏବଂ ମୋର ଚରିତ୍ର ଚିଠାରେ ଲେଖିଲେ—ଭାବପ୍ରବଣ ଓ ଅନୁଭୂତିର ଅଭାବ । ଏହା ନିଶ୍ଚୟ ମୋର ଭବିଷ୍ୟତ ଚାକିରି-ଜୀବନରେ ଆଞ୍ଚ ଆଣିଲା ।

ତାପରେ ଆଉ ଗୋଟିଏ ଘଟଣାରେ ମଧ୍ୟ କଲେକ୍ଟର ସାହେବ ଟିକିଏ ଅସନ୍ତୁଷ୍ଟ ହେଲେ । ଜଣେ ପୋଲିସ ଆସିଷ୍ଟାଣ୍ଟ ସବ୍‌ଇନସ୍ପେକ୍ଟରଙ୍କ ବିରୁଦ୍ଧରେ ଅଭିଯୋଗ ହେଲା ଯେ ସେ ଜଳନ୍ତା ସିଗାରେଟ୍‌ଦ୍ୱାରା ଚେଙ୍କ ଦେଇ ଗୋଟିଏ ମୁଦାଲିର ସ୍ୱୀକାରୋକ୍ତି ଜବରଦସ୍ତ ସଂଗ୍ରହ କଲେ । ଏହି ଅଞ୍ଚଳ ମୂଳକରେ ପୁଲିସର ଜୁଲୁମ ବେଶୀ । ମୁଁ ତଦନ୍ତ କରି ଏଥିରେ ସତ୍ୟତା ପାଇ ଆସିଷ୍ଟାଣ୍ଟ ସବ୍‌ଇନ୍‌ସପେକ୍ଟରଙ୍କ ବିରୁଦ୍ଧରେ କେଶ୍ କଲି ଏବଂ ସେ କେଶ୍ ରତ୍ନାକର ଷଡ଼ଙ୍ଗୀଙ୍କୁ ବିଚାର ସକାଶେ ଦେଲି । ସେ ବିଚାର କରି ଦୌରା ସୁପର୍ଦ୍ଦ କଲେ । କଲେକ୍ଟର ସାହେବ ନିଜେ ଦୌରା ଜଜ୍ । ସେ ଆସିଷ୍ଟାଣ୍ଟ ସବ୍‌ଇନ୍‌ସପେକ୍ଟରଙ୍କୁ ଖଲାସ କରିଦେଇ ମୁଦେଇ ନାମରେ ମିଛ କେଶ୍ କଲେ । ସେ କେଶ ବିଚାର କଲେ ଗଞ୍ଜାମ ଜିଲ୍ଲା ଜଜ୍ । ସେ ମକଦ୍ଦମା ମିଥ୍ୟା ବୋଲି ଗ୍ରହଣ କଲେନାହିଁ ଏବଂ ଏଥିରେ ସତ୍ୟତା ଅଛି ବୋଲି ମନ୍ତବ୍ୟ ଦେଲେ । ଶେଷରେ ମୋ ମତ ଠିକ୍ ହେଲା । କିନ୍ତୁ କଲେକ୍ଟର ଯେ ମୋ ଉପରେ ବିଗିଡ଼ି ଖରାପ ରିପୋର୍ଟ ଦେଲେ, ତାହା ମୋ ଭବିଷ୍ୟତ ଜୀବନରେ ଆଞ୍ଚ ଆଣିଲା । ଏହିପରି କୋରାପୁଟରେ ଥିଲା-ବେଳେ ମୋର ଚାକିରି-ଜୀବନ ସୁଖମୟ ନଥିଲା ।

ଏହି ଜିଲ୍ଲାରେ ଥିଲାବେଳେ ମୋତେ ପର୍ବତ-ଅରଣ୍ୟସଂକୁଳ ସର୍ବ-ସାଧାରଣ ଗମନାଗମନରୁ ଦୂର ଇଲାକାରେ ବୁଲିବାକୁ ଭାରି ଭଲ ଲାଗୁଥିଲା । ଆମର ଗସ୍ତ ସମ୍ପର୍କୀୟ ଉପଦେଶାବଳୀରେ ଥାଏ ଯେ କଲେକ୍ଟର ଓ ସବ୍‌ଡ଼ିଭିଜନାଲ ଅଫିସରମାନେ ଅନ୍ତତଃପକ୍ଷେ ବର୍ଷରେ ଦୁଇଥର ଭିତର ଇଲାକାରେ ଗସ୍ତ କରିବେ । ଥରେ ଆଲଡ଼ରସନ୍ ସାହେବ ମୋର ଗସ୍ତ ଡାଏରିରେ ମନ୍ତବ୍ୟ କରିଥିଲେ ଯେ ମୁଁ ବେଶୀ ଭିତରକୁ ଯାଉନାହିଁ । ଏଥିରେ ମନରେ ବିରକ୍ତି ଆସିଲା । ସେତେବେଳେ ନବରଙ୍ଗପୁରରେ ଅନୁଗୁଳର

ଦେହୁରୀ ବୋଲି ଜଣେ ପଣ୍ଡୁଡାକ୍ତର ଥାଆନ୍ତି । ଆଉ ଜଣେ ଯୁବକ ଶିକ୍ଷାବିଭାଗର ଡେପୁଟି ଇନସ୍‌ପେକ୍ଟର । ସେତେବେଳକୁ ମୋର ଭାଇ ରାଧାନାଥ ପାଟନାରେ ଏମ୍. ଏ. ପଢ଼ୁଥାଏ । ସେ ଖରା ଛୁଟିରେ ଆସିଥାଏ । ଆମେ ୪ଜଣ ଚାଲି ଚାଲି କୋରାପୁଟରୁ ଗିଲିଗୁମାବାଟେ ନବରଙ୍ଗପୁର ବାହାରିଲୁ । ଦୂରତା ୧୦୦ମାଇଲ । ୭ ଦିନ ମଧ୍ୟରେ ଯିବାର ପ୍ରୋଗ୍ରାମ କଲୁ । ଏହି ରାସ୍ତା ଖାଲି ପାହାଡ଼ ଦେଇ । ମଝି ମଝିରେ ଆଦିବାସୀ ପରଜା ଜାତିମାନଙ୍କର ଛୋଟ ଛୋଟ ଗାଁ ଖଣ୍ଡେ ଖଣ୍ଡେ ଥାଏ । ବାଟରେ ପ୍ରତି ୭ ମାଇଲରେ ରେଭିନ୍ୟୁ ଡିପାର୍ଟମେଣ୍ଟର ଗୋଟିଏ ଡାକବଙ୍ଗଳା ଥାଏ । ଆମେ ଭୋର ୫ଟାରୁ ବାହାରୁ । ସାଙ୍ଗରେ ପ୍ରାତଃଭୋଜନ ନେଇ ଯାଉଥାଉ । ଦୁଇ ଘଣ୍ଟାରେ ପ୍ରାୟ ୭ ମାଇଲ ଚାଲିଲାପରେ ଗୋଟିଏ ସୁରମ୍ୟ ଝରଣା ପାଖରେ ବସି ପ୍ରାତଃଭୋଜନ କରୁ । ସେଠି ଅଧଘଣ୍ଟାଏ ବିଶ୍ରାମ କରି ଫେରେ ୭ ମାଇଲ ଚାଲି ୧୦।୧୧ଟା ମଧ୍ୟରେ ଆମର କ୍ୟାମ୍ପ ବଙ୍ଗଳାରେ ପହଞ୍ଚୁ । ସେଠି ଗାଧୋଇ-ପାଧୋଇ ଖାଇ ଦିନଯାକ ଆରାମ କରୁ; ତାସ ଖେଳୁ । ତା ଆରଦିନ ସେପରି ବାହାରୁ । ଏହିପରି ୭ ଦିନରେ ଆମେ ନବରଙ୍ଗପୁରରେ ପହଞ୍ଚିଲୁ । ଏହି ପଦଯାତ୍ରା ଏତେ ଆନନ୍ଦଦାୟକ ହୋଇଥିଲା ଏବଂ ଏତଦ୍ଦ୍ୱାରା ଆମେ ପରଜା ଜାତିର ଆଭ୍ୟନ୍ତରୀଣ ଜୀବନ ସଙ୍ଗେ ଏତେ ଘନିଷ୍ଠ ସମ୍ପର୍କରେ ଆସିପାରିଥିଲୁ ଯେ ଗୋପୀନାଥ ମହାନ୍ତି ହୋଇଥିଲେ ନିଶ୍ଚୟ ଏ ଜାତି ବିଷୟରେ ଗୋଟିଏ ଉପନ୍ୟାସ ଲେଖାଯାଇପାରିଥାନ୍ତା । ଗୋଟିଏ ଜାଗାରେ ଗୋଟିଏ ସ୍ତ୍ରୀ ଅସ୍ଥିକଙ୍କାଳମୟ ଗୋଟିଏ ଶିଶୁକୁ ଧରି ଆମ ପାଖରେ ଗୁହାରି କଲା । ତାର ସ୍ୱାମୀ ଏହି ସନ୍ତାନକୁ ନିଜର ନୁହେଁ ବୋଲି ସନ୍ଦେହ କରି ସ୍ତ୍ରୀକୁ ଛାଡ଼ି ଚାଲିଯାଇଛି । ସ୍ୱାମୀର ଏ ଅଭିଯୋଗ ମିଛ ହୋଇପାରେ ଏବଂ ଏହା ସ୍ତ୍ରୀ ମନରେ ନିଶ୍ଚୟ ବହୁତ ଆଘାତ ଦେଇଛି; କିନ୍ତୁ ସନ୍ତାନର ଅବସ୍ଥା କଅଣ ହେଲାଣି ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସ୍ତ୍ରୀଟିର ବୋଧହୁଏ ଇଚ୍ଛା ଏହି ସନ୍ତାନଟି ଯେ କି ତାର ସ୍ୱାମୀ ସଙ୍ଗେ ପୁନର୍ମିଳନ ପଥରେ ଅନ୍ତରାୟ, ସେ ଶୀଘ୍ର ଇହସଂସାରରୁ ବିଦାୟ ନେଉ । ଏଥିରୁ ମନରେ ସନ୍ଦେହ ଲାଗିଲା ସ୍ତ୍ରୀଜାତିର ସ୍ୱଭାବସୁଲଭ ବାତ୍ସଲ୍ୟପ୍ରେମ ପ୍ରତି । ମୁଁ ଭାବୁଥିଲି ନାରୀଜାତି ନିଜର ସନ୍ତାନ ସକାଶେ ସ୍ୱାମୀକୁ ମଧ୍ୟ ଛାଡ଼ିପାରେ । କିନ୍ତୁ ନା, ସ୍ୱାମୀ ସକାଶେ ପକ୍ଷାନ୍ତରରେ ନିଜର ସୁଖ-ସ୍ୱାଚ୍ଛନ୍ଦ୍ୟ ସକାଶେ ନାରୀ ନିଜର ସନ୍ତାନକୁ ମଧ୍ୟ ବଳି ଦେଇପାରେ । ତାର ଅର୍ଥ, ଆତ୍ମରକ୍ଷା ହେଉଛି ସବୁଠାରୁ ବଳି ବଡ଼ ପ୍ରେରଣା । ଏହା ପାଖରେ ବୋଧହୁଏ ସ୍ୱାମୀ ନାହିଁ କି ସନ୍ତାନ ନାହିଁ । ଏହା ଅବଶ୍ୟ ସବୁ ସ୍ଥାନରେ ସତ୍ୟ

ହୋଇ ନ ପାରେ । କେତେକ ସ୍ଥାନରେ ଭାବପ୍ରବଣା ନାରୀ ସ୍ୱାମୀ ବା ସନ୍ତାନ ସକାଶେ ଆତ୍ମବଳି ଦେବାକୁ କୁଣ୍ଠାବୋଧ କରନ୍ତି ନାହିଁ ।

କୋରାପୁଟ ରହଣି ମଧ୍ୟରେ ମୋର ଆଉ ଗୋଟିଏ ଯାତ୍ରା ଆହୁରି ବେଶୀ କୌତୂହଳମୟ । ଏ ଯାତ୍ରାଟି ହେଉଛି ବଣ୍ଡାପରଜା ମୁଠା ମଧ୍ୟଦେଇ । ବଣ୍ଡା ଅର୍ଥ ତେଲୁଗୁ ଭାଷାରେ ଲଙ୍ଗଳା । ଏହି ମୁଠା ବା ଇଲାକା ଲଙ୍ଗଳା ପରଜାଙ୍କ ବାସସ୍ଥଳୀ । ଲଙ୍ଗଳା ମାନେ ସେମାନେ ପୂରା ଉଦ୍‌ବସ୍ତ୍ର ନୁହନ୍ତି । ପୁରୁଷମାନେ ଖାଲି ଖଣ୍ଡେ କୌପୁନ ପିନ୍ଧିଥାନ୍ତି ଏବଂ ସ୍ତ୍ରୀଲୋକମାନେ କୌପୁନ ଉପରେ ଫୁଟେ ଓସାରର ଖଣ୍ଡେ ଗଛର ବକଳା ଘେରେଇ ହୋଇଥାନ୍ତି । ଆଉ କୌଣସି ପରିଧାନ ନଥାଏ ଏବଂ ବେକରୁ ଗୁଡିକୁ ଲମ୍ବିଥାଏ ଗୋଛାଏ ମାଳି । ସ୍ତ୍ରୀଲୋକଙ୍କର ମୁଣ୍ଡ ଏକଦମ୍ ଲଣ୍ଡା । ମୁଣ୍ଡରେ ସେମାନେ ସଲପ ଗଛର ଡାଳର ଖଣ୍ଡେ ପଟି ଘେରେଇଥାନ୍ତି । ସେମାନେ ସପ୍ତାହରେ ଥରେ ପାହାଡ଼ ତଳେ ଥିବା ହାଟକୁ ଲୁଣ ଆଦି କଣିବାକୁ ଏବଂ ସେମାନଙ୍କର ଅଣ୍ଡା, କୁକୁଡ଼ା ଆଦି ବିକିବାକୁ ଆସନ୍ତି । ସେମାନେ ସାଧାରଣତଃ ମହାରାଜାଙ୍କୁ କୌଣସି ସିସ୍ତ ବା ଖଜଣା ଦିଅନ୍ତି ନାହିଁ ଏବଂ ତାଙ୍କ ଇଲାକାକୁ କେହି ଯାଆନ୍ତି ନାହିଁ । ଅନେକ ନରହତ୍ୟା ଏହି ଇଲାକାରେ ଗଡ଼ପ ହୋଇଯାଏ । ଏମାନେ ଦିନରାତି ସଲପଗଛର ରସ ଖାଇ ମାତାଲ ହୋଇ ଥାଆନ୍ତି । ପ୍ରତ୍ୟେକ ଲୋକର ଗୋଟିଏ ଦୁଇଟି ସଲପ ଗଛ ଥାଏ । ଏ ଗଛ ଜଙ୍ଗଲ ଭିତରେ ଥାଏ । ସେମାନେ ଏହି ଗଛପାଖକୁ ଯାଇ ରସ ଖାଇ ଓ ଆଣି ଘରକୁ ଆସନ୍ତି । ଜଣକର ସଲପ ଗଛରୁ ଆଉ ଜଣେ ଖାଇଗଲେ ଗୋଳମାଳ ଓ ହତ୍ୟାକାଣ୍ଡ ହୁଏ । ଥରେ ଜଣକର ସଲପଗଛରେ ତାର ବାପ ଯାଇ ରସ ଖାଉଥିଲା । ପୁଅ ଦିନେ ଜଗି ତାର ବାପକୁ ଧରିଲା ଏବଂ ସେହିଠାରେ ହତ୍ୟାକଲା । ବାପର ମୁଣ୍ଡ ନେଇ ସେ ପୋଲିସ ପାଖରେ ହାଜର ହେଲା । ସେଠି ନରହତ୍ୟା ହେଲେ ମିଛସତ କହି ଛପେଇବାର ଚେଷ୍ଟା ନଥାଏ । ପୁଅ ବିପକ୍ଷରେ ମା, ବାପ ବିପକ୍ଷରେ ପୁଅ, ସ୍ୱାମୀ ବିପକ୍ଷରେ ସ୍ତ୍ରୀ ଆସି କାନ୍ଦି କାନ୍ଦି କୋର୍ଟରେ ସାକ୍ଷ୍ୟ ଦିଅନ୍ତି । ଏପରି ସରଳ ଲୋକ ବିରଳ; କିନ୍ତୁ ସଲପରସ ଖାଇ ସବୁବେଳେ ମାତାଲ ଥିବାରୁ ନରହତ୍ୟା ଏମାନଙ୍କ ପ୍ରତି କିଛି ଗୋଟାଏ ବଡ଼ କଥା ନୁହେ । ମାରିଦେଇ ମାନିଯାନ୍ତି । ଏମାନଙ୍କୁ ଫାଶି ଦଣ୍ଡ କେବେହେଲେ ଦିଆଯାଏ ନାହିଁ । ଏମାନଙ୍କ ପ୍ରତି ସର୍ବାଧିକ ଦଣ୍ଡ ହେଉଛି ଆଜୀବନ କାରାବାସ ।

ଏହି ଇଲାକାକୁ କୌଣସି କଲେକ୍ଟର ବା ଏସ୍. ଏ. ଏଜେଣ୍ଟ୍ ଯାଇନଥିଲେ । ମୋ ଆଗରୁ ଖାଲି ଜଣେ ଗୋରା ପୋଲିସ ସାହେବ ଏଠାକୁ

ଯାଇଥିଲେ । ତେଣୁ ଏମ୍. ଏ. ଏଜେଣ୍ଟ ଭାବରେ ଏହି ଇଲାକାକୁ ମୁଁ ଗଲି ପ୍ରଥମେ । ଏଥର ମଧ୍ୟ ଆମେ ଚାରିଜଣ ବାହାରିଲୁ । ସେତେବେଳକୁ ମୋର ଭାଇ ରାଧାନାଥ ନଥାଏ । ଏହି ଇଲାକା ଏତେ ଘନାରଣ୍ୟସଂକୁଳ ଓ କଣ୍ଟକମୟ ଯେ ଚାଲିକରି ଯିବା ଅସମ୍ଭବ । ଆମେ ଜୟପୁର ଜମିଦାରିରୁ ଦୁଇଟି ହାତୀ ଧରିଲୁ । ହାତୀ ସାଙ୍ଗରେ ତାଙ୍କର ମାହୁନ୍ତ ଆଦି ଆସିଥାନ୍ତି । ଜୟପୁରଠାରୁ ୧୨ ମାଇଲ ଦୂର ଦଶମନ୍ତପୁରଠାରୁ ଆମେ ହାତୀରେ ବସି ବାହାରିଲୁ । ହାତୀ ଆଗରେ ଲୋକମାନେ ବଣ ଓ କଣ୍ଟା କାଟି କାଟି ବାଟ କରି କରି ଯାଉଥାନ୍ତି । ହାତୀ ଉପରେ ବଡ଼ ହୁସିଆରରେ ବସିବାକୁ ପଡ଼େ । ଟିକିଏ ବେହୁସିଆର ହେଲେ ହୁଏତ ମୁଣ୍ଡରେ ଗୋଟିଏ ଡାଳ ବାଜି ମୁଣ୍ଡ କଟିଯିବ ବା କଣ୍ଟା ବାଜି ଦେହ ଚିରି ହୋଇଯିବ । ହାତୀ ତ ଚାଲିଛି, ସେ ଅଟକିବ ନାହିଁ; କଣ୍ଟା ବଣ ନମାନି ଚାଲିଛି । ତେଣୁ ତୁମକୁ ହୁସିଆର ହୋଇ ଜୀବନରକ୍ଷା କରିବାକୁ ହେବ । ଅନେକ ଜାଗାରେ ହାତୀ ଉଚ୍ଚ ପାହାଡ଼ କର ଦେଇ ଶ୍ରେଷ୍ଠ ରାସ୍ତାରେ ଚାଲୁଥାଏ । ଟିକିଏ ଖସିଗଲେ ହଜାରଫୁଟ ତଳେ ଥିବା ଝରଣାରେ ପଡ଼ିବ । ଏହି ଇଲାକାରେ ଗସ୍ତଟି ବଡ଼ ଲୋମହର୍ଷଣକର ଥିଲା । ପ୍ରତି ପଦରେ ବିପଦର ଆଶଙ୍କା । ସାତ ଆଠ ମାଇଲ ଯାଇ ଯେଉଁଠି ଟିକିଏ ସମତଳ ଜାଗା ପାଉ ଏବଂ ଯେଉଁଠାରେ ଗାଁ ଖଣ୍ଡେ ଥାଏ, ସେଠାରେ ତମ୍ବୁ ପକାଇ ରହୁ । ବଙ୍ଗଳାର କଥା ନାହିଁ । ଆମେ ପହଞ୍ଚିଲା-କ୍ଷଣି ପାଖ ଗାଁର ଯେ ମୁଖିଆ ସେ ଗଣ୍ଡେ ଅରୁଆ ଚାଉଳ ଓ କେତେକ ଅଣ୍ଡା ଧରି ଆସି ପହଞ୍ଚେ । ଏ ହେଉଛି ତାଙ୍କ ପରମ୍ପରା ମତରେ ଭେଟି । ଏହି ପରଜା-ମାନେ ପାହାଡ଼ ତଳେ କିଛି କିଛି ଧାନ କରିଥାନ୍ତି; କିନ୍ତୁ ସାଧାରଣତଃ ଖାଦ୍ୟ କାଙ୍ଗୁ, ମକା, ହରଡ଼ ଓ ଚେରମୂଳ । ଧାନରୁ ଚାଉଳ କରି କିଛି କିଛି ରଖିଥାନ୍ତି ହାକିମମାନେ ଆସିଲେ ଭେଟି ଦେବାକୁ । ଏମାନେ ଗୋଟିଏ କ୍ୟାମ୍ପରୁ ଆଉ ଗୋଟିଏ କ୍ୟାମ୍ପକୁ ଆମର ଜିନିଷପତ୍ର ନେଇଯାନ୍ତି । ଆମର ଜିନିଷପତ୍ର ନେବାକୁ ପ୍ରାୟ କୋଡ଼ିଏ ଜଣ ଆସନ୍ତି । ସେମାନଙ୍କର ମୁଣ୍ଡରେ ମୁଣ୍ଡାଇବାର ଅଭ୍ୟାସ ନାହିଁ । ଗୋଟିଏ ବେଢ଼ଙ୍ଗ ହେଲେ ତାକୁ ଗୋଟିଏ ବାଉଁଶରେ ବାନ୍ଧି ସେ ବାଉଁଶକୁ ଦୁଇପଟୁ ଧରି ଚାଲନ୍ତି । ଗୋଟିଏ କ୍ୟାମ୍ପରୁ ଆଉ ଗୋଟିଏ କ୍ୟାମ୍ପରେ ପହଞ୍ଚାଇ ଜିନିଷପତ୍ର ଫିଙ୍ଗିଦେଇ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାନ୍ତି । କିଛି ପାଉଣା ପାଇବାର ଆକାଙ୍କ୍ଷା ନଥାଏ । ମାଲକାନଗିରି ଇଲାକାରେ ସେତେ-ବେଳେ ସବୁ ରୋଡ଼ ଓ ବଙ୍ଗଳା ରେଭେନ୍ୟୁ ଡିପାର୍ଟମେଣ୍ଟ ତିଆରି କରେ ଏବଂ ମରାମତି କରେ । କାମ କରିବାକୁ ଏହି ଆଦିବାସୀମାନେ ସେମାନଙ୍କର ଖାଇବା

ଜମିଓ ନେଇ ଦିନେ ଦୁଇଦିନ ସକାଳେ ଆସନ୍ତି ଏବଂ କାମ କରିଦେଇ ସେପରି ଅନ୍ତର୍ଦ୍ଧାନ ହୋଇଯାନ୍ତି । ସେମାନଙ୍କର ପାଉଣା ଦେବାକୁ ହେଲେ ଗାଁକୁ ଯାଇ ଦେବାକୁ ହେବ । ଏହି ପ୍ରଥା ଯୋଗୁ ବହୁତ ଦୁର୍ନୀତି ମଧ୍ୟ ହୁଏ । ଖାଲି ମିଛରେ କେତୋଟି ଟିପଚିହ୍ନ ଦେଇ ଭାଉଚର ଦେଇଦିଅନ୍ତି । କୌଣସି ଲୋକର ଆପତ୍ତି କରିବାକୁ ନଥାଏ ଯେ ସେ ମଜୁରି ପାଇନାହିଁ ।

ଏହି ଇଲାକାରେ ସାତଦିନ ଟୁର୍ କରି ଆମେ ବାଲିମିଲାଠାରେ ପାହାଡ଼ରୁ ଓହ୍ଲାଇ ବଙ୍ଗଳାର ଓ ସମତଳ ଜାଗାର ପୁନଃଦର୍ଶନ କଲୁ । ସେଠାରୁ କାର୍ ଯୋଗେ ନବରଙ୍ଗପୁର ଫେରିଆସିଲୁ । କିନ୍ତୁ ଏତେ ପରିଶ୍ରମ କରି ଫଳ କଣ ହେଲା ? କର୍ତ୍ତବ୍ୟ କଲି; ମନରେ ଆନନ୍ଦ ହେଲା । କିନ୍ତୁ ବଣଜଙ୍ଗଲ ଭିତରକୁ ନ ଯାଇ ରାସ୍ତା ପାଖରେ କାର୍‌ରେ ବୁଲିବୁଲି କରି ଖାଲି କଲେକ୍ଟରଙ୍କ ମନ ଜାଣି ତାଙ୍କୁ ତୋଷାମୋଦ କରି ରଖିଥିଲେ ଯଥେଷ୍ଟ ହୋଇଥାନ୍ତା ଏବଂ ବେଶୀ ଫଳପ୍ରଦ ହୋଇଥାନ୍ତା । ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର ହିସାବରେ ମୋର ଆତ୍ମ-ବିଶ୍ୱାସ ବେଶୀ ଥାଏ । ଚାକିରିରେ ପ୍ରବେଶ କଲାପରେ ମୁଁ ଭାବିଥିଲି, ମୁଁ ଯଦି ମୋର କର୍ତ୍ତବ୍ୟ ନିର୍ଭୀକ, ସଚ୍ଚୋଟ, ଆନ୍ତରିକତା ଓ ପରିଶ୍ରମସହକାରେ କରିବି, ତେବେ ଉପରିସ୍ଥ ହାକିମ ଓ ସର୍ବସାଧାରଣ ନିଶ୍ଚୟ ସନ୍ତୁଷ୍ଟ ହେବେ । ଏହା କେତେକ ପରିମାଣରେ ସତ୍ୟ । କିନ୍ତୁ କାର୍ଯ୍ୟ କଲାବେଳେ ଉପରିସ୍ଥ ହାକିମଙ୍କ ଭୁମ ପ୍ରତି କି ଭାବ ଏବଂ ତାହା କିପରି ବଜାୟ ରଖିବାକୁ ହେବ ତାହା ପ୍ରତି ନଜର ଆବଶ୍ୟକ । ଏସବୁ ସତ୍ତ୍ୱେ ମନୁଷ୍ୟ ଜୀବନରେ ଏପରି ସମୟ ଆସେ, ଯେତେବେଳେ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼େ, ଯାହାର ନମୁନା ମୁଁ ଆଗରୁ ଦେଲି । ସେପରି ଅବସ୍ଥାରେ ଭୁମର ରେକର୍ଡ଼ ଖରାପ ହେବା ଅନିବାର୍ଯ୍ୟ । ତାହାକୁ ନିଜର ଭାଗ୍ୟଦୋଷ ବୋଲି କହିବା ଛଡ଼ା ଆଉ କିଛି ନାହିଁ ।

ମୋର କୋରାପୁଟ ରହଣି ମଧ୍ୟରେ କୋରାପୁଟ ସବ୍‌ଡିଭିଜନ ନବରଙ୍ଗ-ପୁରଠାରୁ ଅଲଗା ହୋଇଗଲା ଏବଂ ସେଠାକୁ ଜଗବନ୍ଧୁ ମହାପାତ୍ର ଏସ୍. ଏ. ଏଜେଣ୍ଟ ହୋଇ ଆସିଲେ । ପଢ଼ିଲା ସମୟର ପ୍ରତିଭା ସେ ଅବଶ୍ୟ ଚାକିରିରେ ଖଟାଉ ନ ଥିଲେ । ତଥାପି ବିନା ସଂଘର୍ଷରେ କାମ ଯେପରି ହୋଇପାରିବ ସେ ସେଥିରେ ଯତ୍ନବାନ ଥିଲେ । ତେଣୁ ସେ କୋରାପୁଟ ରହଣି ମଧ୍ୟରେ ଏସ୍.ସାହେବ ହୋଇପାରିଥିଲେ । ଯେତେବେଳେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇ ଯାଇଥିଲା ଏବଂ ଗୋରା କଲେକ୍ଟରଙ୍କ ସେ ବିଷୟରେ ଆମ ପ୍ରତି ବହୁତ ଉପଦେଶାବଳୀ ଥିଲା । ବହୁତ କଂଗ୍ରେସ କର୍ମୀ ଆଇନଭଙ୍ଗ କରିବା ଉଦ୍ଦେଶ୍ୟରେ

"ବ୍ରିଟିଶ ସରକାର ଧ୍ୱଂସ ହେଉ" ଏହି ସ୍ଲୋଗାନ୍ ଦେଇ ଚାଲନ୍ତି ଏବଂ ଆରେଷ୍ଟ ହେବା ସକାଶେ ପ୍ରସ୍ତୁତ ଥାଆନ୍ତି । ସେମାନଙ୍କ ମଧ୍ୟରୁ ବାଛି ବାଛି ଦଶ ବାର ଜଣ ପୋଲିସ ଆଣି କୋର୍ଟରେ ହାଜର କରନ୍ତି । ସେମାନେ ଯାହା ସ୍ଲୋଗାନ ଦେଇଥିଲେ ତାହା ମାନନ୍ତି; କିନ୍ତୁ ଦୋଷ ମାନନ୍ତି ନାହିଁ । ପ୍ରତି କେଶ୍‌ରେ ଦୁଇଟି ସାକ୍ଷୀ ନେଇ ସେମାନଙ୍କୁ ଦୁଇମାସ ଲେଖାଏ ସଜା ଦିଆଯାଏ । ସାକ୍ଷୀ ଯାହା କହିବେ ଜଣାଶୁଣା, ସେମାନେ ଯାହା ଜବାବ ଦେବେ ଜଣାଶୁଣା, ଦଣ୍ଡ ମଧ୍ୟ ଜଣାଶୁଣା । ପ୍ରତି କେଶ୍‌ରେ ଏସବୁ ହାତରେ ଲେଖିଲେ ବହୁତ ସମୟ ଲାଗିବ ବୋଲି ମୁଁ ଏସବୁ ଆଗରୁ ଟାଇପ୍ କରି ରଖିଥାଏ । ଖାଲି ନାମ, ତାରିଖ ଓ ସମୟ କେଶ ବିଚାରବେଳେ ପୂରଣ କରାଯାଉଥାଏ । ଏପରି ହିସାବରେ ଦିନକୁ ଶହେ ପର୍ଯ୍ୟନ୍ତ କେଶ ଫଇସଲା କରିବା ମୋ ପକ୍ଷରେ କଷ୍ଟକର ନ ଥିଲା । ☐☐☐

## ସମ୍ବଲପୁର ବଦଳି

କୋରାପୁଟ ଜିଲ୍ଲାରେ ତିନିବର୍ଷ ରହିଲାପରେ କଟକ ବଦଳି ହୋଇ ଆସିଲି । କେନ୍ଦ୍ରାପଡ଼ା, ଖୋରଧା ଛଡ଼ା ନବରଙ୍ଗପୁର ମୋର ପ୍ରଥମ ଦୀର୍ଘକାଳୀନ ସବଡ଼ିଭିଜନ ଥିଲା । କିନ୍ତୁ ଏଠାରେ ମୋର ଘୋର ପରିଶ୍ରମ ଓ ଶତ ଚେଷ୍ଟା ସତ୍ତ୍ୱେ ରେକର୍ଡ଼ ଭଲ ହୋଇ ନ ଥିବାରୁ ମନରେ ଦୁଃଖ ରହିଗଲା । କୋରାପୁଟରୁ ଫେରିଲାବେଳକୁ ମୁଁ ବହୁତ ଦୁଃଖ ଓ ଅନୁଭୂତି ନେଇ ଫେରିଲି । କିନ୍ତୁ କଟକରେ ଦୁଇମାସ ରହିବା ପରେ ମୋର ବରଗଡ଼କୁ ସବଡ଼ିଭିଜନାଲ ଅଫିସର ଭାବରେ ବଦଳି ହେଲି । ସେତେବେଳେ ଏ ଥିଲା ଆଇ. ସି. ଏସ. ସବ୍‌ଡ଼ିଭିଜନ । ଏଠାରେ କେହିହେଲେ ଡେପୁଟି କଲେକ୍ଟର ବେଶି ସମୟ ରହି ପାରିବେ ନାହିଁ । ତେଣୁ ଏଠାରେ ମୁଁ ୩ ମାସ ରହିଲି । ଏ ମଧ୍ୟରେ ସବୁ ଇଲାକା ଥରେ ବୁଲି ଆସିଥିଲି । ୩ ମାସ ପରେ ମୋର ସମ୍ବଲପୁରକୁ ଟ୍ରେଜେରୀ ଅଫିସର ହିସାବରେ ବଦଳି ହେଲି । ସେତେବେଳେ ଟ୍ରେଜେରୀ ଅଫିସର ଥାଆନ୍ତି ଶ୍ରୀ ଭରତଚନ୍ଦ୍ର ନାୟକ । ସେ ଚାର୍ଜ ଦେଇ ଅବସର ନେବା କଥା । ସେ ବଡ଼ ସ୍ୱାଧୀନଚେତା ଓ ସ୍ପଷ୍ଟବାଦୀ । ସେଥିଯୋଗୁଁ ତାଙ୍କର ଦୀର୍ଘ ଚାକିରିଜୀବନ ମଧ୍ୟରେ ସେ ଏସ. ଡ଼ି. ଓ. ହୋଇପାରିଲେ ନାହିଁ । ଟ୍ରେଜେରୀ ଚାର୍ଜରେ ଦୁଇମାସ ରହିବା

ପରେ ମୁଁ ସଦର ସବ୍‌ଡ଼ିଭିଜନର ଏସ୍‌. ଡ଼ି. ଓ. ହେଲି । ସେତେବେଳେ କଲେକ୍ଟର ଥିଲେ ଆଜଫର୍ ସାହେବ ଏବଂ ମୋର ବନ୍ଧୁ ମୋଇନୁଦ୍ଦିନ ଅହମଦ ସେଠାରେ ଡେପୁଟି କଲେକ୍ଟର ଥିଲେ । ସେ ଆଜଫର ସାହେବଙ୍କ ବଡ଼ ପ୍ରିୟପାତ୍ର । ମୋତେ ଆଜଫର ସାହେବ ପ୍ରଥମେ ପ୍ରଥମେ ସନ୍ଦେହ ଚକ୍ଷୁରେ ଦେଖୁଥିଲେ; ପରେ ମୋର କାମ ଦେଖି ସେ ବଡ଼ ପ୍ରୀତ ହୋଇଗଲେ । ସେ ଖୁବ ବୁଦ୍ଧିମାନ; କିନ୍ତୁ କୌଣସି ସିଦ୍ଧାନ୍ତରେ ଉପନୀତ ହେବାକୁ ତାଙ୍କୁ ବହୁତ ଡେରିଲାଗେ । ସେତେବେଳେ ଦ୍ୱିତୀୟ ମହାଯୁଦ୍ଧର ଘମାଘୋଟ ଲଢ଼େଇ ସମୟ । ସରକାରଙ୍କ ବହୁତ ଅର୍ଥ ଆବଶ୍ୟକ ଥାଏ । ଯୁଦ୍ଧ ଋଣ ପକାଣେ ମୁଁ ପ୍ରାୟ ଲକ୍ଷେ ଟଙ୍କା ଅସୁଲ କରିପାରିଥିଲି । ସେତେବେଳେ ଯେଉଁମାନେ ତହସିଲଦାର ଥିଲେ, ସେମାନଙ୍କ ପୂର୍ଣ୍ଣ ସହଯୋଗ ଯୋଗୁଁ ଏସବୁ ସମ୍ଭବ ହେଲା । ସେତେବେଳେ ଜଣେ ତହସିଲଦାର ଥିଲେ ଫଜୁଲୁର ରହମାନ ଯେ କି ଖୋର୍ଦ୍ଧାରେ ମୋର ଶିକ୍ଷକ ଥିଲେ । ଆଉ ଜଣେ ତହସିଲଦାର ଥିଲେ ବିଭୂତିଭୂଷଣ ତ୍ରିପାଠୀ ଯେ କି ପରେ ଆଇ. ଏ. ଏସ୍. କୁ ଉତ୍ତୀର୍ଣ୍ଣ ହେଲେ । ଫଜୁଲୁରବାବୁ ଥିଲେ ବଡ଼ କାମିକା । ବିଭୂତିବାବୁ ସେତେବେଳେ ଥିଲେ ଯୁବକ ଓ କାର୍ଯ୍ୟଦକ୍ଷ ।

ଏହି ସମ୍ବଲପୁରରେ ଥିବାବେଳେ ଘଟିଥିଲା ଗୋଟିଏ ପ୍ରଧାନ ଘଟଣା, ଯାହାକି ମୋର ସମୁଦାୟ ଚାକିରି ଜୀବନରେ ସବୁଠାରୁ ବେଶି ଲୋକହିତକର ହୋଇପାରିଥିଲା । ଦିନେ ହଠାତ୍ କେନ୍ଦ୍ର ଶାସନ ହୁକୁମ କରିଦେଲେ ଯେ ଓଡ଼ିଶାରୁ ଧାନ ଚାଉଳ ଅବାରିତ ବଜାରକୁ ଯାଇପାରିବ । ସମ୍ବଲପୁର ଓ ବରଗଡ଼ରେ ସବୁଠାରୁ ବେଶୀ ଚାଉଳବେପାରୀ । ସେମାନେ ଲକ୍ଷ ଲକ୍ଷ ମହଣ ଚାଉଳ କଲିକତାକୁ ରପ୍ତାନି କରନ୍ତି । ସେତେବେଳେ ସମ୍ବଲପୁରରେ ଚାଉଳ ମହଣ ଥାଏ ଟ ୧୫ । କଲିକତା ଦର ଥାଏ ଟ ୫୦ । ଏକ ୱାଗନ୍ ବା ୫୦୦ ମହଣ ଚାଉଳରେ ଜଣେ ବେପାରୀକୁ ଅନ୍ତୁନକ ଟ ୧୭,୫୦୦ ଲାଭ କରିବାକୁ ମୌକା ମିଳିଗଲା । କେନ୍ଦ୍ରଶାସନର ହୁକୁମ; ଅମାନ୍ୟ କରିହେବ ନାହିଁ । ଏଣେ ଲଢ଼େଇ ସମୟ ଓ ସବୁ ଚାଉଳ କଲିକତା ଚାଲିଗଲେ ସମ୍ବଲପୁରରେ ଦୁର୍ଭିକ୍ଷ ପଡ଼ିବ । ତେଣୁ ବେପାରୀମାନଙ୍କ ସାହାଯ୍ୟରେ ଓ ଭାରତୀୟ ପ୍ରତିରକ୍ଷା ଆଇନ୍ ବଳରେ ଏକ ହୁକୁମ କରାଗଲା ଯେ ରେଳବାଇ କଲେକ୍ଟରଙ୍କ ବିନା ପରମିଟ୍‌ରେ ବୁକିଂ କରିବେ ନାହିଁ ଏବଂ ବେପାରୀମାନଙ୍କ ସଙ୍ଗେ କଥା ହେଲା ଯେ ସେମାନେ ଗୋଟିଏ ପାଣ୍ଠି କରି ସେଥିରେ ତାଙ୍କ ଲାଭରୁ ଟ ୫୦୦୦ ୱାଗନ୍ ପ୍ରତି ଜମା କରିବେ । ଏହି ରୀତିରେ ରାତି-ରାତି ଆଠ ନଅ ଲକ୍ଷ ଟଙ୍କା ଏହି ପାଣ୍ଠିରେ ଜମା ହୋଇଗଲା । ପରେ ଏହି

ପାଣ୍ଠିରୁ ସମ୍ବଲପୁରର ଭବିଷ୍ୟତ କଲେଜ ସକାଶେ ଯାଠିଏ ଲକ୍ଷ, ଝାରସୁଗୁଡ଼ା ଟାଉନ୍‌ହଲ ସକାଶେ ପଚିଶ ହଜାର, ବରଗଡ଼ ହାଇସ୍କୁଲ ସକାଶେ ପଚିଶ ହଜାର ଓ ସମ୍ବଲପୁର ଟାଉନ୍ ମାତୃମଙ୍ଗଳ କେନ୍ଦ୍ର ସକାଶେ କୋଡ଼ିଏ ହଜାର ଟଙ୍କା ଦିଆଗଲା ।

ସମ୍ବଲପୁରରେ ଥିଲାବେଳେ ଫଜଲୁର ବାବୁଙ୍କ ସାହାଯ୍ୟରେ ମୁଁ ମୁଣ୍ଡ ଓ ମହାଦେବପାଲିରେ ଦୁଇଟି ସୁନ୍ଦର ରେଭେନ୍ୟୁ ବଙ୍ଗଳା ତିଆରି କରିପାରିଥିଲି । ପରେ ଏହା ହିରାକୁଦ ଜଳଭଣ୍ଡାରରେ ବୁଡ଼ିଗଲା । ଯେଉଁ ରେଭେନ୍ୟୁ ରୋଡ଼ ଗୌନ୍ତିଆ ଓ ଗ୍ରାମବାସୀ କରିବା କଥା ଏବଂ ସେସବୁ ସେମାନଙ୍କ ଶିଥିଳତାଯୋଗୁଁ ବେମରାମତି ଅବସ୍ଥାରେ ପଡ଼ିଥିଲା, ସେଥିରେ ମାଟି ଓ ମୋରମ ପକାଇ ଯେପରିକି ଅନ୍ତତଃପକ୍ଷେ ଘଣ୍ଟାକୁ କୋଡ଼ିଏ ମାଇଲ ବେଗରେ କାର୍ ଯାଇପାରିବ ତାର ବନ୍ଦୋବସ୍ତ କରିଥିଲି । ଏସବୁ କରିଥିବାରୁ ଆଜଫର୍ ସାହେବ ପରେ ମୋ ଉପରେ ଖୁବ୍ ଖୁସି ହୋଇଥିଲେ; କିନ୍ତୁ ମୋତେ ଭଲରୂପେ ଜାଣିବା ପୂର୍ବରୁ ତାଙ୍କର ମୋ ପ୍ରତି ଏ ପ୍ରଥମ ବର୍ଷର ମନ୍ତବ୍ୟ ଅନୁକୂଳ ନ ଥିଲା । ଆଜଫର୍ ସାହେବଙ୍କ ପରେ ପହଞ୍ଚିଲେ ରାମନାଥ ସାହେବ । ସେ ନିଜର ଗତାନୁଗତିକ ଅଫିସଗତ କାର୍ଯ୍ୟପନ୍ଥା ଛଡ଼ା ବାହାରକୁ ଯିବାକୁ ଆଦୌ ପସନ୍ଦ କରୁନଥିଲେ । ତାଙ୍କ ଅଧୀନସ୍ଥ କର୍ମଚାରୀମାନେ କଲେଜ କାମ, ସ୍କୁଲ କାମ ଓ ମାତୃମଙ୍ଗଳ ଆଦି କାର୍ଯ୍ୟରେ ବେଶୀ ଆଗ୍ରହ ଦେଖାନ୍ତୁ, ଏହା ସେ ଚାହୁଁନଥିଲେ । ସେ ଥିଲେ ଆଜଫର୍ ସାହେବଙ୍କ ପୂରା ଓଲଟା । ତେଣୁ ସେ ଆସିଲା ପରେ ଆମମାନଙ୍କୁ ଏସବୁ ବାହାର କାର୍ଯ୍ୟରୁ ନିଜକୁ ଅପସାରିତ କରି ଆଣିବାକୁ ପଡ଼ିଲା । ସେ ବଡ଼ ଗମ୍ଭୀର ପ୍ରକୃତିର ଲୋକ । ତୁମ ପ୍ରତି ତାଙ୍କର ମନୋଭାବ କଣ ଜାଣିବା ବଡ଼ କଷ୍ଟ । ତେବେ ଗୋଟିଏ କଥା ଜଣାପଡ଼ିଥିଲା ଯେ ସେ ବଲ୍ଲଭବାବୁଙ୍କ ପ୍ରତି ବେଶ୍ ଭଲ ଭାବ ପୋଷଣ କରିବାକୁ ଆରମ୍ଭ କଲେ ଏବଂ ମୁଁ ଆଜଫର୍ ସାହେବଙ୍କ ସକାଶେ ବହୁତ କାମ କରିଥିବାରୁ ମୋତେ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ । □□□

## ଭଦ୍ରଖ ବଦଳି

ସମ୍ବଲପୁରରେ ପ୍ରାୟ ୩ ବର୍ଷ ରହିଲା ପରେ ୧୯୪୬ ସାଲରେ ମୋର ଭଦ୍ରଖକୁ ସବ୍‌ଡ଼ିଭିଜନାଲ ଅଫିସରଭାବେ ବଦଳି ହେଲା । ସେତେବେଳେ ଭଦ୍ରଖରେ ସ୍ୱନାମଧନ୍ୟ ରାୟସାହେବ ଜଗଦ୍‌ବନ୍ଧୁ ମହାପାତ୍ର ଏସ. ଡି. ଓ. ଥିଲେ । ସେ ସେଠାରେ ଗୋଟିଏ ଦେଉଳ ତିଆରି କରାଇଥିଲେ । ସେଥିଯୋଗୁଁ ମୁସଲମାନ-ଗୋଷ୍ଠୀ ତାଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଭଦ୍ରଖରେ ଗୋଟିଏ ବେଶ୍ ବଡ଼ ମୁସଲମାନ ଗୋଷ୍ଠୀ ଥିଲେ । ଯାହାହେଉ ସେ ଭଲେ ଭଲେ ଚାଲିଆସିଲେ; କିନ୍ତୁ ଏହି ଭଦ୍ରଖଟି ପରେ ମୋର ଚାକିରି ଜୀବନର କବରଖାନା ହୋଇଉଠିଲା ।

ଭଦ୍ରଖରେ ଥିବା ସମସ୍ୟା ହେଉଛି ଦ୍ୱିତୀୟ ମହାଯୁଦ୍ଧ ସମୟ । ସମ୍ବଲପୁରରେ ଯେଉଁ ଲକ୍ଷ ଲକ୍ଷ ଟଙ୍କା ଚାନ୍ଦା ଓ ଯୁଦ୍ଧ ସଂଚୟ ଯୋଜନା ଆକାରରେ ସଂଗ୍ରହ କରାଯାଇପାରିଥିଲା ଏଠାରେ ମଧ୍ୟ ସେଇଆ କେତେକ ପରିମାଣରେ କରିବାକୁ ହେବ । ଚାନ୍ଦା ଅସୁଲ ଉପରେ ବେଶୀ ଜୋର ନଦେଇ ମୁଁ ଏହି ସଂଚୟ ଯୋଜନା ଉପରେ ବେଶୀ ଜୋର ଦେଲି । ଲୋକଙ୍କ ଟଙ୍କା ସଂଚିତ ହୋଇ ରହିବ, ତାହା ସେମାନେ ପରେ ସୁଧ ସହ ପାଇପାରିବେ । ଏହାର ଉପକାରିତା ଲୋକଙ୍କ ଆଗରେ ଥୋଇ ପାରିଲେ ଏଥିପ୍ରତି ନିଶ୍ଚୟ ଆଗ୍ରହ ଜନ୍ମିବ । ତା ସଙ୍ଗେ ସଙ୍ଗେ ମଧ୍ୟ ପରୋକ୍ଷ ଚାପ ପକାଇବାକୁ ହେବ । ମୁଁ ସମ୍ବଲପୁରରେ ଥିଲାବେଳେ ମୋର ସବ୍‌ଡ଼ିଭିଜନର ମଫସଲରେ ରେସନ କାର୍ଡ଼ ଦେଇଥିଲି । ସେଥିରେ ପ୍ରତି କୁଟୁମ୍ବ ପ୍ରତି ମାସରେ କେତେ ଚିନି ଓ କିରାସିନ ପାଇପାରିବେ ଲେଖାଥିଲା । ଅବଶ୍ୟ ଷ୍ଟକ ଉପରେ ଏହି ଲିଖିତ ପରିମାଣର କେତେ ଅଂଶ ଦିଆଯାଇପାରିବ, ନିର୍ଭର କରୁଥିଲା । ଏହାଦ୍ୱାରା ପ୍ରତିପତ୍ତିଶାଳୀ ଲୋକେ ବେଶୀ ମାଲ ନେଇପିବେ, ଏ ସମ୍ଭାବନାକୁ ରୋକ ଦିଆଯାଇଥିଲା । ମୁଁ ଭଦ୍ରଖ ଆସି ସେ ପ୍ରଥା ଚଳାଇବାକୁ ଆରମ୍ଭ କଲି । କଟକ ପ୍ରେସରେ ଏକ ଲକ୍ଷ ରେସନ କାର୍ଡ଼ ଛପାଗଲା ଏବଂ ଛପା ଖର୍ଚ୍ଚ ଏହି କାର୍ଡ଼ର ଦାମରୁ ଉଠିଲା । ଏହି କାର୍ଡ଼ରେ ମାସରେ ପ୍ରାପ୍ୟ ଚିନି ଓ କିରାସିନର ପରିମାଣ ଲେଖାଯାଇ ଗୋଟିକୁ ଏକଅଣାରେ ଦିଆଗଲା ଏବଂ ଏହା ସାଙ୍ଗକୁ ଲୋକଙ୍କ ଦ୍ୱାରା ଯୁଦ୍ଧକାଳୀନ୍ ପୋଷ୍ଟାଲ ସେଭିଙ୍ଗ ସାର୍ଟିଫିକେଟ ଖରିଦ କରାଇନେବାକୁ ହେଲା । ଏଥିରେ ପ୍ରତିପତ୍ତିଶାଳୀ ଲୋକେ ଯେଉଁଭଳି ସେତେବେଳର

ଚଉକିଦାର ପ୍ରେସିଡେଣ୍ଟ ପ୍ରଭୃତି ଯେଉଁମାନେ ଚାନ୍ଦା କରେ଼ସିନ ବାଣ୍ଟିବାର ଦାୟିତ୍ୱରେ ଥିଲେ, ସେମାନେ ଖୁସି ନ ଥାନ୍ତି । ଶ୍ରୀଯୁକ୍ତ ମହତାବଙ୍କ ଭାଇ ଶ୍ରୀ ଗୋପୀନାଥ ଦାସ ଯେ କି ଜଣେ ୟୁନିୟନ ପ୍ରେସିଡେଣ୍ଟ ଥିଲେ, ତାଙ୍କ ମନରେ ଖଟକା ଥାଏ । ମୁଁ ବର୍ଷକ ପରେ ଯେତେବେଳେ ଭଦ୍ରଖରୁ ବଦଳି ହୋଇ ଚାଲିଗଲି ଏବଂ ୧୯୪୭ ସାଲରେ ଦେଶ ଯେତେବେଳେ ସ୍ୱାଧୀନ ହେଲା; ମହତାବ ବାବୁ କ୍ଷମତାକୁ ଆସିଲେ । ସେତେବେଳେ ଏହି ପଡ଼ପ୍ରଥା ବନ୍ଦ ହୋଇଗଲା । ମୋଠାରୁ କୈଫିୟତ ମଗାଗଲା ଯେ ମୁଁ ସରକାରଙ୍କ ବିନା ଅନୁମତିରେ ମଫସଲ ଅଞ୍ଚଳରେ କାହିଁକି ପଡ଼ପ୍ରଥା ପ୍ରଚଳନ କଲି । ମୁଁ ଭଦ୍ରଖରୁ ଭଞ୍ଜନଗରର ଆର. ଡ଼. ଓ. ହୋଇ ଯାଇଥିଲି । ସେଠାରେ ମଧ୍ୟ ଏହି ପଡ଼ପ୍ରଥା ପ୍ରଚଳନ କରିଥିଲି । ଆଗରୁ ମୁଁ ସମ୍ବଲପୁରରେ ଥିଲାବେଳେ ଏହା ମଧ୍ୟ କରିଥିଲି । ଏସବୁ ସ୍ଥାନରେ କେହି ହେଲେ ଆପତ୍ତି କରି ନ ଥିଲେ । ମାଲ କମ୍ ଥିଲେ ପଡ଼ପ୍ରଥା ହେଉଛି ଏକମାତ୍ର ଚିନ୍ତା । ସହରରେ ଯୁଦ୍ଧ ସମୟରେ ଏହା କରାଯାଇଥିଲା । ମଫସଲ ବଡ଼ ଇଲାକା । ଲୋକମାନେ ବିକ୍ଷିପ୍ତ ହୋଇ ଅଛନ୍ତି ଓ ସହରବାସୀଙ୍କ ପରି ପାଟିତୁଣ୍ଡ କରନ୍ତି ନାହିଁ । ତେଣୁ ଯେ ସବୁ ଇଲାକାରେ ପଡ଼ପ୍ରଥା ପ୍ରଚଳନ କରିବାକୁ ସରକାର ବାଧ କରାଉ ନ ଥିଲେ; କିନ୍ତୁ ଯଦି କୌଣସି ଅଫିସର ତା ଇଲାକାରେ ଏହା କରାଇପାରିଲା ତେବେ ଆପତ୍ତି କିଛି ନ ଥିବା କଥା । ମୁଁ ଥିବାର ଅନ୍ୟ ସବଡିଭିଜନମାନଙ୍କରେ ଏହା ଆପତ୍ତିଜନକ ବୋଲି କୌଣସି କାଳେ ସରକାର ବିଚାର କରି ନ ଥିବାରୁ, ମୁଁ କଲେକ୍ଟରଙ୍କ ଜ୍ଞାତସାରରେ ଏହି ସବୁ କାର୍ଯ୍ୟ କରିଥିବାରୁ ଏବଂ ସେ ମୋତେ କେବେହେଲେ ରୋକି ନ ଥିବାରୁ କୈଫିୟତ ଦେବାକୁ ବେଶୀ କିଛି ଅସୁବିଧା ହୋଇ ନ ଥିଲା । ମୋ ପରେ ଭଦ୍ରଖକୁ ଯେଉଁ ସବଡିଭିଜନାଲ ଅଫିସର ଦୁର୍ଗାଚରଣ ପଟ୍ଟନାୟକ ଯାଇଥିଲେ ସେ ମଧ୍ୟ ତାଙ୍କ ରିପୋର୍ଟରେ କହିଥିଲେ ଯେ ଏହି ପଡ଼କାର୍ଡ଼ ତାଙ୍କୁ ମଫସଲରେ ନିୟନ୍ତ୍ରିତ ଜିନିଷର ବଣ୍ଟନରେ ସାହାଯ୍ୟ କରୁଛି । ତେବେସୁଦ୍ଧା ମୋଠାରୁ କୈଫିୟତ ତଲବ କରାଯାଇଥିଲା ।

ସେତେବେଳେ ଉଗର ପ୍ରେସ କେତେକଙ୍କ ବିରୋଧୀ । ଏହି ପ୍ରେସରେ ଛପାଇ ଥିବା ସେମାନଙ୍କ ଅସହ୍ୟ ଥିଲା । ଏହି ପ୍ରେସରେ ମୁଁ କାହିଁକି ବେଶୀ ରେଟ୍ ଦେଇ ଛପେଇଲି ତା ଉପରେ ମଧ୍ୟ କୈଫିୟତ ମଗାଗଲା । ତା ପରେ ଆଉ ଗୋଟିଏ କଥାରେ ମଧ୍ୟ ମୋତେ କୈଫିୟତ ମଗାଗଲା । ତାହା ହେଉଛି ମୁଁ

ଜବରଦସ୍ତ କାହିଁକି ଏହା ସଙ୍ଗରେ ଯୁଦ୍ଧ ସାର୍ଟିଫିକେଟ ଟଙ୍କା ଅଟୁଳ କଲା । ଏସବୁର ସନ୍ତୋଷଜନକ କୈଫିୟତ ଦେଇ ମୁଁ ତୁନି ହୋଇ ରହିଲି; ସରକାର ମୋର କୈଫିୟତ ପରେ ଆଉ କିଛି କରିପାରିବ ନାହିଁ ।

ଭଦ୍ରଖରୁ ବିଦାୟ ନେବା ପୂର୍ବରୁ ଏଠାର ଗୋଟିଏ ଦୁଇଟି ଉଲ୍ଲେଖ୍ୟ-ଯୋଗ୍ୟ ବିଷୟ ମୋତେ ଏଠାରେ ଲିପିବଦ୍ଧ କରିବାକୁ ହେବ । ସେତେବେଳେ ବାଲେଶ୍ୱର ଜିଲ୍ଲାର ଉପକୂଳରେ ଲୁଣା ବାଲିରେ ବହୁତ ବଙ୍ଗାଳୀ ଆସି ବସବାସ କରିବାକୁ ଆରମ୍ଭ କରୁଥାନ୍ତି । ବିସ୍ତୀର୍ଣ୍ଣ ପଡ଼ିଆ ବାଲୁଚରେ ପଡ଼ିଥାଏ । ସ୍ଥାନୀୟ ଲୋକେ ସେ ଆଡ଼କୁ ଆଦୌ ଦୃଷ୍ଟି ପକାନ୍ତି ନାହିଁ । ତାର ସୁଯୋଗ ନେଇ ଏମାନେ ପୂର୍ବେ କନିକା ରାଜାଙ୍କଠାରୁ ଅନୁମତି ନେଇ ବା ନନେଇ ଖଣ୍ଡେ ଖଣ୍ଡେ ଜମି ଚାଷ କରୁଥିଲେ । ସ୍ଥାନୀୟ ଲୋକେ ଈର୍ଷାପରବଶ ହୋଇ ସେମାନଙ୍କ ଫସଲ ନଷ୍ଟ କରିଦିଅନ୍ତି । ଏସବୁ ସମସ୍ୟା ନିଜେ ପ୍ରତ୍ୟକ୍ଷରେ ଦେଖିବାକୁ ବାସୁଦେବପୁରଠାରୁ ଧାମରା ପର୍ଯ୍ୟନ୍ତ ସମୁଦ୍ରକୂଳ ଦେଇ ଯାଇଥିଲି । ଅବଶ୍ୟ ଭଦ୍ରଖର ସମୁଦ୍ରକୂଳ ପୁରୀ ଗଞ୍ଜାମ କୂଳଠାରୁ ସଂପୂର୍ଣ୍ଣ ଭିନ୍ନ । ବୈତରଣୀ ନଦୀର ପଟୁ ପଡ଼ି ସମୁଦ୍ରକୂଳ କାଦୁଅ ଓ ଝାଉ ବଣରେ ପରିପୂର୍ଣ୍ଣ । ତା ମଧ୍ୟଦେଇ ସମୁଦ୍ର ପାଣି ପାଖକୁ ଯିବା ଅସମ୍ଭବ । ତେଣୁ ଆମକୁ ଏହି ବଣ ବାହାର ପଟ ଦେଇ ଚାଲିବାକୁ ପଡ଼ିଲା । ଏ ମଧ୍ୟ ବାଲିହରିଣ ସକାଶେ ପ୍ରଧାନ ଶିକାରସ୍ଥଳୀ । କନିକା ରାଜାଙ୍କ ଜମିଦାରୀ ଉଠିଲାପରେ ହରିଣ ଶିକାରରେ ଆଉ କଟକଣା ନାହିଁ । ତେଣୁ ଏହି ଇଲାକାରେ ଯେଉଁ ଶିକାରୀମାନେ ଶିକାର କରି ପେଟ ପୋଷନ୍ତି, ସେମାନେ ହରିଣ ମାରି ପଦା କରିଦେଇଥିଲେ । ଏହି ସମୁଦ୍ର-କୂଳ ଯାତ୍ରାରେ ମୋର ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ବ୍ରଜସୁନ୍ଦର ମହାନ୍ତି ଯେ କି ଭବିଷ୍ୟତରେ ଚିଫ୍ ସେକ୍ରେଟାରୀ ହେଲେ ସେ ମଧ୍ୟ ଥିଲେ । ଏହି ସମୁଦ୍ରକୂଳ ପଦଯାତ୍ରା ବହୁତ ଆନନ୍ଦଦାୟକ ହୋଇଥିଲା ।

ଆଉ ଗୋଟିଏ ପ୍ରଧାନ ଘଟଣା ହେଉଛି ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଓ କଲେକ୍ଟର ଓଝା ସାହେବଙ୍କ ଧାମରାଠାରେ ଶିକାର । ମୁଁ ଭଦ୍ରଖରେ ଥିଲାବେଳେ ହରେ ଓଝା ସାହେବ, ସେତେବେଳର ଯୋଗାଣ ବିଭାଗର ସେକ୍ରେଟାରୀ ଝା ସାହେବ ଏବଂ ବିଜୁବାବୁ ଶିକାର କରିବାପାଇଁ ଆସି ଭଦ୍ରଖରେ ପହଞ୍ଚିଲେ । ସେଠାରୁ ସେମାନେ ଚାନ୍ଦବାଲି ଯାଇ ସାଙ୍ଗରେ ପୋର୍ଟ ଅଫିସର ଡେଭିଡଙ୍କୁ ନେଇ ଲଞ୍ଚରେ ଧାମରା ଗଲେ । ଧାମରା ଶିକାରବେଳେ ବିଜୁବାବୁଙ୍କର ବନ୍ଧୁକ ଯାହା କି ଲୋଡେଡ୍ ଥିଲା, ଅକସ୍ମାତ ଫୁଟିଗଲା ଏବଂ କେତେକ ଛରବା ଓଝା

ସାହେବଙ୍କ କାଖ ପାଖେ ଘଷିହୋଇ ଚାଲିଗଲା । ରକ୍ତସ୍ରାବ ବନ୍ଦ ହୋଇଥିବ । ଚପରାଶୀ ଓ ଖାନସମାମାନଙ୍କ ପାଖରେ ଯାହା କନା ଥିଲା ସେଥିରେ କ୍ଷତସ୍ଥାନ ବାନ୍ଧି ସମସ୍ତେ ଭଦ୍ରଖ ଫେରି ଆସିଲେ ଏବଂ ସେଠାରେ ଘଟଣା କଣ ହେଲା କିଛି ନ କହି ଟ୍ରେନରେ କଟକ ଚାଲିଗଲେ । କଟକ ଡାକ୍ତରଖାନାରେ ଓଝା ସାହେବଙ୍କ ଚିକିତ୍ସା ହେଲା । ଅପରେସନ ହେବାର ପ୍ରାୟ ତିନି ସପ୍ତାହ ପରେ ମୁଁ କଟକ ଯାଇଥିଲି ଏବଂ ତାଙ୍କ ସଙ୍ଗେ ଡାକ୍ତରଖାନାରେ ଦେଖା ହୋଇଥିଲା । ସେତେବେଳେ ସେ ବେଶ୍ ପ୍ରଫୁଲ୍ଲ ଥିଲେ ଏବଂ ସେଦିନ ରାତିରେ ପ୍ରଥମେ ସିନେମା ଯିବେ ବୋଲି ଠିକ୍ କରିଥିଲେ । କିନ୍ତୁ ହଠାତ୍ ତାଙ୍କର ଧନୁଷ୍ଟଙ୍କାର ବେମାରି ଆରମ୍ଭ ହୋଇଗଲା ଏବଂ ସେଥିରେ ସେ ପ୍ରାଣତ୍ୟାଗ କଲେ । ଏପରି ମର୍ମନ୍ତୁଦ ପରିସ୍ଥିତିରେ ଜଣେ ଉଦୀୟମାନ ଅଫିସରଙ୍କ ଇହଲୀଳା ସାଙ୍ଗ ହେଲା । ମୃତ୍ୟୁ ପରେ ଓଝା ସାହେବଙ୍କ ସ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ଶିକାର ଦୁର୍ଘଟଣା ସକାଶେ ଦାୟୀ କରି ଫୌଜଦାରି କେଶ୍ କଲେ । ସେ କେଶ୍ ସେତେବେଳର ବାଲେଶ୍ୱର ଏ. ଡି. ଏମ୍. ସ୍ୱନାମଧନ୍ୟ ଶ୍ରୀ ଦୁର୍ଗାଚରଣ ଦାସ ବିଚାର କଲେ । ସେ ବିଚାର କରି ବିଜୁବାବୁଙ୍କୁ ଖଲାସ କଲେ । ସେ ବିଚାର ସମୟରେ ବିଜୁବାବୁ ଏବଂ ତାଙ୍କ ଭାଇ ଜର୍ଜ ପଟ୍ଟନାୟକଙ୍କ ସହ ମୋର ଦେଖା ହୋଇଥିଲା । ବିଜୁବାବୁ ବଡ଼ ମେଳାପି ଲୋକ ଥିବାରୁ ବଡ଼ ବଡ଼ ଅଫିସରମାନଙ୍କ ସଙ୍ଗେ ତାଙ୍କର ବେଶ୍ ସଦ୍‌ଭାବ ଥିଲା । □□□

## ସେକ୍ରେଟେରିଏଟ୍ ବଦଳି

ଭଦ୍ରଖରୁ ଯାଇ ଭଞ୍ଜନଗରରେ ଥିଲା ସମୟରେ ଉଲ୍ଲେଖଯୋଗ୍ୟ ଘଟଣା କିଛି ଥିଲାପରି ଜଣାପଡ଼ୁନାହିଁ । ତେବେ ଏଠାରେ ଥିଲାବେଳେ କଲେକ୍ଟର ଅର୍ ସାହେବଙ୍କ ସଙ୍ଗେ ମୋର ପୂର୍ବକାଳରେ ଗଙ୍ଗାନଦୀରେ ପହଁରିବାର ଅନୁଭୂତି ଥିବାରୁ ଭଞ୍ଜନଗର ଘାଇରେ କେତେଦୂର ପହଁରିଲି; କିନ୍ତୁ ଶୀଘ୍ର ବେଦମ ହୋଇଯାଇଥିଲି । କାରଣ ବୟସ ବଢ଼ିଯାଇଥିଲା ଏବଂ ଅଭ୍ୟାସ ବି ନଥିଲା । ମୋର ଦାୟିତ୍ୱରେ ରହି ଆସିଥିବା ସବୁ ସବ୍‌ଡିଭିଜନ ଭିତରେ, ଖାଲି ନବରଙ୍ଗ-ପୁରକୁ ଛାଡ଼ିଦେଲେ ଭଞ୍ଜନଗର ସବୁଠାରୁ ଶସ୍ତା ଜାଗା । ମାଂସ, ଦୁଧ ଓ

ପଦାପରିବା ସକାଶେ ଏ ସ୍ଥାନ ପ୍ରସିଦ୍ଧ । ସେତେବେଳକୁ ପାଇକ ପ୍ରଥା ଉଠି- ନଥିବାରୁ ଆର. ଡ. ଓ.ଙ୍କ ପାଖେଃଟି ପାଇକ ଥାନ୍ତି, ଯେ କ ସେ ଯାହା କହିବେ କରିବେ । ସେମାନେ ସାଧାରଣତଃ ବଗିଚ୍ଚ କାମ ଓ ବୋଲହାକ କରନ୍ତି । ଭଞ୍ଜନଗରରେ ଥିଲାବେଳେ ମିଷ୍ଟର ବ. ସି. ମୁଖାର୍ଜୀ ଯେ କ ପ୍ରଥମେ କଟକରେ କଛିଦିନ ମୋର କଲେକ୍ଟର ଥିଲେ, ସେ ଚିଫ୍ ସେକ୍ରେଟେରୀ ହୋଇ ଆସିଲେ । ସେ କଟକରେ ଥିବାବେଳେ ମୋ ପ୍ରତି ଖୁବ୍ ଭଲ ଭାବ ପୋଷଣ କରିଥିଲେ । ମୁଁ ଭଞ୍ଜନଗରରୁ ଆସି ଥରେ ତାଙ୍କ ସଙ୍ଗେ ଦେଖାକଲି । ସେ କହିଲେ, "ଉଦୟନାଥ ତୁମେ କେଉଁଠି ଅଛ, ମୋ ସଙ୍ଗେ କାହିଁକି ଦେଖାକରିନାହିଁ । ହଉ ଯାଅ, ତୁମର ଶୀଘ୍ର ବଦଳି ହେବ ।" ମୋର ସମସାମୟିକ ଅନ୍ୟ ଅଫିସରମାନେ ସେକ୍ରେଟେରିଏଟ୍ ଯିବା ସକାଶେ ବ୍ୟସ୍ତ ଥିଲେ । ମୁଁ କିନ୍ତୁ ସେଥିରେ ବେଶୀ ଆଗ୍ରହାନ୍ୱିତ ନଥିଲି । ସବ୍‌ଡିଭିଜନରେ ଆରାମରେ ନବୁଲି ସେକ୍ରେଟେରିଏଟ୍ ଭିତରେ କାରାଗାର ଆବଦ୍ଧ ହୋଇ ଫାଇଲ୍ ଚଷିବାକୁ ମୋର ଇଚ୍ଛା ନଥାଏ । ତେବେ ମୁଖାର୍ଜୀ ସାହେବ ଅଳ୍ପ ଦିନ ମଧ୍ୟରେ ମୋତେ ଘରୋଇ ବିଭାଗର ଅଣ୍ଡର ସେକ୍ରେଟେରୀ କରି ଆଣିଲେ ।

ସେତେବେଳେ ସେକ୍ରେଟେରୀଏଟ୍‌ରେ କେବଳ ଏକମାତ୍ର ଅଣ୍ଡର ସେକ୍ରେଟେରୀ ପଦ ଥାଏ ଘରୋଇ ବିଭାଗରେ ଏବଂ ସେଠା ଆଇ. ପି. ଏସ୍. ମାନଙ୍କର ଟ୍ରେନିଂ ସକାଶେ ଉଦ୍ଦିଷ୍ଟ ଥାଏ । ମୋତେ ମୁଖାର୍ଜୀ ସାହେବ ସେହି ପୋଷ୍ଟରେ ଆଣିଲେ ଏବଂ ସେହି ପୋଷ୍ଟରେ ଯେଉଁ ଆଇ. ପି. ଏସ୍. ଥିଲେ ସେ ଡେପୁଟି ସେକ୍ରେଟେରି ହେଲେ । ସେହି ଅଣ୍ଡର ସେକ୍ରେଟେରୀ ପଦରୁ ମୋର ସେହି ବିଭାଗରେ ଡେପୁଟି ସେକ୍ରେଟେରୀ ହେବା କଥା । କିନ୍ତୁ ସେତେବେଳେ ସୋମନାଥ ମହାପାତ୍ର ସ୍ୱାୟତ୍ତଶାସନ ବିଭାଗର ଡେପୁଟି ସେକ୍ରେଟେରୀ ଥାନ୍ତି ଏବଂ ସେ ମୁଖାର୍ଜୀ ସାହେବଙ୍କ ଆଗର କଟକ ରହଣି କାଳରୁ ପ୍ରିୟପାତ୍ର ଥିଲେ । ୧୯୪୭ ସାଲରେ ଯେତେବେଳେ ସାହେବମାନେ ସ୍ୱାଧୀନତା ପ୍ରାପ୍ତି ପରେ ଚାଲିଗଲେ ସେତେବେଳେ ଡେପୁଟି କଲେକ୍ଟରମାନଙ୍କ ସକାଶେ ବହୁତ ପ୍ରମୋସନ ପୋଷ୍ଟ ଖୋଲିଗଲା । ସେହି ଅବସରରେ ମୁଁ ଯେମିତି ଘରୋଇ ବିଭାଗରେ ଡେପୁଟି ସେକ୍ରେଟେରୀ ନହେବି ଏବଂ ସେ ନିଜେ ହେବେ, ଏହି ମତଲବରେ ସେ ଓ ମୁଖାର୍ଜୀ ସାହେବ ରାଜସ୍ୱ ବିଭାଗ ମନ୍ତ୍ରୀ ନବବାବୁଙ୍କ ମନରେ ଗୋଟିଏ ଧାରଣା ସୃଷ୍ଟି କରାଇଲେ ଯେ ସେତେବେଳର ଯେଉଁ ଜମିଜମା ସଂସ୍କାର କମିଟି ନବବାବୁଙ୍କ ପୌରୋହିତ୍ୟରେ ଗଠିତ ହୋଇଥିଲା ଏବଂ ଯାହାର କାମ ଥିଲା ଜମିଦାରୀ ଉଠାଇବା ଏବଂ ଅନ୍ୟ

ପୁନସ୍ସଂସ୍କାର କରିବା ସେହି କମିଟିର ସେକ୍ରେଟେରୀ କାମ ମୋ ଛଡ଼ା ଆଉ କେହି କରି ପାରିବେ ନାହିଁ । କାରଣ ମୁଁ ଥିଲି ଅର୍ଥନୀତିର କୃତୀ ଛାତ୍ର ଏବଂ ମୋର ଅଧିକାଂଶ ଜିଲ୍ଲାର ରାଜସ୍ୱ ପ୍ରଥାର ଅନୁଭୂତି ଅଛି । ନବବାବୁ ମୋତେ ଡାକି ଏ କଥା କହିଲେ ଏବଂ ମୁଖାର୍ଜୀ ସାହେବ ମଧ୍ୟ ବାଧ୍ୟ କଲେ । ସେତେବେଳେ ଡେପୁଟି ସେକ୍ରେଟେରୀମାନେ ଦୁଇଶ ଟଙ୍କା ଅତିରିକ୍ତ ଦରମା ପାଉଥିଲେ । ମୋତେ ଏହି କମିଟିର ସେକ୍ରେଟେରୀ ପଦ ଗ୍ରହଣ କରିବାକୁ ରାଜି ହେବା ସକାଶେ ଦୁଇଶ ପଚାଶ ଟଙ୍କା ଅତିରିକ୍ତ ଦରମା ଦିଆଗଲା । ମୋତେ ହଜାରେ ଟଙ୍କା ଦରମା ଓ ୨୫୦ ଟଙ୍କା ଅତିରିକ୍ତ ଦରମା ମିଳିଲା । ମୋତେ ତାଙ୍କ ପଥରୁ ଏପରି ଅପସାରଣ କରି ସୋମନାଥ ବାବୁ ଘରୋଇ ବିଭାଗର ଡେପୁଟି ସେକ୍ରେଟେରୀ ହୋଇ ଆସିଲେ ଏବଂ ପରେ ଯେତେବେଳେ ଆଇ· ଏ· ଏସ୍· ପୋଷ୍ଟ ସବୁ ସୃଷ୍ଟିକରି ସେଥିରେ କେତେ ଡେପୁଟି କଲେକ୍ଟରଙ୍କୁ ସ୍ଥାୟୀ ପ୍ରମୋସନ ଦିଆଯାଇପାରିବ, ଏହା ସ୍ଥିର କରାଗଲା, ସେତେବେଳେ ସୋମନାଥବାବୁ ଏଥିରେ ବହୁତ କାରସାଦି କଲେ ।

ସ୍ୱାଧୀନତାପ୍ରାପ୍ତିର ଅଳ୍ପଦିନ ପରେ ଗୋଟିଏ କମିଟି ଆସିଲା; ଏହାର ନାମ ଥିଲା 'ଜାକାରିଆ କମିଟି' । ସେମାନେ ଆସିଲେ ସୁଚତୁର ଡେପୁଟି କଲେକ୍ଟର ମାନଙ୍କର ତାଲିକା କରିବାକୁ, ଯେଉଁମାନେ କି ଆଇ.ସି.ଏସ୍· ମାନଙ୍କୁ ଅବ୍ୟାହତି ଦେବେ । ସେହି ତାଲିକାରେ ମୋର ନାମ ଖୁବ୍ ଉଚ୍ଚରେ ଥିଲା । ତେଣୁ ମୁଁ ୧୯୪୮, ଜାନୁଆରୀ ପହିଲାଠାରୁ ଆଇ. ସି. ଏସ୍. ସ୍କେଲରେ ଡେପୁଟି ସେକ୍ରେଟେରୀ ହେଲି ଏବଂ ପ୍ରାଥମିକ ଦରମା ମାସିକ ୧୨୭୫ ଟଙ୍କା ପାଇଲି । ଜମିଜମା କମିଟିର କାମ ଜୋରସୋରରେ ଚାଲିଲା ଏବଂ ଦୁଇବର୍ଷ ମଧ୍ୟରେ ଏହାର ରିପୋର୍ଟ ବାହାରିଗଲା । ମୁଁ କମିଟି କାମ ସାରି ରେଭେନ୍ୟୁ ବିଭାଗରେ ଡେପୁଟି ସେକ୍ରେଟେରୀ ହେଲି । ଏହା ପରେ ଉନ୍ନୟନ ବିଭାଗରେ କେତେଦିନ ଅତିରିକ୍ତ ସେକ୍ରେଟେରୀ ରହି ସେକ୍ରେଟେରିଏଟ୍‌ରେ ରହି ରହି ବିରକ୍ତ ଲାଗିଯାଇଥିବାରୁ ମୋର ଇଚ୍ଛାମତେ କେନ୍ଦୁଝର ଜିଲ୍ଲାର କଲେକ୍ଟର ହୋଇ ଚାଲିଗଲି । ପରେ କିନ୍ତୁ ଜଣାପଡ଼ିଲା ଏହି ଘଡ଼ିସନ୍ଧି ସମୟରେ ସେକ୍ରେଟେରିଏଟ ଛାଡ଼ିବା ମୋର ଗୁରୁତର ଭୁଲ ହେଲା ।

ଉନ୍ନୟନ ବିଭାଗରେ ଥିଲାବେଳେ ଗୋଟିଏ ଆଇ.ଏ.ଏସ. ଏମର୍ଜେନ୍‌ସି ରିକ୍ରୁଟମେଣ୍ଟ ବୋର୍ଡ ଜନୈକ ମିଷ୍ଟର ବାନର୍ଜୀ ଆଇ. ସି. ଏସ.ଙ୍କ ଅଧି-ନାୟକତ୍ୱରେ ବସିଲା । ସେମାନେ ସମୁଦାୟ ଭାରତବର୍ଷ ସକାଶେ ଡେପୁଟି କଲେକ୍ଟର ଏବଂ ଷ୍ଟେଟ ପାହ୍ୟାର ଅନ୍ୟ ଅଫିସରମାନଙ୍କ ରେକର୍ଡ ଯାଞ୍ଚ କରି ଓ ମୁଲାକାତ କରି ଗୋଟିଏ ଚୂଡ଼ାନ୍ତ ଅସ୍ଥାୟୀ ଆଇ. ଏ. ଏସ. ତାଲିକା ତିଆରି

କରିବେ । ବାନର୍ଜୀ ସାହେବଙ୍କୁ ଓଡ଼ିଶା ଅପରିଚିତ ନ ଥିଲା । ସେ ବାରିପଦା ହାଇସ୍କୁଲର ଛାତ୍ର ଥିଲେ । ତାଙ୍କୁ ସମୁଦାୟ ଭାରତବର୍ଷ ପାଇଁ ଅଖିଳ କ୍ଷମତା ଦିଆଯାଇଥିବାରୁ ତାଙ୍କର ଆତ୍ମବିଶ୍ୱାସ ବହୁତ ବଢ଼ିଯାଇଥିଲା । ସେ କେଉଁଠି କେଉଁଠି ପ୍ରକାଶ କରୁଥିଲେ ଯେ ଦେଖିଲା ମାତ୍ରେ ଅଫିସରଙ୍କ ଯୋଗ୍ୟତା ଠଉରାଇ ପାରିବେ । ପରେ ବି' ପଦ ପତ୍ରର ସେ ସିଦ୍ଧାନ୍ତ କରିନଥିଲେ । ସମୟ ନାହିଁ; ସମୁଦାୟ ଭାରତବର୍ଷ ବୁଲି ତାଲିକା କରିବାକୁ ପଡ଼ିବ । ତାଙ୍କ କମିଟିଙ୍କ ସଙ୍ଗେ ସାକ୍ଷାତ ହେବାକୁ ଆମେ ସବୁ କଲିକତା ଗଲୁ । ସେତେବେଳକୁ ମୁଁ ଆଇ.ସି.ଏସ୍. ପଦରେ ତିନି ବର୍ଷ କୃତିତ୍ୱ ସହ ଅଫିସିଏଟ କରିସାରିଥାଏ । ଜାକାରିଆ କମିଟି ମୋତେ ଉଚ୍ଚସ୍ଥାନ ଦେଇଥାନ୍ତି । ତେଣୁ ମୋର ଯେ ଆଇ. ଏ. ଏସ୍. ପାହ୍ୟା ହୋଇଯିବ, ଏଥିରେ ସନ୍ଦେହ ନଥିଲା । ଚିଫ୍ ସେକ୍ରେଟରୀ ବି. ସି. ମୁଖାର୍ଜୀଙ୍କ ପ୍ରିୟପାତ୍ର ସୋମନାଥ ମହାପାତ୍ର ଓ ମୁସାଏବ ଖାଁ ଜାକାରିଆ କମିଟିରେ ସେତେ ଉଚ୍ଚ ସ୍ଥାନ ଅଧିକାର କରି ନଥିଲେ । ସେମାନେ କଣ ପେଞ୍ଚ କଷିଲେ କେଜାଣି, ଜାକାରିଆ କମିଟି ରିପୋର୍ଟକୁ ବେଶୀ ପ୍ରାଧାନ୍ୟ ଦିଆଗଲା ନାହିଁ । ଅନ୍ୟ ଅନ୍ୟ ଷ୍ଟେଟ ସରକାର ତାଙ୍କର କେଉଁ କେଉଁ ଅଫିସର ଆଇ. ଏ. ଏସ୍. ପାହ୍ୟାକୁ ଯିବେ, ତାହା ସୁପାରିଶ କରି ପଠାଇଥାନ୍ତି । କାରଣ ବିନା ସୁପାରିଶରେ ଘଣ୍ଟାଏ ଦୁଇଘଣ୍ଟା ମଧ୍ୟରେ ବାନର୍ଜୀ ବୋର୍ଡ଼ କିଛି ବୁଝି ନପାରନ୍ତି ଯେ ସେ ସବୁ ଅଫିସରଙ୍କ ରେକର୍ଡ଼ ଯାଞ୍ଚ କରି ଏବଂ ମୁଲାକାତ କରି ଫାଇନାଲ ସିଦ୍ଧାନ୍ତରେ ଉପନୀତ ହୋଇ-ପାରିବେ । ସୋମନାଥବାବୁଙ୍କ ମୁଲାକାତକୁ ଭାରି ଡର । ଆମେ ସାହେବ ଦେଖା କରିବାକୁ ଗଲୁ; ସେ କିନ୍ତୁ ଗଲେ ନାହିଁ । ଚିଫ୍ ସେକ୍ରେଟରୀଙ୍କ ଦ୍ୱାରା କିଛି ବୋଧହୁଏ ଲେଖାଇଦେଲେ ଯେ ତାଙ୍କର ଯୋଗ୍ୟତା ନିଃସନ୍ଦେହ ତେଣୁ ମୁଲାକାତ ଆବଶ୍ୟକ ନାହିଁ । ଆମର କାହାରି ନାଁ ସୁପାରିଶ କରାଗଲା ନାହିଁ; ତେଣୁ ରିକ୍ରୁଟମେଣ୍ଟ ବୋର୍ଡର ନିଷ୍ପତ୍ତି ଏକ ଲଟେରୀ ରକମ ହେଲା । ତାଲିକା ଯେତେ-ବେଳେ ବାହାରିଲା ସେତେବେଳେ ଦେଖାଗଲା ସୁନୀଲ ପାଳିତ, ଭବଗ୍ରାହୀ ମିଶ୍ର, ଜଗନ୍ନାଥ ମିଶ୍ର, ପୂର୍ଣ୍ଣ ମହାନ୍ତି ଓ ମୋର ନାମ ନାହିଁ ଏବଂ ମୋର ଜୁନିୟର ରତ୍ନାକର ଷଡ଼ଙ୍ଗୀ, ପ୍ରାଣନାଥ ମହାନ୍ତି ଓ ନାଗେଶ୍ୱରମୋହନ ପଟ୍ଟନାୟକଙ୍କ ନାମ ରହିଛି । ପରେ ନିତାନ୍ତ ଜୁନିଅର ସୁଧାଂଶୁ କୁମାର ଘୋଷ, ସୋମନାଥ ଦାଶ ଓ ଆର୍. ପି. ପାଢ଼ୀ ମଧ୍ୟ ଆଇ. ଏ. ଏସ୍.କୁ ଚାଲିଗଲେ । ସେଥିରେ ମୁଁ ପାଗଳ ପରି ହୋଇଗଲି । ଜାକାରିଆ କମିଟି ପରେ ଏବଂ ଏମରଜେନ୍ସି ରିକ୍ରୁଟମେଣ୍ଟ ପୂର୍ବରୁ ଓଡ଼ିଶା ସରକାର ମୋର ଚରିତ୍ର ବିଷୟରେ କୌଣସି ମନ୍ତବ୍ୟ ନୋଟ କରିଥିଲେ

ଯେ ଭଦ୍ରଖରେ ମୁଁ ମଫସଲରେ ପଢ଼ା ପ୍ରଥା ପ୍ରଚଳନ କରାଇଥିବାରୁ ସରକାର ଅସନ୍ତୁଷ୍ଟ ଏବଂ ମୋତେ ଭର୍ତ୍ସନା କରାଗଲା । ଏହାର ନକଲ ମୁଁ ଯେତେବେଳେ ପାଇଲି ଚିଫ୍ ସେକ୍ରେଟେରୀ ବି. ସି. ମୁଖାର୍ଜୀଙ୍କ ପାଖରେ ଆପତ୍ତି କରିଥିଲି । ସେ କହିଲେ ଯେ ସରକାର ମୋର ରକ୍ତ ଶିତା କରିବାକୁ ଚାହୁଁଥିଲେ; କିନ୍ତୁ ସେ କେବଳ ସାମାନ୍ୟ ଭର୍ତ୍ସନା ଶବ୍ଦ ବ୍ୟବହାର କରି ଏହାକୁ ସେଥିରେ ଶାନ୍ତ କରିଦେଲେ । ତାପରେ ସେ କହିଲେ, "ତୁମେ ତ ବର୍ତ୍ତମାନ ଆଇ. ସି. ଏସ. ପଦରେ ଅଛ, ଚିନ୍ତା କଣ ?" ମୁଁ ତାଙ୍କ କଥାରେ ବିଶ୍ୱାସ କଲି ଏବଂ ଆଉ କିଛି କଲିନାହିଁ । ସେ ମଧ୍ୟ ଜାଣି ନଥିଲେ ଯେ ପରେ ଗୋଟିଏ ଏମର୍ଜେନ୍ସି ରିକ୍ରୁଟମେଣ୍ଟ ବୋର୍ଡ ଆସିବ । ମୁଁ ଏହି ବୋର୍ଡ ସଙ୍ଗେ ଦେଖାକଲି ବେଳକୁ ଏହି ଭର୍ତ୍ସନାଟି ମୋର ଚରିତ୍ର ଶିଟାର ସର୍ବଶେଷରେ ଥିଲା । ତେଣୁ ସେମାନେ ବୋଧହୁଏ ସେହି କାରଣରୁ ମୋତେ ତାଲିକାରେ ଅନ୍ତର୍ଭୁକ୍ତ କଲେ ନାହିଁ । ବିନା ଦୋଷରେ ଭଲ କରିବାକୁ ଯାଇ ମୋତେ ଦଣ୍ଡ ହେଲା ଏବଂ ଏହା ଯୋଗୁଁ ଯେ ସାରା ଜୀବନ ନଷ୍ଟ ହୋଇଗଲା, ମୁଁ ଏକଥା ଭାବି ଥୟ ଧରି ରହିପାରିଲି ନାହିଁ । ସେକ୍ରେଟେରିଏଟରେ ସେକ୍ରେଟେରୀ ବା ଅତିରିକ୍ତ ସେକ୍ରେଟେରୀ ହୋଇ ନପାରି କେନ୍ଦୁଝରର ଜିଲ୍ଲା କଲେକ୍ଟର ହୋଇ ଚାଲିଗଲି । □□□

## ଚାକିରିରେ ଝଡ଼

ଭଦ୍ରଖ ତ ମୋର ଗୋଟିଏ କବରଖାନା ହୋଇଥିଲା; କେନ୍ଦୁଝର ଆଉ ଗୋଟିଏ କବରଖାନା ହେଲା । ଏଠାରେ ମୋର କାର୍ଯ୍ୟରେ ସେତେବେଳର କମିଶନର ଶିବରମଣ ଖୁବ୍ ସନ୍ତୁଷ୍ଟ ଥିଲେ । ସେଠାରେ ବର୍ଷେ ରହି ପୁଣି ଉନ୍ନୟନ ବିଭାଗକୁ ଡେପୁଟି ସେକ୍ରେଟେରୀ ହୋଇ ଆସିଲି । ସେତେବେଳେ ଚିଫ୍ ସେକ୍ରେଟେରୀ ବି. ମୁଖାର୍ଜୀ; ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ମହତାବ । ବି. ମୁଖାର୍ଜୀ ମୋର ଅନୁକୂଳ ନୁହନ୍ତି । ସେ ଯେତେବେଳେ ରାୟଗଡ଼ାରେ ଏସ୍. ଏ. ଏଜେଣ୍ଟ ଥିଲେ, ମୁଁ ସେତେବେଳେ ନବରଙ୍ଗପୁରରେ ଏସ୍. ଏ. ଏଜେଣ୍ଟ ଥିଲି । ସେ ଯୁବକ ଲୋକ । ପୂର୍ବ ପରିଚିତ ଯୋଗୁଁ ବୋଧହୁଏ ଚିଫ୍ ସେକ୍ରେଟେରୀଙ୍କୁ ଯେଉଁ

ସମ୍ମାନ କରିବାକୁ ଥିଲା, ମୁଁ ବୋଧହୁଏ ଅତର୍କିତ ଭାବରେ ତା କରିପାରୁ ନଥିଲି । କେନ୍ଦୁଝରର ରେଫ୍ୟୁଜି ପୁନଃବସତିରେ ତଥାକଥିତ ତ୍ରୁଟି ଦେଖି ସେ ମୋ ନାମରେ ଲମ୍ବାଚଉଡ଼ା ପ୍ରସିଡ଼ିଂ କଲେ । ପ୍ରଥମ ହେଲା ରେଫ୍ୟୁଜି କଲୋନୀର ପରିକଳ୍ପନାରେ ବିଭ୍ରାଟ । ସେଥିରେ ଅବଶ୍ୟ ବେଶୀ କିଛି ହେଲାନାହିଁ । କିନ୍ତୁ ମୋତେ ନିଜ ଖର୍ଚ୍ଚରେ କେନ୍ଦୁଝର ଯାଇ ସମସ୍ତ କାଗଜପତ୍ର ଦେଖି ଲମ୍ବା ଚଉଡ଼ା କୈଫିୟତ ଲେଖିବାକୁ ପଡ଼ିଲା ଏବଂ ଏଥିଯୋଗୁଁ ବହୁତ ଦିନ ଅଶାନ୍ତିରେ କଟିଲା । ଆଉ ଗୋଟିଏ ହେଲା, ମୁଁ କାହିଁକି ଏକରେ ଜାଗା ଜଣେ ଆଦିବାସୀ-ଠାରୁ ବଢ଼ିବଲରେ କିଣିଥିଲି । ସେତେବେଳେ ବଡ଼ବିଲ ଏବର ପରି ଉନ୍ନତ ନ ଥିଲା; ଗୋଟିଏ ଜଙ୍ଗଲି ଗାଁ ଥିଲା । ସେତେବେଳର କେନ୍ଦୁଝରର ଏସ୍. ପି. ସଫିଉଦ ମିଆଁ ତାଙ୍କ ପୁଅ ନାମରେ ଖଣ୍ଡେ ଜାଗା କିଣିଲେ ଏବଂ ସେ କହିବାରୁ ମୁଁ ମଧ୍ୟ କିଣିଲି । ଆଦିବାସୀ ଜାଗା ହୋଇଥିବାରୁ ଚମ୍ପୁଆ ଏସ୍. ଡି. ଓ. ଯଥାବିଧି ଇନ୍‌କ୍ୱାରି କରି ଦର ଧାର୍ଯ୍ୟ କରି ଅନୁମତି ଦେଲେ । କିନ୍ତୁ ଏହି କଥାକୁ ମୁଁ ସରକାରଙ୍କୁ ଜଣାଇନଥିଲି । ଏହା ମୋର ଦୋଷ ଥିଲା । ତୃତୀୟ କଥା ହେଲା, ମୁଁ କେନ୍ଦୁଝରରେ ଥିଲାବେଳେ ଡେଆରୀ ଫାର୍ମରୁ କାହିଁକି ଗାଈଟିଏ କିଣିଥିଲି ? ଡେଆରୀ ଫାର୍ମରେ ପ୍ରତିବର୍ଷ ଅବାଞ୍ଛିତ ଗାଈଙ୍କୁ ନିଲାମ କରାଯାଏ । ସେଥିରୁ ଗୋଟିଏ ମୁଁ କିଣିଥିଲି । ମୋ ଆଗରୁ କଲେକ୍‌ଟର ପୂର୍ଣ୍ଣି ମହାନ୍ତି ମଧ୍ୟ ଗୋଟିଏ କିଣିଥିଲେ । ଏ ଗାଈଗୁଡ଼ାକ ବୁଢ଼ୀହାଡ଼ୀ । ଆଉ ଥରେ ଦୁଇଥର ଜନ୍ମ କରିବେ କି ନାହିଁ ସନ୍ଦେହ । ତେବେ ଗୋଟିଏ ସିନ୍ଧିଗାଈ କିଣିଥିଲେ ଛୁଆଟିଏ ହେଲେ ରଖିବି ଏହି ଉଦ୍ଦେଶ୍ୟରେ କିଣିଥିଲି । ଏ ଗାଈଟି ମୁଁ ଯିମିତି ଭୁବନେଶ୍ୱର ବଦଳି ହୋଇ ଆସିଲି, ମରିଗଲା ଏବଂ ତାର ଗୋଟିଏ ମାଈ ବାଛୁରୀ ମୁମୂର୍ଷୁ ଅବସ୍ଥାରେ ଥାଏ ।

ଏହିସବୁ ସାମାନ୍ୟ କାରଣଯୋଗୁଁ ମୁଁ କେନ୍ଦୁଝରରୁ ଆସିଲାପରେ ମୋ ନାମରେ ଲମ୍ବାଚଉଡ଼ା ପ୍ରସିଡ଼ିଂ ହେଲା । ଏହାର ପ୍ରଧାନ କାରଣ ଥିଲା ମୁଁ ମ ଆଇ. ଏ. ଏସ୍. ପାହ୍ୟାକୁ ବୋର୍ଡ଼ଦ୍ୱାରା ମନୋନୀତ ହୋଇନଥିଲି, ତେଣୁ ମୁଁ କେବଳ ଏହି ପାହ୍ୟାରେ ଅଫିସିଏଟ କରୁଥିଲି । ବର୍ଷେ ଦୁଇବର୍ଷ ମଧ୍ୟରେ ପୁଣି ଯଦି ମୁଁ ଏ ପାହ୍ୟାକୁ ଉତ୍ତୀର୍ଣ୍ଣ ହୋଇଯାଏ, ଯାହାକି ଗତାନୁଗତ ପନ୍ଥାରେ ହେବାକଥା କାରଣ ଆଇ. ଏ. ଏସ୍. ପୋଷ୍ଟର ଏକଚତୁର୍ଥାଂଶ ଅଭିଜ୍ଞ ଡେପୁଟି କଲେକ୍ଟରମାନେ ଅଧିକାର କରିବେ ଏବଂ ଜଣେ ଅବସର ନେଲେ

ଆଜି ଜଣେ ଏହି ସ୍ଥାନ ଅଧିକାର କରିବ ଏହି ସର୍ତ୍ତରେ ମୋର ବର୍ଷେ ଦୁଇବର୍ଷ-
ପରେ ଏହି ପଦକୁ ଯିବା କଥା । ମୁଁ ନିରବଚ୍ଛିନ୍ନ ଭାବରେ ୧୯୪୭ ସାଲରୁ
ଏହି ସବୁ ପୋଷ୍ଟରେ ଅଫିସିଏଟ କରୁଥିଲି । ମୁଁ ପରେ ଯେବେ ଖାଏମ ହୋଇ
ଏହି ପାହ୍ୟାକୁ ଯିବ ତେବେ ମୋର ସିନିଅରିଟି ୧୯୪୭ ସାଲରୁ ହୋଇଯିବ
ମଧ୍ୟାଗ କ ଯେଉଁ ଲଢ଼େଇ ଫେରନ୍ତା ଆଇ. ଏ. ଏସ୍. ମାନେ ପ୍ରଥମେ ଆସି
୧୯୪୭ ସାଲରେ ଏଠାରେ କାର୍ଯ୍ୟରେ ଯୋଗଦେଲେ ଏବଂ ଯେଉଁମାନେ ଅନ୍ତତଃ
୧୫ ବର୍ଷ ଓଡ଼ିଶାରେ କମିଶନର, ଚପ୍‌ସେକ୍ରେଟେରୀ ଏବଂ ହର୍ତ୍ତାକର୍ତ୍ତା ହୋଇ
ରହିବେ, ନିରବଚ୍ଛିନ୍ନ ଅଫିସିଏଟ କରି ଆଇ. ଏ. ଏସ୍. ପାହ୍ୟାରେ ମୁକରର
ହୋଇଗଲେ ମୁଁ ଯେ ସେମାନଙ୍କଠାରୁ ସିନିୟର ହୋଇ ଉଠିବି ସେମାନେ
ଜାଣିଥିଲେ । ଏ ସବୁ ପ୍ରସିଡ଼ିଙ୍ଗ ଗୁଲୁ କରିଦେଇ ବି. ମୁଖାର୍ଜି ମୋର
ଅଫିସିଏଟିଙ୍ଗ ବନ୍ଦ କରିଦେଲେ ଏବଂ ମୋତେ କଟକର ଏ. ଡି. ଏମ୍. କରି ବଦଳି-
କଲେ । ସେତେବେଳକୁ ମୁଁ ଅତିରିକ୍ତ ଦରମା ମିଶାଇ ଟ୧୫୫୦ ପାଉଥିଲି,
କିନ୍ତୁ ଏ. ଡି. ଏମ୍. ହେଲେ ମୋର ଦରମା ଖସିପଡ଼ୁଥିଲା ୯୯୦ ଟଙ୍କାକୁ ।
ସେତେବେଳକୁ ଚାକିରି ବିଷୟରେ ହାଇକୋର୍ଟରେ ଏତେ ରିଟ୍ ହୋଇନଥାଏ ।
କଣ କରିବି କିଛି ଜାଣି ନ ପାରି ୮ ମାସ ଛୁଟିରେ ରହିଲି । ଭାବିଲି ଚାକିରି
ଛାଡ଼ିଦେବି । କିନ୍ତୁ ସେତେବେଳକୁ ମୋର ଗୋଟିଏ ଝିଅ ବିବାହ ହେବାକୁ
ଥାଏ ଓ ୫ଟି ପୁଅ ପଢ଼ିବାକୁ ଥାଆନ୍ତି । ଏମାନଙ୍କୁ ନେଇ କପରି ଚଳିବି ଭାବି
ଚାକିରି ଛାଡ଼ିପାରିଲି ନାହିଁ । ସେତେବେଳେ ବର୍ତ୍ତମାନ ହାଇକୋର୍ଟର ପ୍ରଧାନ
ବିଚାରପତି ଶ୍ରୀଯୁକ୍ତ ଗତିକୃଷ୍ଣ ମିଶ୍ରଙ୍କୁ ଗଡ଼ଜାତ ମିଶ୍ରଣ ଫଳରେ ସବଜଜ୍ ପଦରୁ
ମୁନସିଫ୍‌କୁ ଖସାଇଦେବାରୁ ସେ ଚାକିରି ଛାଡ଼ି ଓକିଲାତି ଆରମ୍ଭ କରିଥାନ୍ତି ।
ମୁଁ ଭାବିଲି ସେଇଆ କରିବି । କିନ୍ତୁ ଆଇନ ଉପାଧି ନ ଥାଏ । ଭାବିଲି
ଖାଲି ଇନକମ୍‌ଟ୍ୟାକ୍ସ ଓ ସେଲସ୍‌ଟ୍ୟାକସ୍ ପ୍ରାକ୍‌ଟିସ କରିବି । ବୋଧହୁଏ
ଏହା କରିଥିଲେ ଭଲ ହୋଇଥାନ୍ତା ଏବଂ ମୋର ସମ୍ମାନ ରକ୍ଷା ହୋଇଥାନ୍ତା ।
ଚାକିରି ଜୀବନରେ ମୋର ତଳେ ଥିବା ସହକର୍ମୀମାନେ ଯେ ଉପରକୁ ଉଠିଗଲେ
ଏବଂ ସେମାନଙ୍କୁ ଦେଖି ମୋର ମନ ଯେ ତଳେ ତଳେ କାଟି ହୋଇଯାଉଥିଲା
ତାହା ହୋଇନଥାନ୍ତା । ଏପରି ଭାବୁ ଭାବୁ ଦିନେ ମୋର ପୂର୍ବତନ ବନ୍ଧୁ ଓକିଲ
ଶ୍ରୀ ମଧୁସୂଦନ ମହାନ୍ତିଙ୍କ ପାଖକୁ ଉପଦେଶ ସକାଶେ ଗଲି । ସେ କହିଲେ
ବିହାରରେ ବାହାରକୁ ଲୋକଙ୍କୁ ଆଇନ ପରୀକ୍ଷା ଦେବାକୁ ଅନୁମତି ଦିଆଯାଉଛି;
ଚେଷ୍ଟା କର । ଏକଥା ଶୁଣି ବିହାର ଲେଖିଲି ଏବଂ ସେଠାରୁ ଅନୁମତି ମିଳିବାର

ସୂଚନା ପାଇ ଭବଲ ଗୃକଶରେ ଥାଇ ଆଇନ ଉପାଧି ନେବ ଓ ତାପରେ ଗ୍ରୁଡ଼ବ । ଆଠମାସ ଛୁଟିପରେ ମୋତେ ଯେତେବେଳେ ବଲାଙ୍ଗୀର ଏ. ଡ଼. ଏମ୍. କର ପଠାଗଲା ମୁଁ ଗଲ । ସେଠାରେ ମୋର ପୂର୍ବପରିଚିତ ରାମକୃଷ୍ଣସ୍ୱାମୀ ସାହେବ କଲେକ୍ଟର ଥାନ୍ତି । ସେ ମୋ ପ୍ରତି ବହୁତ ସହାନୁଭୂତି ଦେଖାଇଲେ । ସେଠାରେ ମୋର ଅଫିସ କାମ କରି ଆଇନ ପରୀକ୍ଷା ଦେବାକୁ ପଢ଼ିବାରେ ଲଗିଲ । ସେଠାରେ ମୋ କାର୍ଯ୍ୟରେ କଲେକ୍ଟର, ଓକିଲ ଓ ସର୍ବସାଧାରଣ ଖୁବ୍ ସନ୍ତୁଷ୍ଟ ଥିଲେ । କିନ୍ତୁ ମୁଁ ସେଥିରେ ଖୁସି ନଥିଲି । ସେକେଣ୍ଟେଣ୍ଟି ପଦରୁ ଖସି ଏ.ଡି.ଏମ୍. ହେଲି ଏବଂ ଟ ୧୫୫୦ ରୁ ଖସି ଟ ୯୯୦ ରେ ରହିଲି । ଏହା ଭାବିଲେ କାନ୍ଦ ମାଡ଼ୁଥାଏ । ନିର୍ଜନ ଦ୍ୱୀପରେ ନିର୍ବାସିତର ବିଳାପ ଭଳିଆ ବଲାଙ୍ଗୀରରେ ରହି ବିଳାପରେ ଶକ୍ତି ଅପଚୟ ହେବ ଏହି ଭୟରେ ଆଇନ ପଢ଼ିବାରେ ବ୍ୟସ୍ତ ରହିଲି ।

ବଲାଙ୍ଗୀରରେ ବର୍ଷେ ଚାରି ମାସ ରହିଲା ପରେ ପୁଣି ଭୁବନେଶ୍ୱରକୁ ବାଣିଜ୍ୟ ଓ ଶ୍ରମ ବିଭାଗର ଡେପୁଟି ସେକ୍ରେଟାରୀ ହୋଇ ଆସିଲି । ସେହି ପୋଷ୍ଟରେ ବର୍ଷେ ରହିଲି । ସେହି ସମୟରେ ମୋର ଆଇନ ପରୀକ୍ଷା ସରିଗଲା । ଆଇନ ପରୀକ୍ଷା ଦେବାକୁ ମୁଁ ଭାଗଲପୁର କେନ୍ଦ୍ର ବାଛିଲି, କାରଣ ବିହାର ବିଶ୍ୱବିଦ୍ୟାଳୟର ଅନ୍ୟ ଦୁଇଟି କେନ୍ଦ୍ର ହେଉଛି ମୁଜାଫରପୁର ଓ ଦରଭଙ୍ଗା । ଏହା ଓଡ଼ିଶାରୁ ଦୂର । ସେତେବେଳେ ବିହାରରେ ଦୁଇଟି ବିଶ୍ୱବିଦ୍ୟାଳୟ ଥାଏ— ବିହାର ଓ ପାଟନା । ପାଟନା ଅଧୀନରେ ଖାଲି ପାଟନା ଆଇନ କଲେଜ । ସେ ବାହାର ଛାତ୍ରଙ୍କୁ ଅନୁମତି ଦିଏନାହିଁ, ଖାଲି ଦେଉଥାଏ ବିହାର ବିଶ୍ୱବିଦ୍ୟାଳୟକୁ ଯାହା ଅଧୀନରେ ଉପରୋକ୍ତ ତିନୋଟି ଆଇନ କଲେଜ ଥାଏ । ମୁଁ ଆଗରୁ କହିଛି ଆଇ. ଏ. ଓ ବି. ଏ.ରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି-ଥିଲି । ଏହି ସୁନାମ ବଜାୟ ରଖିବା ସକାଶେ ଯତ୍ନସହକାରେ ଆଇନ ବିଦ୍ୟା ପଢ଼ିଲି । ମୋତେ ଏହି ପରୀକ୍ଷା ସକାଶେ ଭାଗଲପୁର ଚାରିଥର ଯିବାକୁ ପଡ଼ିଥିଲା । ପ୍ରଥମ ଓ ଦ୍ୱିତୀୟ ଭାଗ—ପ୍ରତିଭାଗ ସକାଶେ ବାହାର ଛାତ୍ରଙ୍କ ପାଇଁ ଗୋଟିଏ ମନୋନୀତ ପରୀକ୍ଷା ହୁଏ । ସେ ଦୁଇଟି ପରୀକ୍ଷା ଦେଲି । ଏହି ପ୍ରଥମ ଓ ଦ୍ୱିତୀୟ ଭାଗ ପରୀକ୍ଷା ଦେବାପାଇଁ ୬ ମାସ ଅନ୍ତରରେ ଦୁଇଥର ଯିବାକୁ ପଡ଼ିଲା । ସେଠାର ପ୍ରିନ୍ସିପାଲ ଡକ୍ଟର ମିଶ୍ର ମୋ ସକାଶେ ହଷ୍ଟେଲରେ ରୁମ୍ଟିଏ ଦେଇଥିଲେ । ପରୀକ୍ଷା ଦେଲାପରେ ମୋର ବିଶ୍ୱବିଦ୍ୟାଳୟର ସୁନାମ ବଜାୟ ରହିଲା । ପ୍ରଥମ ଶ୍ରେଣୀରେ ପ୍ରଥମ ହେଲି ଶତକଡ଼ା ବାସ୍ତରୀ ମାର୍କ ପାଇ । କିନ୍ତୁ ସ୍ୱର୍ଣ୍ଣ ପଦକ ପାଇପାରିଲି ନାହିଁ ବାହାରର ଛାତ୍ର ହୋଇଥିବାରୁ । ଏହି ଆଇନ ପରୀକ୍ଷାର

କୃତଜ୍ଞ ଦୁଃଖସାଗରର ଗର୍ଭରୁ ମୋତେ ଟିକିଏ ଉପରକୁ ଟେକିପାରିଥିଲା । କିନ୍ତୁ ଗ୍ରାକିରି କ୍ଷେତ୍ରରେ ଘୋର ନୈରାଶ୍ୟ । ମୋର ତଳ ସହକର୍ମୀମାନେ ସବୁ ଉପରେ । ଆର୍. କେ. ପାତ୍ରୀ ଯେ କି ମୁଁ ଏସ୍.ଡ଼.ଓ. ଥିଲାବେଳେ ତହସିଲଦାର ଥିଲେ ସେ ଥିଲେ ସେକ୍ରେଟେରୀ । ଏମ୍. କେ. ଘୋଷ ଯେ କି ମୁଁ କଲେକ୍ଟର ଥିଲାବେଳେ ଏସ୍. ଡ. ଓ. ଥିଲେ ସେ ଥିଲେ ସେକ୍ରେଟେରୀ । ସୋମନାଥ ନନ୍ଦ ଯେ କି ମୁଁ ଏସ୍. ଡି. ଓ. ଥିଲାବେଳେ ଡେପୁଟି କଲେକ୍ଟର ମଧ୍ୟ ନ ଥିଲେ ସେ ଥିଲେ ସେକ୍ରେଟେରୀ, ମୋର ଜୁନିଅର୍ସ ରତ୍ନାକର, ପ୍ରାଣନାଥ, ନାଗସ୍ୱାମୀ ସେ ମଧ୍ୟ ସେକ୍ରେଟେରୀ । ତା ପରେ ସିଧାସଳଖ ଆଇ. ଏ. ଏସ. ବଚ୍ଚାମାନେ ଥିଲେ ମଧ୍ୟ ସେକ୍ରେଟେରୀ ।

ଭଦ୍ରକରେ ଥିବାବେଳେ ମୁଁ ଯେଉଁ ମଫସଲରେ ପଡ଼ିପ୍ରଥା ପ୍ରଚଳନ କରିଥିଲି, ସେଥିସକାଶେ ଏତେ ତଳତଳାନ୍ତ କରିଦେଲେ ଏହା ଭାବି ମୋ ମନ ବିଦ୍ରୋହୀ ହୋଇ ଉଠୁଥାଏ । ଆଉ ଥରେ ଏହି ଭର୍ତ୍ସନାଚିତ ଦଣ୍ଡ ବିରୁଦ୍ଧରେ ମୁଁ ଲଢ଼େଇ କଲି । ସେତେବେଳେ ଚିଫ୍ ସେକ୍ରେଟେରୀ ଥିଲେ ସେନାପତି ସାହେବ । ସେ ମୋତେ ଖୁବ୍ ସମର୍ଥନ କଲେ । ଫାଇଲ ପୁଣି ସେହି ମହାତାବଙ୍କ ପାଖକୁ ଗଲା । କିନ୍ତୁ ଅର୍ଜି ପୁଣି ନାମଞ୍ଜୁର ହେଲା । ଆଗରୁ ଶିବରମଣ ସାହେବ ମୋ ପକ୍ଷରେ ଥିଲେ ମଧ୍ୟ ମହାତାବଙ୍କ ଭାବ ଦେଖି ସେ ମୋର ବିପକ୍ଷ ହୋଇଗଲେ । ମୋ ବିରୁଦ୍ଧରେ ଯେତେବେଳେ ଭଦ୍ରକ ପଡ଼ିପ୍ରଥା ସକାଶେ ଅଭିଯୋଗ କରାଗଲା ସେ ସେତେବେଳେ ଥିଲେ ଯୋଗାଣ ବିଭାଗର ସେକ୍ରେଟେରୀ । ସେ ଟିକିଏ ବିଚାରବନ୍ତ ହୋଇଥିଲେ ଏହି ଭଲ କାମ ସକାଶେ ମୋ ବିରୁଦ୍ଧରେ ପ୍ରସିଡ଼ିଙ୍ଗ କରାଯାଇ ନ ଥାନ୍ତା । ତା ପରେ ମୁଁ କେନ୍ଦୁଝରରେ କଲେକ୍ଟର ଥିଲାବେଳେ ସେ ମୋର ପକ୍ଷ ସମର୍ଥନ କରୁଥିଲେ ମଧ୍ୟ ମୁଁ ସେକ୍ରେଟେରିଏଟ ଆସିବା ପରେ ମୋର ବିରୋଧୀ ହୋଇଗଲେ । ସେନାପତି ସାହେବ ଯାହାଙ୍କର ମୋ ପ୍ରତି ଟିକିଏ ସହାନୁଭୂତି ଥିଲା ଦୁର୍ଭାଗ୍ୟବଶତଃ ସାମାନ୍ୟ ଘଟଣାରୁ ମୁଁ ତାହା ମଧ୍ୟ ହରାଇ ବସିଲି ।

ମୋତେ ଯେତେବେଳେ କୈଫିୟତ୍ ମଗାଗଲା ଯେ ମୁଁ କେନ୍ଦୁଝରରେ କଲେକ୍ଟର ଥିଲାବେଳେ କାହିଁକି ଡାଏରୀ ଫାର୍ମରୁ ଗାଈଟିଏ କିଣିଲି, ତାର କୈଫିୟତ୍ ସ୍ୱରୂପ ସେ ଗାଈ ମରିଯିବା ପରେ ତାର ଯେଉଁ ମୁମୂର୍ଷୁ ବାଛୁରୀଟିଏ ଥିଲା ତାକୁ ସେନାପତି ସାହେବଙ୍କୁ ଦେଖାଇବା ପାଇଁ କାରର ପଛ ସିଟ ପାଖେ ରଖି ମୁଁ ଭୁବନେଶ୍ୱରରୁ ସେନାପତିଙ୍କ କଟକସ୍ଥ ବାସଭବନକୁ ଆସିଲି । ସେତେବେଳକୁ ସେନାପତି ସାହେବ ନ ଥାନ୍ତି । ତାଙ୍କ ଝିଅ ଉଲି ଦେବୀଙ୍କୁ ଶୀଘ୍ର

ଗୋଟିଏ ମିଟିଙ୍ଗରେ ଯୋଗଦେବାକୁ ଥାଏ । ସେ ମୋତେ ମୋ'ର କାରରେ ନେଇ ଛାଡ଼ିଦେବାକୁ ଅନୁରୋଧ କଲେ । କଣ କରିବ ? ପଛପଟେ ବାକ୍ସଟିଏ ଅଛି । ଆଉ କେହି ଲୋକ ନାହିଁ ଯାହା ପାଖରେ ବାକ୍ସଟାକୁ ଓହ୍ଲାଇ ଦେଇ ଛାଡ଼ିଦେଇ ଯିବି । ତାପରେ ଓହ୍ଲାଇବାକୁ ମଧ୍ୟ ସମୟ ନାହିଁ—ଡାଲ ଦେଶଙ୍କର ମିଟିଙ୍ଗ ସମୟ ହୋଇଗଲାଣି । ତେଣୁ ମୁଁ ସେପରି ଅବସ୍ଥାରେ ଆଗ ସିଟରେ ଡାଲ ଦେଶଙ୍କୁ ବସାଇ ମିଟିଙ୍ଗକୁ ନେଲି । ଗଲାବେଳକୁ ଦେଖିଲି ସେନାପତି ସାହେବ ତାଙ୍କ ଗାଡ଼ିରେ ଆସୁଛନ୍ତି । ମୁଁ ଡାଲ ଦେଶଙ୍କୁ ମିଟିଙ୍ଗରେ ଛାଡ଼ି ସେନାପତି ସାହେବଙ୍କୁ ଦେଖା କରିବାକୁ ଗଲି । ତାଙ୍କ ଝିଅଙ୍କର ଯେ ମୁଁ ଏ ଜରୁରୀ କାମ କଲି ସେଇକଥା ନ ବୁଝି ସେ ବୋଧହୁଏ ପଛରେ ବାକ୍ସ ଏବଂ ଆଗରେ ତାଙ୍କ ଝିଅଙ୍କୁ ବସାଇନେବାର ଧୃଷ୍ଟତା ଯୋଗୁଁ ମୋ ଉପରେ ରକ୍ତଗରଳ ଉଗ୍ରିବାଇ-ଥିଲେ ଏବଂ ଖବର ଦେବାରୁ ସେ ଦେଖା ହୋଇ ପାରିବ ନାହିଁ ବୋଲି କହିଲେ । ମନ ଦୁଃଖରେ ଫେରିଆସିଲି । ଏ ଅବସ୍ଥାରେ ଚାକିରି ଛାଡ଼ିବା ଛଡ଼ା ମୋର ଆଉ କଣ ସମ୍ମାନଜନକ ପନ୍ଥା ଥିଲା ? ଆଇନ ପଢ଼ିଲି, ଉପାଧି ନେଲି; ବର୍ତ୍ତମାନ ଚାକିରି ଛାଡ଼ି ଓକିଲାତି କରିବା କଥା । ସେତେବେଳକୁ ମୋର ଚାକିରି ହେଲାଣି ୨୨ ବର୍ଷ, ଆଉ ୩ ବର୍ଷ ପରେ **invalid** ହୋଇପାରିଲେ ପୂରା ପେନ୍‌ସନ ମିଳିବ । ତେଣୁ ଭାବିଲି ଆଉ ତିନିବର୍ଷ ପରେ ପେନସନ ନେଇ ଚାକିରି ଛାଡ଼ିବି । ଏତେବର୍ଷ ଚାକିରି କରି ପେନ୍‌ସନ ନ ନେଇ ହଠାତ୍ ରାଗରେ ଛାଡ଼ିଦେବି, ଓକିଲାତି କିଛି ନ ହେଲେ ନିଜେ ତ ହଇରାଣ ହେବି ଏବଂ ଲୋକମାନେ ମୋତେ ବେକୁବ୍ କହିବେ । ତାପରେ ନିଜକୁ କଷ୍ଟ ଦେବାର ମୋର ଅଧିକାର ଅଛି । ମୁଁ ତ ନିଃସ୍ୱ ଅବସ୍ଥାରୁ ଏତେଦୂର ଉଠିଛି; ପୁଣି ସେହି ନିଃସ୍ୱ ଅବସ୍ଥାକୁ ଫେରିଯିବି । ଚେଷ୍ଟାକଲେ ସଂସାରରେ ଅସମ୍ଭବ କିଛି ନାହିଁ । ନିଃସ୍ୱ ଅଭାବରୁ ଯେପରି ପ୍ରଥମ ସଂଗ୍ରାମ କରିଥିଲି ସେପରି ଫେରେ ଦ୍ୱିତୀୟ ସଂଗ୍ରାମ କରିବି । କିନ୍ତୁ ନିଜକୁ ନିଜେ କଷ୍ଟ ଦେବା ବାହାରେ ମୋର ସ୍ତ୍ରୀ ଓ ପିଲାପିଲିଙ୍କୁ କଷ୍ଟଦେବାର ମୋର କଣ ଅଧିକାର ଅଛି ? ସେତେବେଳକୁ ମୋର ବଡ଼ଝିଅ ଢେଙ୍କାନାଳ ନିବାସୀ ଶ୍ରୀଯୁକ୍ତ ଜୟକୃଷ୍ଣ ମିଶ୍ରଙ୍କ ଖୁଡ଼ୁତା ଭାଇ ଡାକ୍ତର କୁଳମଣି ମିଶ୍ରଙ୍କୁ ବିବାହ କରିଥିଲେ, ଯେ କି ଭବିଷ୍ୟତରେ ଆଖି ବିଭାଗର ପ୍ରଫେସର ହେଲେ । ଆଉ ଝିଅଟିର ବିବାହ ହୋଇ ନଥିଲା । ମୁଁ ଚାକିରି ଛାଡ଼ିଦେଲେ ତାର ଭଲ ସ୍ଥାନରେ ବିବାହ ଅସମ୍ଭବ ଏବଂ ଆଉ ସବୁ ପିଲା ହାଇସ୍କୁଲ ବା ତଳ ଅବସ୍ଥାରେ । ଏସବୁ ଭାବି ଆଇନ ଉପାଧି ପରେ ମଧ୍ୟ ଚାକିରି ଛାଡ଼ିପାରିଲି ନାହିଁ । ସେତେବେଳକୁ

ମହତାବ ବାବୁ ଯାଇ ନବବାବୁ ମୁଖ୍ୟମନ୍ତ୍ରୀ ହୋଇଥାନ୍ତି । ସେ ମୋର ଜମି-ଜମା କମିଟିର ଚେଆରମାନ୍ ଥିଲେ । ଶୁକର ଗୁଡ଼ବ କ ନାହିଁ ଏହି ଦୋଳାୟମାନ ଅବସ୍ଥାରେ ଥିଲାବେଳେ ଦୃଢ଼ପରକେର ହୋଇଗଲ ପ୍ରଥମେ ନବବାବୁଙ୍କ ସଙ୍ଗେ କଜିଆ କରିବାକୁ । ସେ ତ ତାଙ୍କର କମିଟି କାମ କେହି କରି ନ ପାରିବାରୁ ମୋତେ ନେଲେ ଏବଂ ମୁଁ କାମ ସୁଗ୍ରରୁରୂପେ ସଂପାଦନ କଲି । ତାଙ୍କ କଥାରେ ନ ଚଢ଼ି ମୁଁ ଯଦ ଘରେଇ ବାଗରେ ଥାନ୍ତି, ସୋମନାଥ ମହାପାତ୍ର ତାଙ୍କ କେଶକୁ ଯେପରି ସୁଗ୍ରରୁରୂପେ ଚଳେଇନେଲେ ମୁଁ ସେପରି କରି ନେଇଥାନ୍ତି । ଚରିତ୍ର ଓଠୋର ଭର୍ତ୍ସନା ସତ୍ତ୍ୱେ ବ. ସି. ମୁଖାର୍ଜୀଙ୍କ ଭଲ ଭାବ ଥିବାରୁ ମୋର ୩ ବର୍ଷପରେ ଆଇ. ସି. ଏସ୍‌ଂରେ ଅଫିସିଏଟିଙ୍ଗ କଲାପରେ ସେଥିରେ ମୁକରିର ହେବାକୁ କଛି କଷ୍ଟକର ହୋଇ ନଥାନ୍ତା । ନବବାବୁ ଏସବୁ କଥା ଜାଣନ୍ତି । ମୋର ଗୁଣ ଓ ଦୁର୍ଗୁଣ ସବୁ ତାଙ୍କୁ ଜଣା । କାଳୁଡ଼ଗ୍ରେରକୁ ମୁଣ୍ଡକାଟ କଲାପରେ ମୋର ସାମାନ୍ୟ ସାମାନ୍ୟ ଘଟଣାକୁ ବଢ଼ କର ମୋର କାର୍ଯ୍ୟଦକ୍ଷତା ପ୍ରତି ଆଦୌ ଦୃଷ୍ଟି ନ ଦେଇ ମୋତେ ଏପରି ତଳତଳାନ୍ତ ଓ ଅପମାନତ କରିବାର ଯଥାର୍ଥତା କଣ ? ଏହିସବୁ ଭାବଚନ୍ତି ତାଙ୍କ ସଙ୍ଗେ କଜିଆ କଲି । ସେତେବେଳକୁ ମୁଁ ହତାଶ ହୋଇଯାଇଥିଲ । ଭାବରେ ଏବଂ ଭାଷାରେ ସଂଯମ ନ ଥିଲା । ସେତେବେଳେ ଶ୍ରୀଯୁକ୍ତ ରାଧାନାଥ ରଥ ନବବାବୁଙ୍କ ପାଖରେ ଥିଲେ । ସେ ଦେଖି ସ୍ତବ୍ଧ ହୋଇଗଲେ ଏବଂ ଆଖି ମଧ୍ୟ ମାରୁଥିଲେ । ମୋର କନ୍ତୁ ବକ୍ତବ୍ୟ ଶେଷ ନହେବା ପୂର୍ବରୁ ମୁଁ ନଗ୍ଲନ୍ତେ । ଭଗବାନଙ୍କ ଜଣାଣରେ ଯେପରି ଅଛୁ ଆଜ ମୁଁ ମନବୋଧ କର ଗାଳଦେବ, ସେପର ଗାଳଦେଇ ଫେରି-ଆସିଲି । ତାର କଛିଦନ ପରେ ସେ ମୋତେ ଆଇ. ଏ. ଏସ. ପାହ୍ୟାରେ ଅଫିସିଏଟ କରିବାକୁ ଦେଲେ । ଏଥି ସକାଶେ ମୁଁ ତାଙ୍କଠାରେ କୃତଜ୍ଞ ।

କନ୍ତୁ ସେତେବେଳକୁ ଲେଡ଼ଗୁଡ଼ କହୁଣୀକ ବୋହିଯାଇଥିଲା । ସେତେବେଳକୁ ମୁଁ ଆଇ. ଏ. ଏସ୍.ରେ ପାଇଥାନ୍ତି ଟ୧୫୦୦; କନ୍ତୁ ମୋତେ ମିଳଲା ଟ୧୧୨୦ । କେନ୍ଦ୍ରଶାସନକୁ ମୁଁ ଫେରେ ଅଫିସିଏଟ କଲାଦନଠାରୁ ଟ ୧୪୦୦ ପାଇବାର ହକ୍‌ଦାର ବୋଲ ତନଥର ଦରଖାସ୍ତ ଦେଲ । ତୃତୀୟଥର ଓଡ଼ିଶା ସରକାର ମୋର ଦାବକୁ ସମର୍ଥନ କଲେ; କନ୍ତୁ ହେଲାନାହିଁ । ଚତୁର୍ଥ ଥର କେନ୍ଦ୍ର ସରକାର ମୋତେ ସାନ ଅଫିସିଏଟିଙ୍ଗ ଦନଠାରୁ ଟ୧୩୫୦ ଦେଲେ । ଏହାଦ୍ୱାରା ଅବସର ନେଲାବେଳେ ମୋତେ ବାକ ଦରମା ହିସାବରେ ପ୍ରାୟ ଷୋଳହଜାର ଟଙ୍କା ମିଳଲା; କନ୍ତୁ ଅଫିସିଏଟିଙ୍ଗ ଭଙ୍ଗ ହୋଇଥିବାରୁ ମୋର ପ୍ରାପ୍ୟ

ଷାଠିଏ ହଜାର ଟଙ୍କା କ୍ଷତି ହୋଇଗଲା । ଅନ୍ତତଃପକ୍ଷେ ମୁଁ ୩ ବର୍ଷ କମିଶନର ହୋଇଥାନ୍ତି । ତାହା ନ ହୋଇ ଖାଲି ସେକ୍ରେଟେରୀ ପାହ୍ୟାରୁ ଅବସର ନେଲି । ପେନ୍‌ସନରେ ଅବଶ୍ୟ କ୍ଷତି ହୋଇନାହିଁ । ଆର୍ଥିକ କ୍ଷତି ଛଡ଼ା ଦଶବର୍ଷକାଳ ମୋର ତଳିଆ କର୍ମଚାରୀମାନେ ମୋ ଉପରେ କାମ କରୁଥିବାବେଳେ ମୋତେ ସେ ତଳ ପାହ୍ୟାରେ କାମ କରିବାକୁ ପଡ଼ୁଥିଲା, ସେଥିସକାଶେ ମୁଁ କାହା ଆଗରେ ମୁହଁ ଦେଖାଇ ପାରୁ ନଥିଲି । ମୁଁ ବଡ଼ ଜ୍ଞାନ ଓ ସମାଜପ୍ରିୟ ଥିଲି । କିନ୍ତୁ ମୋର ପଦାବନତି ପରେ ଖାଲି ଘରେ ଆବଦ୍ଧ ହୋଇ ରହିଲି । ମୋ ନାମରେ ଗଦାଏ ପ୍ରସିଡ଼ିଙ୍ଗ କରି ମୋର ଜୁନିଅର ଶ୍ୟାମସୁନ୍ଦର ପାଟ୍ଟ, ଅଚ୍ୟୁତାନନ୍ଦ ପୂଜାରୀ ଓ ମୋହମ୍ମଦ୍‌ ହିନ ଅହମ୍ମଦଙ୍କୁ ଫେରେ ମୋର ଆଗରୁ ଆଇ. ଏ. ଏସ୍‌.କୁ ପ୍ରମୋଶନ ଦେଇଦେଲେ । ଶ୍ୟାମସୁନ୍ଦର ପାଟ୍ଟ ସଦାଶିବ ତ୍ରିପାଠୀଙ୍କର ଜିଲ୍ଲାର ଲୋକ । ପୂଜାରୀ ସେନାପତି ସାହେବଙ୍କ ପ୍ରିୟ । ଅହମଦ ମହତାବଙ୍କ ଜିଲ୍ଲାବାସୀ । ମୋର ନିଜ ଛଡ଼ା ଆଉ କାହାର ସୁପାରିଶ ନ ଥିଲା । ବର୍ତ୍ତମାନ ମୁଁ ବୁଝିଲି, ସ୍ୱାଧୀନତା ପରେ ସୁପାରିଶହୀନ ଲୋକର ଜୀବନ ନିରର୍ଥକ । ସ୍ୱାଧୀନତା ପୂର୍ବରୁ ଆକ୍ରୋଶ ରଖି ବଡ଼ ବଡ଼ ଅଫିସରମାନେ କ୍ଷତି କରୁଥିଲେ । ଖୋସାମତର ସ୍ଥାନ ସବୁବେଳେ ଅଛି । ତଥାପି ବ୍ରିଟିଶ ଶାସନରେ କାର୍ଯ୍ୟଦକ୍ଷତାର ସ୍ଥାନ ଥିଲା । ଭ୍ରମ ପ୍ରତି କିଛି ଗୋଟିଏ ଅନ୍ୟାୟ ହେଲେ, କହିଲେ ଖୋଲାମନରେ ଶୁଣିବାକୁ ହାକିମ ମିଳୁଥିଲେ । କିନ୍ତୁ ସ୍ୱାଧୀନତା ପରେ ତାହା ଗଲା । ଖାଲି ଧରାଧରେ ମୁଁ ପାରିଲିନାହିଁ ଏବଂ ଯେଉଁ ଉପରସ୍ଥ ହାକିମମାନେ ମୋ ପ୍ରତି ସଦୟ ଥିଲେ ସେମାନେ ମନ୍ତ୍ରୀଙ୍କ ପ୍ରତିକୂଳ ମତ ଜାଣି ମୋ ପ୍ରତି ନ୍ୟାୟ କରିବାରୁ ମଧ୍ୟ ଓହରିଗଲେ । ସ୍ୱାଧୀନତା ପରେ ମୋର ଏତେ କ୍ଷତି ହେଲା ଯେ ଅଗଷ୍ଟ ପନ୍ଦର ଉତ୍ସବରେ ଯୋଗ ଦେବାକୁ ମୋର ଅନ୍ତର ଡାକିଲା ନାହିଁ । କେବେ କେବେ ଶରୀରରେ ଯୋଗ ଦେଲେ ମଧ୍ୟ ଅନ୍ତରରେ ବିଦ୍ରୋହାନଳ ଜଳୁଥିଲା । □□□

# ଫେରେ ଆଇ. ଏ. ଏସ୍.

ପୁଣି ଯେତେବେଳେ ଆଇ. ଏ. ଏସ୍.ରେ ଅଫିସିଏଟ କଲି, ମୁଖ୍ୟ ନିର୍ବାଚନ ଅଫିସର ଓ ଡେପୁଟି ସେକ୍ରେଟେରୀ ଭାବେ ଘରୋଇ ବିଭାଗରେ ଯୋଗ ଦେଲି । ଏହି କାମରେ ମୁଁ ସାତବର୍ଷ ରହି କାର୍ଯ୍ୟରୁ ଅବସର ନେଲି । ଅବସର ନେଲାବେଳକୁ ମୋର ସେକ୍ରେଟେରୀ ପ୍ୟାହା ହୋଇଥିଲା । ତେଣୁ ଇଲେକ୍‌ସନ ସାଙ୍ଗକୁ ଆସିଡ଼ନାଲ ସେକ୍ରେଟେରୀ ପ୍ୟାହା ପାଇଲି । ୧୯୫୭ ଏବଂ ୧୯୬୨ ଏହି ଦୁଇଟି ପଞ୍ଚବାର୍ଷିକ ନିର୍ବାଚନ ମୁଁ କରିଥିଲି । କେବଳ ୧୯୬୧ରେ ଯେତେବେଳେ ଓଡ଼ିଶା ଆସେମ୍ବ୍ଲିକୁ ଉପନିର୍ବାଚନ ହେଲା, ସେତେବେଳେ ଚାରି ମାସ ମୁଁ ଏହି କାର୍ଯ୍ୟରେ ନ ଥିଲି । ଉପନିର୍ବାଚନ ସମୟକୁ ମୋତେ କାହିଁକି ଯେ ଛେଇ ଦିଆଗଲା, ମୁଁ ଜାଣିପାରିଲି ନାହିଁ । ହୁଏତ ମହତାବ ବା ବିଜୁ ପଟ୍ଟନାୟକଙ୍କ ମୋ ପ୍ରତି ବିଶ୍ୱାସ ନ ଥିଲା, ସେଥିଯୋଗୁଁ । ୧୯୫୭ ସାଲରେ ଯେତେବେଳେ ଭୋଟ ନିଆଗଲା ଏବଂ ଅନେକ ବ୍ୟକ୍ତି ମୋତେ କିଛି କିଛି ପ୍ରଭାବିତ କରିବାକୁ ଚେଷ୍ଟା କରିଥିଲେ । ନିର୍ବାଚନରେ ସବୁ କଥା ତ ଆଇନ ଅନୁସାରେ ହୁଏ; ସୁପାରିଶ ଦେଖାଇବାର ବାଟ ନାହିଁ । ଖାଲି ଗୋଟିଏ କଥାରେ ସେମାନେ ପ୍ରଭାବିତ କରିବାକୁ ଚେଷ୍ଟା କରନ୍ତି । ସେ ହେଉଛି ଭୋଟକେନ୍ଦ୍ରମାନଙ୍କୁ କେଉଁ କେଉଁ ଗାଁ ସଂଯୋଜିତ ହେବ ଏବଂ କେଉଁ ଗାଁରେ ଭୋଟକେନ୍ଦ୍ର କରାଯିବ । ଏମ୍. ଏଲ୍. ଏ. ମାନଙ୍କର ଯେଉଁ ଗାଁରେ ବେଶୀ ପ୍ରତିପତ୍ତି ବା ସୁବିଧା, ସେ ଗାଁରେ ଭୋଟ କେନ୍ଦ୍ର କରାଇବାକୁ ଚେଷ୍ଟା କରନ୍ତି ଏବଂ ଅନ୍ୟ ଗାଁଗୁଡ଼ିକ ଏପଟ ବା ସେପଟ ଭୋଟକେନ୍ଦ୍ରରେ ସଂଲଗ୍ନ କରିବାକୁ ଚେଷ୍ଟା କରନ୍ତି । କିନ୍ତୁ ଏହି ବିଷୟରେ ଇଲେକ୍‌ସନ କମିଶନରଙ୍କ ନିର୍ଦ୍ଦିଷ୍ଟ ଉପଦେଶ ଥାଏ ଯେ ଭୋଟ କେନ୍ଦ୍ରଗୁଡ଼ିକୁ ଯେତେଦୂର ସମ୍ଭବ ବଡ଼ ବଡ଼ ଗାଁରେ ଯେଉଁଠାରେ ଭୋଟ ନେବା ଅଫିସରମାନଙ୍କର ରହିବା ସକାଶେ ଜାଗା ଥିବ, ଯେଉଁଠାରେ ଭୋଟ ନେବା ସକାଶେ ଭଲ ସ୍କୁଲଘର ଥିବ, ଯେଉଁଠାକୁ ଯାତାୟାତର ସୁବିଧା ଥିବ ଏବଂ ଯେ ଭୋଟ କେନ୍ଦ୍ରରେ ସଂଶ୍ଳିଷ୍ଟ ଥିବା ଇଲାକାର କେନ୍ଦ୍ର ସ୍ଥାନରେ ଥିବ, ସେ ସବୁ ଜାଗାକୁ ଭୋଟ କେନ୍ଦ୍ର

ହିସାବରେ ବସ୍ତିପିନ୍ଧ ଏବଂ କୌଣସି ଭୋଟ କେନ୍ଦ୍ରରେ ଅତି କମ୍ ଭୋଟରେ ବା ହଜାରରୁ ବେଶୀ ଭୋଟରେ ରହିବେ ନାହିଁ। ଏହି ମତ ଅନୁସାରେ ମୁଁ ନିଜେ ବହୁତ ପରିଶ୍ରମ କରି ପ୍ରତି ଜିଲ୍ଲାକୁ ଯାଇ ଜିଲ୍ଲା ଅଫିସରଙ୍କ ସାହଚର୍ଯ୍ୟରେ ଭୋଟ ମଣ୍ଡଳୀ ଓ କେନ୍ଦ୍ରର ତାଲିକା ତିଆରି କରିଥାଏ। ନିୟମ ଅନୁସାରେ ଆମେ ଏସବୁ ତିଆରି କଲାପରେ ଏହାର ନକଲ ସମସ୍ତ ରାଜନୈତିକ ଦଳମାନଙ୍କୁ ଦେଉ ଏବଂ ସେମାନଙ୍କ ମତାମତ ବିଚାର କରି ଚୂଡ଼ାନ୍ତ ତାଲିକା ତିଆରି କରୁ। ପ୍ରଭାବଶାଳୀ ଲୋକମାନେ ଏହି ଭୋଟ କେନ୍ଦ୍ରଗୁଡ଼ିକ ତାଙ୍କ ସୁବିଧା ଗାଁକୁ ଟାଣିବାକୁ ଚେଷ୍ଟା କରନ୍ତି ଏବଂ ମାରିଲେ ମୋଟ ଭୋଟ ମଣ୍ଡଳୀରେ ଯେପରି ୧୫୦୦ ପର୍ଯ୍ୟନ୍ତ ଭୋଟର ରହିପାରିବେ, ଏହା ଚେଷ୍ଟା କରନ୍ତି। ମୋ ଉପରେ ୧୯୬୭ ଭୋଟ ପୂର୍ବର ଏହିପରି ବହୁତ ଚାପ ପଡ଼ିଥିଲା। କିନ୍ତୁ ମୁଁ ଏପରି କୌଣସି ପ୍ରସ୍ତାବରେ ରାଜି ହୋଇ ନ ଥିଲି। ୧୯୭୧ ସାଲ ଉପନିର୍ବାଚନରେ ମୁଁ ନ ଥିବାବେଳେ ଇଲେକ୍ସନ କମିଶନଙ୍କ ଉପଦେଶାବଳୀର ବହୁତ ବ୍ୟତିକ୍ରମ ହୋଇଥିଲା। କେଉଁଠି କେଉଁଠି ୧୫୦୦ ପର୍ଯ୍ୟନ୍ତ ଭୋଟରେ ରଖାଯାଇଥିଲା ଏବଂ ଗୋଟିଏ ଗ୍ରାମ କୌଣସି ଭୋଟ କେନ୍ଦ୍ରର ନିକଟ ଥିଲେ ମଧ୍ୟ ତାକୁ ଦୂର ଭୋଟକେନ୍ଦ୍ର ସଙ୍ଗେ ଯୋଡ଼ି ଦିଆଯାଇଥିଲା। ତାର ଉଦ୍ଦେଶ୍ୟ ହେଉଛି ସେହି ଗାଁର ଲୋକମାନେ କୌଣସି ପ୍ରଭାବଶାଳୀ ବ୍ୟକ୍ତିକୁ ଭୋଟ ଦେବାକୁ ଇଚ୍ଛୁକ ନ ଥିବାରୁ ସେମାନଙ୍କୁ ଦୂରକୁ ଯିବାକୁ ପଡ଼ିଲେ ସେମାନେ ଯେପରି ବେଶୀ ସଂଖ୍ୟାରେ ଯିବେନାହିଁ। ୧୯୭୧ ଆସେମ୍ବ୍ଲି ନିର୍ବାଚନ ପରେ ମୁଁ ଯେତେବେଳେ ୧୯୭୨ରେ ପାର୍ଲିଆମେଣ୍ଟ ନିର୍ବାଚନ କଲି, ଏପରି ତ୍ରୁଟି ବହୁତ ଦେଖିପାରିଲି।

ମୁଖ୍ୟ ନିର୍ବାଚନ ଅଫିସରମାନଙ୍କର ପ୍ରତି ସାଧାରଣ ନିର୍ବାଚନ ପୂର୍ବରୁ ଭାରତର ପ୍ରଧାନ ପ୍ରଧାନ ଓ ସୁରମ୍ୟ ସ୍ଥାନମାନଙ୍କରେ ଅଧିବେଶନ ହୁଏ। ମୁଁ ଏହି ପଦରେ ସାତ ବର୍ଷ ରହିବାରୁ ଭାରତବର୍ଷର କେତେକ ସୁନ୍ଦର ସହର ଦେଖିବାକୁ ସୁବିଧା ପାଇଥିଲି; ଯଥା—ଶ୍ରୀନଗର, ଜୟପୁର ଓ ବାଙ୍ଗାଲୋର। ଉନ୍ନୟନ ବିଭାଗରେ ଥିଲାବେଳେ ସୁବିଧା ପାଇଥିଲି ଶିଲଙ୍ଗ, ହାଇଦରାବାଦ ଓ ନାଗପୁର ଦେଖିବାକୁ। ଶ୍ରୀନଗରରୁ ଆମେ ଯାଇଥିଲୁ ଗୁଲମାର୍ଗ, ପହେଲଗାଁ ଏବଂ ବରଫାବୃତ ଟହେଲମାର୍ଗ। ବାଙ୍ଗାଲୋରରୁ ଆମେମାନେ ଯାଇଥିଲୁ ମହୀଶୂର ଓ ବୃନ୍ଦାବନ ଗାର୍ଡେନ। ଜୟପୁରରୁ ଯାଇଥିଲୁ ଉଦୟପୁର। ଶିଲଙ୍ଗରୁ ଯାଇଥିଲୁ ଚେରାପୁଞ୍ଜି ଓ କାଜିରଙ୍ଗା ବନ୍ୟଜନ୍ତୁ ସଂରକ୍ଷଣ କେନ୍ଦ୍ର (Sanctuary)। ମୁଖ୍ୟ ନିର୍ବାଚନ ଅଫିସର ଇଲେକ୍ସନ କମିଶନଙ୍କର ଦ୍ୱାରା

ନିଯୁକ୍ତ ଏବଂ ତାଙ୍କ ନିର୍ଦ୍ଦେଶରେ କାମ କରେ । ତେବେ ଅଧିକାଂଶ କାମ ଷ୍ଟେଟ ଗଭର୍ଣ୍ଣମେଣ୍ଟର ସଂଯୋଗରେ ହୁଏ । ତାପରେ ମୁଖ୍ୟ ନିର୍ବାଚନ ଅଫିସରର ସାଧାରଣ ନିର୍ବାଚନର ବର୍ଷେ ପୂର୍ବରୁ ପୂରା କାମ ଆରମ୍ଭ ହୁଏ । ଅନ୍ୟ ସମୟରେ ଯଥେଷ୍ଟ କାମ ନ ଥିବାରୁ ସେ ଘରୋଇ ବିଭାଗର କେତେକ କାମ କରନ୍ତି । ମୁଁ କରୁଥିଲି ଜେଲ୍, ପଲିଟିକାଲ୍, ପ୍ରେସ୍ର ଓ ଏଷ୍ଟାବ୍ଲିଶମେଣ୍ଟ । ଘରୋଇ ବିଭାଗର ସେକ୍ରେଟେରୀ ପ୍ରମୋଦ ସିଂହଙ୍କ ଛଡ଼ା ଅନ୍ୟମାନଙ୍କ ସଙ୍ଗେ ମୋର ଭଲ ଭାବ ଥିଲା । □□□

## ଗୁପ୍ତଚରଙ୍କ ଦୁର୍ଦ୍ଦଶା

ଶିବରମଣ ସାହେବ ଚିଫ୍ ସେକ୍ରେଟେରୀ ଥିଲେ । ମୁଁ ବଲାଙ୍ଗୀର ଓ କେନ୍ଦୁଝରରେ କଲେକ୍ଟର ଥିଲା ସମୟରେ ମୋ ପ୍ରତି ପୂରା ସହାନୁଭୂତିଶୀଳ ଥିଲେ । କିନ୍ତୁ ପରେ ତାଙ୍କର କଣ ହେଲା କେଜାଣି ସେ ମୋପ୍ରତି ବୀତସ୍ପୃହ ହୋଇଗଲେ । ସେ ଜଣେ **Strong likes and dislikes**ର ଲୋକ, ଅର୍ଥାତ୍ ଯାହାକୁ ଭଲ ପାଇବେ ତାର ଦୋଷ ଆଦୌ ଦେଖିବେ ନାହିଁ ଏବଂ ଯାହାକୁ ଭଲ ନ ପାଇବେ ସେ ଯେତେ କାମ କଲେ ମଧ୍ୟ ପସନ୍ଦ ହେବନାହିଁ । ତେଣୁ ଅଫିସରମାନେ ସବୁବେଳେ ତାଙ୍କର ସ୍ନେହଦୃଷ୍ଟିରେ ରହିବାକୁ ଚେଷ୍ଟା କରନ୍ତି । ଏ ହେଲା ଗୁପ୍ତଚରମାନଙ୍କ ଘୋର ଦୁର୍ଦ୍ଦଶା । ତୁମର ଗୁପ୍ତ ଚରିତ୍ର ଚିଠା ଲେଖିବା ଅଧିକାର ଉପର ହାକିମ ପାଖରେ ଅଛି । ସେଥିରେ ଯାହା ଲେଖାହୁଏ, ସେ ସବୁର ନକଲ ତୁମକୁ ମିଳେନାହିଁ । କେବଳ ନିୟମକୁ ଆଖି ଠାରିଲାପରି କେବେ କେବେ ସେଥିରୁ କେତେ ଉଦ୍ଧୃତ ଅଂଶ ତୁମକୁ ଦିଆଯାଏ ତୁମେ ଏହି ଦୋଷ ସଂଶୋଧନ କରିପାରିବ ବୋଲି । ବଙ୍ଗଳାରେ ବର୍ତ୍ତମାନ ଆନ୍ଦୋଳନ ହେଉଛି ଏ ଗୁପ୍ତ ଚରିତ୍ର ପଞ୍ଜିକା ଉଠାଇ ଦିଆଯାଉ ବୋଲି । ଏଠା ଏକଦମ୍ ଉଠାଇଦେଲେ କୌଣସି ଅଫିସର ବିଷୟରେ କିଛି ଜଣାପିବ ନାହିଁ । ସମସ୍ତ ଉପର ଅଧିକାରୀ ଯେ ଖାମଖିଆଲି ଭାବରେ ଲେଖନ୍ତି ତାହା

ନୁହେଁ; କେତେକ ବିବେକ-ଅନୁମୋଦନକ୍ରମେ ଠିକ ଚଢ଼ିଲ ଲେଖନ୍ତି । କିନ୍ତୁ କେତେକ ଆକ୍ରୋଶ ରଖି ଲେଖନ୍ତି । ଅମକ ଦିନ ଅମକ କର୍ମଚାରୀ ମତକଥା ସିଧାଭାବରେ କହିଥିଲା । ତା ଉପରେ ଆକ୍ରୋଶ ଥିଲେ ତା ବିଷୟରେ ସ୍ପଷ୍ଟବାଦୀ ଲେଖା ନ ହୋଇ ଲେଖାଯିବ, **tactless** ଅର୍ଥାତ୍ ଅଖାଡ଼ୁ ବା ଦେଶକାଳପାତ୍ର-ବିଚାରଶୂନ୍ୟ । ଜଣେ ହାକିମ ଲେଖିଲେ ଅଖାଡ଼ୁ ତ ଆଉ ଜଣେ ଲେଖିଲେ ବିଚାରବନ୍ତ । ଏସବୁ ସରକାରୀ କର୍ମଚାରୀ ବିଷୟରେ ଗୋଟିଏ ମୋଟାମୋଟି ଧାରଣା ଦିଏ; କିନ୍ତୁ ଏହାକୁ ବେଦର ଗାର ବୋଲି ମନେ କରିବା ଉଚିତ ନୁହେଁ ।

ମୁଁ ଆଇ. ଏ. ଏସ୍.କୁ ଯିବା ପୂର୍ବରୁ ଓଡ଼ିଶା ଡେପୁଟି ଓ ସବଡେପୁଟି କଲେକ୍ଟର ଆସୋସିଏସନର ପ୍ରେସିଡେଣ୍ଟ ଥିଲି । ଆମର ଦାବି ଥିଲି ଯେ ସେକ୍ରେଟେରିଏଟରେ ଅଧିକାଂଶ ଡେପୁଟି ସେକ୍ରେଟେରୀ ପଦ, କେତେକ ହେଡ୍ ଅଫ୍ ଡିପାର୍ଟମେଣ୍ଟ ପଦ ଏ. ଡି.ଏମ୍. ମାନଙ୍କ ସକାଶେ ନିର୍ଦ୍ଦିଷ୍ଟ ରଖାଯାଉ । ଶିବରମଣ ସାହେବ ଆମକୁ ଦେଖିଲେ ଭାରି ବିଗିଡ଼ୁଥିଲେ । ସେ କହୁଥିଲେ, ତୁମେ ଓଡ଼ିଆ ଅଫିସରମାନେ କାମ କରିବାକୁ ଚାହଁ ନାହିଁ, ତୁମେ ପଦୋନ୍ନତି ଚାହଁ ଖାଲି ଓଡ଼ିଆ ହୋଇଥିବାରୁ । ଏପରି ମନ୍ତବ୍ୟ ସମୟେ ସମୟେ ମୋର ଅସହ୍ୟ ହେଉଥିଲି । ଏହା ଉପରେ ଯଦି କିଛି ପ୍ରତିବାଦ କରିବ, ସେ ଅଫିସର ହେଲି ଉଦ୍ଧତ । ଏତେ ଡରି ଡରି, ଏତେ ଜଗି ଜଗି କେତେ ଚଳିବ ? ଅପମାନ ସହି ପାଟି ଫିଟେଇବ ନାହିଁ, ମାଡ଼ ଖାଇ ପ୍ରତିବାଦ କରିବ ନାହିଁ, ଏଟା ମନୁଷ୍ୟ ଚରିତ୍ର ପ୍ରତି ଅପମାନ । ଅଥଚ ଚାକିରିରେ ଆଶା କରାଯାଏ ସେଇଆ କରିବାକୁ ହେବ । ଏଥିରେ ପ୍ରମାଣିତ ହୁଏ ଚାକିରିଟା ମନୁଷ୍ୟ ଚରିତ୍ର ପ୍ରତି କେତେ କ୍ଷତିକାରକ । ଏଥିରେ ସାହସିକତା, ସ୍ପଷ୍ଟବାଦିତା ଏବଂ ନିଜର ପ୍ରତିଭା ବିକାଶ ପାଏ ନାହିଁ । **Initiative** ବା ନୂଆକଥା କିଛି କରିବା ବା ନୂତନ ବିଚାର କରିବାର ଅବକାଶ ନ ଥାଏ । ହାତେ ମାପି ଚାରିଖଣ୍ଡେ ଚାଲିବାକୁ ପଡ଼େ । ସାବଧାନ ଓ ହୁସିଆର ହେବା ସବୁଠୁ ବେଶୀ ଆବଶ୍ୟକ । କେଉଁଆଡ଼େ ହାଉଆ ବୋହୁଛି, ସେ ଆଡ଼କୁ ନଜର ଦେବାକୁ ପଡ଼ିବ । ଉପର ହାକିମଙ୍କର ମର୍ଜି କଣ, ଚାହିଦା କଣ, ସେ କପରି ପ୍ରକୃତିର ଲୋକ ଅନୁଧ୍ୟାନ କରିବାକୁ ହେବ । ଗତାନୁଗତିକ ପନ୍ଥାରେ କାମ କରିବାକୁ ହେବ । **Precedent** ବା ପିଛିଲି ନଜିରକୁ ଆଖିଆଗରେ ରଖିବାକୁ ହେବ । ଏଥିରେ ମନୁଷ୍ୟର ଚରିତ୍ର ଓ

ଅନ୍ତର୍ନିହିତ ପ୍ରତିଭା ପ୍ରକାଶ ପାଇବା ଅସମ୍ଭବ । ଏସବୁ ପରିବେଷ୍ଟନୀରେ ଏବଂ କଟକଣା ମଧ୍ୟରେ ଯେତେଦୂର ସମ୍ଭବ କର୍ମଚାରୀର ଯୋଗ୍ୟତା ପରୀକ୍ଷା କରାଯାଏ । ତେଣୁ ବୁଦ୍ଧିମାନ ଓ ପ୍ରତିଭାଶାଳୀ ଲୋକ ସରକାରୀ ଚାକିରିରେ ପ୍ରବେଶ କରିବା ଉଚିତ ନୁହେଁ । କିନ୍ତୁ ଭାରତବର୍ଷ ଭଳିଆ ଅନୁନ୍ନତ ଦେଶରେ ଯେଉଁଠାରେ ଶିଳ୍ପ, ବ୍ୟବସାୟ ଓ ବାଣିଜ୍ୟ ନାହିଁ, ସେଠି ଶିକ୍ଷିତ ଯୁବକମାନେ କଣ କରିବେ ? ବର୍ତ୍ତମାନର ଏସବୁର କିଛି ବିକାଶ ହେବାକ୍ଷଣି ଆଇ. ଏ. ଏସ୍. କୁ ଆଉ ପ୍ରଥମ ଶ୍ରେଣୀର ଯୁବକମାନେ ଯାଉନାହାନ୍ତି । ତେଣୁ ଚିନ୍ତା କରାଯାଉଛି କଣ କରାଯିବ, କିପରି ଏ ଶ୍ରେଣୀର ଯୁବକମାନଙ୍କୁ ଆକୃଷ୍ଟ କରାଯାଇ ପାରିବ, କେତେଦୂର ଦରମା ବଢ଼ାଯାଇ ପାରିବ ? ଏସବୁ ତ କରିବା କଥା । ତେବେ ଭାରତ ଭଳିଆ ଦରିଦ୍ର ଦେଶରେ ଯେଉଁଠାରେ ଗରିବ ଓ ଧନୀ ମଧ୍ୟରେ ପାର୍ଥକ୍ୟ ବହୁତ ବେଶୀ, ଯେଉଁଠାରେ ଶ୍ରେଷ୍ଠ ଓ ବଡ଼ ଚାକିରିଆଙ୍କ ଦରମା ମଧ୍ୟରେ ତଫାତ୍ ବହୁତ ବେଶୀ, ଯେଉଁଠାରେ ଦରମା ଛଡ଼ା ବଡ଼ ଚାକିରିଆମାନେ ଆହୁରି ବହୁତ ସୁବିଧା ଭୋଗ କରିଥାନ୍ତି, ଯେଉଁଠାରେ ସମାଜବାଦର ଦାବି ଉଠୁଛି, ସେଠାରେ ଉପର ଚାକିରିଆଙ୍କ ଦରମା କେତେଦୂର ବଢ଼ାଇ ଦିଆଯାଇପାରେ, ତାହା ବିଚାରିବାର କଥା । ଖାଲି ଦରମା ନ ବଢ଼ାଇ ଯଦି ଦର୍‌ଦାମ୍ ରୋକାଯାଏ ଏବଂ ଚାକିରିରେ ସମ୍ମାନ ରକ୍ଷା କରାଯାଏ, ତେବେ ବୋଧହୁଏ ଆହୁରି ଉପଯୁକ୍ତ ଲୋକମାନେ ଏଥିରେ ପ୍ରବେଶ କରିବେ । □□□

## ଚାକିରି ଓ ରାଜନୀତି

ଚାକିରିରେ ସମ୍ମାନ ମାନେ କଣ ? ରାଜନୀତିକମାନେ ଭାବୁଛନ୍ତି ଚାକିରିଆମାନଙ୍କ ହାତରେ ନିରଙ୍କୁଶ କ୍ଷମତା ରହିଯାଉଛି । ସେମାନେ ଭାବନ୍ତି—ସେମାନେ ତ ଲୋକସାଧାରଣଙ୍କର, ଜନତାର ଓ ଦେଶର ପ୍ରତିନିଧି, ସେମାନେ ଯାହା କରିବେ ସେଇଆ । ସେମାନେ ଯାହା କହିବେ ଚାକିରିଆମାନେ ତାହା କାହିଁକି କରିବେ ନାହିଁ ? ସେମାନଙ୍କ ହୁକୁମ ବିରୁଦ୍ଧରେ କାହିଁକି ଅସଂଖ୍ୟ ପୁରୁଣାକାଳିଆ ନିୟମ ଓ ନଜିର ଦେଖାଇବେ ? ସେମାନେ ମଧ୍ୟ କୋର୍ଟର ନିୟମକାନୁନ୍ ବା ବିଚାରର ପ୍ରତି ଅସହିଷ୍ଣୁ । ସେମାନେ ଭାବନ୍ତି ଯୁଗ ବଦଳିଯାଉଛି, ଜନମତ ବଦଳିଯାଉଛି,

ଦେଶରେ କାଳକ୍ରମେ ନୂତନ ନୂତନ ସମସ୍ୟା ଉପୁଜୁଛି, ସମାଜବାଦର ନୂତନ ଆହ୍ୱାନ ଗଳକନ୍ଧରେ ପ୍ରତିଧ୍ୱନିତ ହେଉଛି; ଅଥଚ ଏହି ପୁରୁଣାକାଳିଆ ଅଫିସର ଓ ବିଗ୍ରକମାନେ ଯୁଗ ସଙ୍ଗେ ତାଳ ପକାଇ ନ ଚାଲି, ସମାଜବାଦ ଆହ୍ୱାନରେ ପ୍ରଭାବିତ ନ ହୋଇ ସେହି ପୁରୁଣା ମରହଟ୍ଟିଆ ଢଙ୍ଗରେ ଚାଲିଛନ୍ତି । ସେମାନେ ଆଖି ଖୋଲି ଦେଖୁନାହାନ୍ତି ଯେ ସଂସାରରେ, ସମାଜରେ, ଚିନ୍ତାଧାରାରେ କେତେ ପରିବର୍ତ୍ତନ ହେଲାଣି । ଏହିମାନଙ୍କୁ ନେଇ ସମାଜବାଦ କିପରି କାର୍ଯ୍ୟକାରୀ କରାଯାଇପାରିବ ? ତେଣୁ ସେମାନଙ୍କୁ ପ୍ରଥମେ ନୂତନ ଚିନ୍ତାଧାରାରେ ଦୀକ୍ଷିତ କରାଇବାକୁ ପଡ଼ିବ । ଏ ହେଲା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଦର୍ଶନ ଏବଂ ଏହାକୁ ତାଙ୍କର ଦଳିଆ ନେତାମାନେ ମଧ୍ୟ ସମର୍ଥନ କରୁଛନ୍ତି । କିନ୍ତୁ ଏହା ଏକ ବିପଦଜ୍ଜନକ ପନ୍ଥା । ଚାକିରିଆମାନଙ୍କର ଓ ବିଗ୍ରକମାନଙ୍କ କାମ ହେଉଛି ନିୟମ ଓ ଆଇନ୍ ଅନୁସାରେ କାର୍ଯ୍ୟ କରିବା । ଅବଶ୍ୟ ଏହା କଲାବେଳେ ଯେତେଦୂର ସମ୍ଭବ ଗରିବ ଓ ଦଳିତମାନଙ୍କ ପ୍ରତି ସହାନୁଭୂତି ଦେଖାଇବାକୁ ହେବ । ଅର୍ଥାତ୍ ଗରିବ ନିରାହ ଲୋକଟିଏ ଖାଦ୍ୟାଭାବରେ ପଡ଼ି ଯଦି ସାମାନ୍ୟ ଚୋରିକଲା ଆଇନ୍‌ର ପୂରା କର୍କଶତା ତା'ପ୍ରତି ଲାଗୁକରିବ ନାହିଁ । କିନ୍ତୁ ଏହି ନୂତନ ଯୁଗର ଦୋହାଇ ଦେଇ ଚୋର, ଡକାଏତମାନେ, ତଥାକଥିତ ଉଗ୍ରପନ୍ଥୀମାନେ ସଙ୍ଘବଦ୍ଧ ହୋଇ ସ୍ଲୋଗାନ ଦିଅନ୍ତି ଯେ ଧନୀ ଓ ବଡ଼ଲୋକମାନେ ସେମାନଙ୍କ ଧନଜୀବନ ରକ୍ଷା କରିବାକୁ ଆଇନ୍ କରିଛନ୍ତି । ସେମାନେ କହନ୍ତି ଆମେ ସର୍ବହରା, ଆମର ଜମିବାଡ଼ି ନାହିଁ, ଖାଇବାକୁ ନାହିଁ, ପିନ୍ଧିବାକୁ ନାହିଁ, ରହିବାକୁ ନାହିଁ; ଆମେ ଆକାଶତଳେ ରହୁ, ଫୁଟ୍‌ପାଥରେ ଶୋଉ; ଆମେ ଏ ଆଇନ୍ ମାନିବୁ ନାହିଁ; ଆମେ ଧନୀ ଓ ବଡ଼ଲୋକମାନଙ୍କୁ କତଲ କରିଦେବୁ, ଶାସନକୁ ଅଚଳ କରିଦେବୁ, ଶାସନ କ୍ଷମତା ଜୋରଜବରଦସ୍ତି ହାତକୁ ନେବୁ । ଆଇନ୍‌ଦ୍ୱାରା, ସମ୍ବିଧାନଦ୍ୱାରା ସମାଜବାଦ ପ୍ରତିଷ୍ଠା ଅସମ୍ଭବ । ବନ୍ଧୁକ ନଳୀରେ ସବୁ କ୍ଷମତା ଅଛି, ମୁକ୍ତି ଅଛି ଓ ପ୍ରଗତି ଅଛି; ଆମେ ତା ସାହାଯ୍ୟରେ ସମାଜ ଓଲଟପାଲଟ କରିଦେବୁ । ଖାଲି ଘରତରେ ନୁହେଁ ସମୁଦାୟ ପୃଥିବୀରେ ସର୍ବହରାର ଶାସନ ଜାରି କରିବୁ । ଏ ତ ହେଲା ନୂତନ ଯୁଗର ଆହ୍ୱାନ । ଏହାକୁ କେତେକ ପୂରା ସମର୍ଥନ କରୁଛନ୍ତି ଏବଂ କେତେକ ଆଂଶିକ ସମର୍ଥନ କରୁଛନ୍ତି । ଯଦି ରାଜନୀତିକମାନଙ୍କ ଚାକିରିଆ ଓ ବିଗ୍ରକଙ୍କ ପ୍ରତି ଉପଦେଶ ଯେ ସେମାନେ ଏହି ଆହ୍ୱାନ ପ୍ରତି କର୍ଣ୍ଣପାତ କରି, ନୂତନ ଯୁଗ ସଙ୍ଗେ ତାଳପକାଇ ଚାଲି ସେମାନଙ୍କ ଚିନ୍ତାଧାରା ଏ ଅନୁସାରେ ପୂରା

ବା ଆଂଶିକ ପ୍ରଭାବିତ କରନ୍ତୁ, ତେବେ ଦେଶରେ ଶାସନ କରିବ ଅରାଜକତା, ଲୁଟତରାଜ ଓ ନରହତ୍ୟାର ବିଭୀଷିକା ଏବଂ ତା ସାଙ୍ଗରେ ଏହି ଦେଶ ଏହି ରାଜନୀତିକମାନଙ୍କୁ ନେଇ ମଧ୍ୟ ଜଳିପୋଡ଼ିଯିବ ।

ଦେଶରେ ସାଧାରଣତଃ ତିନୋଟି ସଂସ୍ଥା ଅଛି; ଯଥା—ଯେ ଆଇନ କରେ, ଯେ ଶାସନ କରେ ଓ ଯେ ବିଚାର କରେ । ଆମେରିକାରେ ଏହି ତିନୋଟି ସଂସ୍ଥା ସେମାନଙ୍କର ପରିସର ମଧ୍ୟରେ ପରସ୍ପରଠାରୁ ପୂରା ସ୍ୱାଧୀନ । କିନ୍ତୁ ଆମର ସଂସ୍ଥା ବ୍ରିଟିଶ ସଂସ୍ଥାଉପରେ ପ୍ରତିଷ୍ଠିତ । ଏଠାରେ ବିଚାର ବିଭାଗ ଅଲଗା ଓ ପୂରା ସ୍ୱାଧୀନ; କିନ୍ତୁ ଯେ ଶାସନ କରେ ସେ ମଧ୍ୟ ଆଇନ କରେ । କିନ୍ତୁ ଆଇନ କରିବା ସ୍ଥାନ ଲୋକସଭା ବା ବ୍ୟବସ୍ଥାସଭା । ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ଏଠାରେ ଆଇନ ପ୍ରଣୟନ ବା ସଂଶୋଧନ ନକରି ଶାସନ ପ୍ରଣାଳୀକୁ ବଦଳେଇ ଦେଇ-ପାରିବେ ନାହିଁ । ଚାକରିଆମାନେ କହନ୍ତି, "ଆମେ ବର୍ତ୍ତମାନର ନିୟମକାନୁନ୍‌କୁ ଚାଲୁ କରୁଛୁ । ତୁମେ ଶାସକମାନେ ଏସବୁ ବଦଳେଇଦିଅ, ଆମେ ସେ ଅନୁସାରେ କାମ କରିବୁ । କିନ୍ତୁ ନିୟମ ଗୋଟେ ଆଡ଼େ ଥିବ, ଆମେ ତୁମର ମୌଖିକ ନିର୍ଦ୍ଦେଶରେ ଅନ୍ୟଆଡ଼େ ଯାଇପାରିବୁ ନାହିଁ ।" ବିଚାରକମାନେ ମଧ୍ୟ କହୁଛନ୍ତି, "ଆମେ ବର୍ତ୍ତମାନର ଆଇନକୁ ଚାଲୁକରୁଛୁ । ତୁମେ ଏ ଆଇନ ବଦଳେଇ ଦିଅ; ଆମେ ସେ ଅନୁସାରେ କାମ କରିବୁ । କିନ୍ତୁ ଯୁଗର ଆହ୍ୱାନ, ପରିବର୍ତ୍ତନର ଚମକ ଏପରି ଫାଙ୍କା ଆବାଜରେ ଆମେ ଆଇନକୁ ବଦଳାଇ ଦେଇପାରିବୁନାହିଁ । ଏହା କରିବା ମଧ୍ୟ ସାଂଘାତିକ । ଏହା କଲେ ଆମେ ତ ଆଇନ ବଦଳାଇବୁ ଆଉ ତୁମେ ଆଇନ କରିବାର କ୍ଷମତାରେ ଥାଇ କଅଣ କରିବ ?" ବର୍ତ୍ତମାନ ଶାସକମାନେ ଏ କଥା ବୁଝିପାରନ୍ତି ନାହିଁ । ଦୁର୍ଭାଗ୍ୟବଶତଃ ଆମର ଭାରତବର୍ଷରେ ଶାସକମାନେ, ଯେଉଁମାନେ ଭୋଟ ପାଇ ଯାଇଛନ୍ତି, ସେମାନଙ୍କ ନିଜର ବିଦ୍ୟା ବୁଦ୍ଧି ଓ ବିଚକ୍ଷଣତା ଅଛି ବୋଲି ଯେ ଭୋଟ ପାଇଛନ୍ତି ତାହା ନୁହେଁ । କିଏ ସ୍ୱାଧୀନତା ଆନ୍ଦୋଳନରେ କେତେଥର ଜେଲ ଯାଇଥିଲା, ନିଜେ ନହେଲେ କାହାର ବାପ କେତେଥର ଜେଲ ଯାଇଥିଲା, କିଏ ଭୋଟରେ କେତେ ପଇସା ଖର୍ଚ୍ଚ କରିପାରୁଚି ଏବଂ କିଏ ଭିନ୍ନ ଭିନ୍ନ ଚାତୁରୀ ଦେଖାଇ ଅଶିକ୍ଷିତ ନିରକ୍ଷର ଭୋଟରମାନଙ୍କୁ କିପରି ଭୁଲାଇ ପାରୁଛି, ତାହା ଉପରେ ଭୋଟରେ ଜିଣିବା ନିର୍ଭର କରୁଛି ଏବଂ ଭୋଟରେ ଜିଣିବାପରେ କେଉଁ ଦଳ କେତେ ଦୁର୍ନୀତି କରି କେତେ ଲାନ୍ଦିଫାନ୍ଦି କରି କେତେ ଟଙ୍କା ଠୁଳ

କରି ମନ୍ତ୍ରୀ, ଉପମନ୍ତ୍ରୀ ଓ ଅନ୍ୟାନ୍ୟ ଲାଭଜନକ ପଦର ଲୋଭ ଦେଖାଇ କେତେ ଏମ୍. ଏଲ. ଏ. ବା ଏମ୍.ପି. ମାନଙ୍କୁ ଅକ୍ତିଆର କରିପାରୁଛି, ତାହାରି ହାତରେ ଶାସନ କ୍ଷମତା ରହୁଛି । ଆଜ ଦଳେ ମନ୍ତ୍ରୀ ଅଛନ୍ତି ତ କାଲି ଆଉ ଦଳେ ମନ୍ତ୍ରୀ ବାହାରିଲେଣି । ଆଜ ଗୋଟିଏ ମତ ଚାଲୁଛି ତ କାଲି ଆଉ ଗୋଟିଏ ମତ ଚାଲିଲାଣି । ଶାସକମାନେ ବାଛି ବାଛି ତାଙ୍କ ମତକୁ ସମର୍ଥନ କରୁଥିବା ଭଳି ଅଫିସରମାନଙ୍କୁ ଗୁରୁତ୍ୱପୂର୍ଣ୍ଣ ପଦରେ ରଖୁଛନ୍ତି ଏବଂ ଏପରି ମନୋଭାବାପନ୍ନ ଲୋକମାନଙ୍କୁ ନୂତନ ଚାକିରି ଦିଆଯାଉଛି । ହାଇକୋର୍ଟ ଓ ସୁପ୍ରିମକୋର୍ଟରେ ହାଁଜୀ ଜଜ୍‌ମାନଙ୍କୁ ନିଯୁକ୍ତ କରିବାକୁ ଚେଷ୍ଟା କରାଯାଉଛି । ଦୁର୍ନୀତିରେ ଜାତ ଓ ପରିପୁଷ୍ଟ ଶାସନ ଦୁର୍ନୀତିରେ ହିଁ ଚାଲିଛି । ଲକ୍ଷାଧିକ ଟଙ୍କାରେ ଭୋଟ କିଣି କ୍ଷମତାକୁ ଆସି ପାଞ୍ଚ ବର୍ଷ ପରେ ଫେରେ କ୍ଷମତାକୁ ଆସିବାପାଇଁ ଯାହା ଟଙ୍କା ଆବଶ୍ୟକ, ଶାସନକାଳ ମଧ୍ୟରେ ଦୁର୍ନୀତିମାର୍ଗରେ ସେ ଟଙ୍କା ଠୁଳ କରାଯାଉଛି । ଏପରି ଶାସନ ଯଦି ଆମ ଦେଶରେ ଚାଲେ, ତେବେ ସମାଜ ଯେ ଅଚିରେ ଭୁଷୁଡ଼ି ପଡ଼ିବ, ଏଥିରେ ସନ୍ଦେହ ନାହିଁ । ଲୋକମାନେ ମଧ୍ୟ ନେତାମାନଙ୍କ ପରି ଦୁର୍ନୀତି-ଗ୍ରସ୍ତ । କୌଣସି ଦଳ ବା ଲୋକ ଭୋଟ ପାଇ କ୍ଷମତାକୁ ଆସି କିଛି ତ କରୁନାହାନ୍ତି; ତେଣୁ ଭୋଟ ସମୟରେ ଯାହା ଟଙ୍କା ମିଳିପାରିଲା ସେତିକରେ ସେମାନେ ସନ୍ତୁଷ୍ଟ । ଲୋକେ ନିଜ ନିଜର ଭୋଟ ନିଲାମରେ ବିକୁଛନ୍ତି । ଏଥିରେ କୌଣସି ଭଲ ଲୋକ ଭୋଟରେ ଠିଆ ହେଉନାହାନ୍ତି ଏବଂ ଟାଉଟରିଦ୍ୱାରା ଦେଶ ଶାସନ ଚାଲିଛି ।

□□□

## ଅବସରାନ୍ତେ

ମୁଁ ଆଗରୁ କହିଛି, ଆଇନ ଉପାଧି ହାସଲ କଲାପରେ ଚାକିରି ଛାଡ଼ି-ପାରିଲି ନାହିଁ; କାରଣ ଭାବିଲି ୨୫ ବର୍ଷ ଚାକିରି ପୂରିଲେ invalid ପେନସନ ନେଇ ଛାଡ଼ିବି । ଏ ମଧ୍ୟରେ ପୁଣି ଆଇ. ଏ. ଏସ୍. ପାହ୍ୟାକୁ ପଦୋନ୍ନତି ହୋଇ-ଯିବାରୁ ଚାକିରି ଛାଡ଼ିବାକୁ ଉଚିତ ମନେ କଲିନାହିଁ । କାରଣ ପୂରା ପେନ୍‌ସନ ମିଳିବ ନାହିଁ ଏବଂ ପ୍ରାୟ ଦୁଇହଜାର ଦରମା ଛାଡ଼ି ହଠାତ୍ ଓକିଲାତିରେ ପଶିଯିବା ଅନ୍ଧାରଘରେ ବାଡ଼ି ବୁଲେଇଲା ପରି ହେବ । ତେଣୁ ଭାବିଲି, ଯାହା ତ ହେଲାଣି, ମୋର ଉପରଦେଇ କେତେ ଅଫିସର ତ ଉଠିଲେଣି; ଆଉ କେତେବର୍ଷ ଚାକିରି କରି ପୂରା ପେନ୍‌ସନ ନେଇ ଓକିଲାତି କରିବି । ସେତେବେଳେକୁ ଆଇ. ଏ. ଏସ୍.ରେ ଅବସର ନେବା ବୟସ ୫୫ ବର୍ଷ ଥିଲା; ଆଇ. ସି. ଏସ୍.ଙ୍କ ୬୦ ବର୍ଷ ଥିଲା । ଆଇ. ଏ. ଏସ୍.ମାନଙ୍କ ଅବସର ନେବା ବୟସ ନିତାନ୍ତ ପକ୍ଷେ ୫୮ ବର୍ଷ କରିବାକୁ ଚେଷ୍ଟା ଚାଲିଥିଲା । ପଞ୍ଚାବନ ବର୍ଷ ବୟସରେ ଅବସର ନେବାକୁ ହେଲେ ମୋର ୧୯୬୨ ସାଲରେ ଯିବାର କଥା । ମୁଁ ୧୯୬୨ ନଭେମ୍ବର ମାସରେ ଅବସର ନେଲି; କିନ୍ତୁ ୫୮ ବର୍ଷ ଏହି ବର୍ଷ ଡିସେମ୍ବର ମାସରେ ହେଲା । ମୁଁ ସାମାନ୍ୟ କେତେଦିନ ସକାଶେ ୩ ବର୍ଷ ଚାକିରି ହରେଇଲି । ମୋର ଠିକ୍ ଜନ୍ମସୂର ରତ୍ନାକର ଷଡ଼ଙ୍ଗୀ ଯେ କି ଅବସର ନେବେ ବୋଲି ଛୁଟିରେ ଥିଲେ, ତାଙ୍କୁ ଡକାଯାଇ ପୁଣି ତିନିବର୍ଷ ରଖାଗଲା । ଆଗରୁ ତ ଠିକ୍ ସମୟରେ ଆଇ. ଏ. ଏସ୍.କୁ ଯାଇପାରି ନ ଥିବାରୁ ପ୍ରାୟ ପାଠିଏ ହଜାର ଟଙ୍କା କ୍ଷତି ହୋଇଥିଲା । ଏହି ତିନିବର୍ଷ ହରାଇ ପୁଣି ପ୍ରାୟ ପଚିଶ ହଜାର ଟଙ୍କା ହରାଇଲି । ଏହା ଭାଗ୍ୟ ଦୋଷ, କଣ କରିବାକୁ ଅଛି । ତିନିବର୍ଷ ଚାକିରି ଅଳ୍ପକେ ହରାଇଲି । ଏହି କାରଣ ଦେଖାଇ ପୁନର୍ନିଯୁକ୍ତି ସକାଶେ ଚେଷ୍ଟା କରିଥିଲେ ବି ଅନ୍ତତଃପକ୍ଷେ ବର୍ଷେ ଦୁଇବର୍ଷ ରହି-ପାରିଥାନ୍ତି ବା ଅନ୍ୟ କିଛି ଚାକିରି ସକାଶେ ଚେଷ୍ଟା କରିଥାନ୍ତି । କିନ୍ତୁ ଆଇନ ପରୀକ୍ଷାରେ ଏତେ ପରିଶ୍ରମ କରି ପ୍ରଥମ ହୋଇଥିବାରୁ ଭାବିଲି ହାଇକୋର୍ଟରେ ଓକିଲାତି କରିବି; ଆଉ ଚାକିରି କରିବି ନାହିଁ ।

ଉଚ୍ଚଶେଣୀବର୍ଗ ଚାକିରି କରିବା ମଧ୍ୟରେ ଗୋଟିଏ ଅଭ୍ୟାସ ହୋଇଯାଇ-ଥାଏ । ପ୍ରତିମାସରେ ଦରମା ମିଳେ । ତେଣୁ ହାତରେ ଟଙ୍କା କଣ୍ଟ ରଖିବାର ଆବଶ୍ୟକତା ନ ଥାଏ । ହଠାତ୍ କୌଣସି କାମ ପଡ଼ିଲେ ପ୍ରୋଭିଡେଣ୍ଟ ଫଣ୍ଡରୁ ଋଣ ନେବାକୁ ମଧ୍ୟ ସୁବିଧା ଥାଏ । ସମସ୍ତ କାର୍ଯ୍ୟରେ ସାହାଯ୍ୟ କରିବାକୁ ଅଧସ୍ତନ ଅଫିସର, କିରାନି ଓ ଚପରାଶିମାନେ ଥାଆନ୍ତି । ସରକାରି ଘର ରହିବାକୁ ମିଳୁଥାଏ । କିନ୍ତୁ ଅବସର ନେବାକ୍ଷଣି ଏସବୁ ଚାଲିଯାଏ; ତେଣୁ ହଠାତ୍ ଅସୁବିଧାରେ ପଡ଼ିବାକୁ ପଡ଼େ । ପେନ୍‌ସନ ଓ ପ୍ରୋଭିଡେଣ୍ଟଫଣ୍ଡ ମିଳିବାକୁ ଅନ୍ତତଃ ଛଅମାସ ଚାଲିଯାଏ । ଏ ମଧ୍ୟରେ କିପରି ଚଳିବ ମୋର ଗୋଟିଏ ଚିନ୍ତାର ବିଷୟ ହେଲା । ତେଣୁ ଯେଉଁଦିନ ଅବସର ନେଲି ସେହିଦିନ ମୋର ଗାଡ଼ିଟିକୁ ସାତହଜାର ଟଙ୍କାରେ ବିକିଦେଲି । ଏଥିରେ ମୋର ସ୍ତ୍ରୀର ମନ ଭାରି ଖରାପ ହେଲା; ମୋର ମୁଣ୍ଡରୁ କିନ୍ତୁ ଗୋଟିଏ ବୋଝ ଗଲା । ଚାକରବାକର ଚପରାଶି ନ ଥାଇ ମୋଟର ଧୋଇବ କିଏ, ପୋଛିବ କିଏ । ଖରାପ ହେଲେ ଦଶଥର କାରଖାନାକୁ ନେବାକୁ ହେବ । ପଇସାର ଅଭାବବେଳେ ପୁଣି କାର୍ ଉପରେ ଖର୍ଚ୍ଚ । ଏସବୁ କାରଣରୁ କାର୍ ବିକିଦେଇ ମୋତେ ଖୁବ୍ ଶାନ୍ତି ଲାଗିଲା । ତାପରେ ଘର ନାହିଁ । ମୋର ଘର ସବୁ ଭଡ଼ା ଦେଇଥିଲି । ଭଡ଼ାଟିଆଙ୍କୁ ହଠାତ୍ ଉଠେଇ ହେବ ନାହିଁ । ମୋର ସାନ ଭାଇ ଦେବେନ୍ଦ୍ରର ଭୁବନେଶ୍ୱରରେ ଗୋଟିଏ ଖାଲି ଘର ଥାଏ । ସେଠି ଯାଇ ହଠାତ୍ ରହିଗଲି । ପାଇପ ପାଣି ନ ଥାଏ । କୂଅ ବହୁତ ଗଭୀର । ଗାଁରୁ ଗୋଟିଏ ପିଲା ଚାକର ଆଣିଲି । ସେ ତ ପାରେ ନାହିଁ । ଘରର ସବୁ କାମ କରିବ, ଗାଈ କଥା ବୁଝିବ; ତେଣୁ ତାପରେ ପାଣି କାଢ଼ିବା ଅସମ୍ଭବ । ତେଣୁ ଆମେ ସମସ୍ତେ ପାଣି କାଢ଼ିଲୁ । ପୂଜାରୀ ନାହିଁ । ମୋର ସ୍ତ୍ରୀଙ୍କୁ ପୂଜାରୀ କାମ କରିବାକୁ ପଡ଼ିଲା, ମୋତେ ଚାକର କାମ କରିବାକୁ ପଡ଼ିଲା । ମୋର ତ ଦାୟିତ୍ୱ । ଯାହାହେଲେ ସମ୍ଭାଳିବାକୁ ହେବ । କିନ୍ତୁ ସ୍ତ୍ରୀଲୋକମାନେ ଏ ପରିବର୍ତ୍ତନ ହଠାତ୍ ସହିପାରନ୍ତି ନାହିଁ । ଚାକିରି ସମୟର ୩୦ ବର୍ଷ ଆରାମରେ କଟେଇଲେ । ହଠାତ୍ ଅବସର ନେବାକ୍ଷଣି ଯେତେବେଳେ ବୟସ ଖସିଲାଣି, ବଳ କମିଲାଣି, ସେତେବେଳେ ଘରର ସମସ୍ତ କାମ ନିଜେ କରିବା ସେମାନଙ୍କ ପକ୍ଷେ ଅସମ୍ଭବ । ଆମେ ଯେତେ ଚେଷ୍ଟାକରି ଗୋଟିଏ ପୂଜାରୀ ବା ବଡ଼ ଚାକରଟିଏ ଆଣୁ, ସେ ସପ୍ତାହକ ମଧ୍ୟରେ ଚାକିରି ଠିକ୍ କରି କାପିଟେଲରେ କୌଣସି ଅଫି-ସରଙ୍କ ପାଖକୁ ଚାଲିଯାଏ । କାରଣ ସେଠାରେ କାମକଲେ ଭବିଷ୍ୟତରେ ପିଅନ

ହୋଇପାରିବ, ଏହି ଆଶାରେ । ମୋର ସେତେବେଳେ ଭୁବନେଶ୍ୱରରେ ରାଜାରାଣୀ ନିକଟରେ ଗୋଟିଏ ଷ୍ଟେଟ ଘର ଅଧା ତିଆରି ହୋଇ ପଡ଼ିଥାଏ । ମୁଁ ସେ ଘରର କାମ ଶେଷ କରିବାରେ ଲାଗିଗଲି । ତାପରେ କଟକ ଯାଇ ହାଇକୋର୍ଟରେ ମୋର ନାମ ଆଡ୍‌ଭୋକେଟ ଭାବରେ ରେଜଷ୍ଟ୍ରି କଲି । କଟକରେ ରହିବାକୁ ଗୋଟିଏ ଘର ଖାଲି କରାଇବାକୁ ଭଡ଼ାଟିଆ ସାଙ୍ଗରେ ଲାଗିଲି । ଛଅ-ମାସ ପରେ କଟକର ଗୋଟିଏ ଘର ଖାଲି ହେଲା । ଷ୍ଟେଟ ଘରଟିଏ । ବଡ଼ ଘରଟି ସେଟଲମେଣ୍ଟ ଅଫିସ ଭଡ଼ା ନେଇଥାଏ । ସେ ଷ୍ଟେଟଘରେ ଆମର ଜିନିଷ-ପତ୍ର ରହିବାକୁ ଜାଗା ହେଲା ନାହିଁ । ଯାହାହେଉ ଯାଇ ସେଠି ହଠାତ୍ ରହିଗଲି ଏବଂ ହାଇକୋର୍ଟକୁ ଯିବା ଆସିବା ଆରମ୍ଭ କଲି । ସେତେବେଳକୁ ପାରିକୁଦ ମାଲ୍‌ଦରେ ସେଟଲମେଣ୍ଟ ସରିଥାଏ । ପର୍ଚ୍ଚା ସଂଶୋଧନ ସକାଶେ ବହୁତ କେଶ୍ ମିଳିଲା ରେଭିନ୍ୟୁବୋର୍ଡ଼ରେ ଦାଖଲ କରିବାକୁ । ସେଥିରେ ହଠାତ୍ ଲାଗିଗଲି ।

ଅବସର ନେବା ପରେ କଂଗ୍ରେସର ଗୋଟିଏ ସଭ୍ୟ ହେଲି । ଅଳ୍ପ ସମୟରେ କଟକର ମ୍ୟୁନିସିପାଲଟି ଭୋଟ ହେଲା । ବୀରେନ ବାବୁଙ୍କ ସଙ୍ଗେ କଥା କରିବାରୁ ସେ ମୋର ଓ୍ୟାର୍ଡ଼ଟି ମୋତେ ଦେବା ସକାଶେ ପ୍ରତିଶ୍ରୁତି ଦେଲେ । ମୁଁ କଂଗ୍ରେସ ଅଫିସରେ ଏଥି ସକାଶେ ପଚାଶ ଟଙ୍କା ଜମା କଲି । ଶେଷରେ କଂଗ୍ରେସ ଟିକଟ ତ ମିଳିଲା ନାହିଁ; ଟଙ୍କା ମଧ୍ୟ ଓ୍ୟାପସ୍ ମିଳିଲା ନାହିଁ । ଆମ ଓ୍ୟାର୍ଡର ଜଣେ ମାରୁଆଡ଼ିକୁ ଏ ଟିକଟ ମିଳିଲା । ମାରୁଆଡ଼ିଠାରୁ କଂଗ୍ରେସ ଯାହା ପାଇବ ଆମଠାରୁ ତ ପାଇ ପାରିବ ନାହିଁ; ତେଣୁ କଂଗ୍ରେସରେ ପଶି ସେମାନଙ୍କ କଥାରେ ନିର୍ଭର କରି ପ୍ରଥମେ ଏହି ଧକ୍‌କା ଖାଇଲି । ଭାବିଲି ସ୍ୱାଧୀନ ଭାବରେ ଠିଆହେବି । କିନ୍ତୁ ପ୍ରଥମେ ଘରେ ପଶୁ ପଶୁ ଚୁଲି ବାଜିବ, ଏହି ଭୟରେ ଏହି କାର୍ଯ୍ୟ କଲିନାହିଁ । ହାଲି କଂଗ୍ରେସରେ ପଶିଛି, ହଠାତ୍ ଛାଡ଼ିଦେଇ ସ୍ୱାଧୀନ ଭାବରେ ଠିଆହେବି, ହେବ କି ନାହିଁ ଠିକ୍ ନାହିଁ । ଭିକ୍ଷାରେ କଂଗ୍ରେସ ସହ କାହିଁକି କଜିଆ ଲଗାଇବି ? ଯାଉ, ଏ ପ୍ରଥମ ଅନ୍ୟାୟ ସହିନେବି ଏବଂ ପରେ କୌଣସି କଥା ପଡ଼ିଲେ ମୋ ପ୍ରତି ଆଗରୁ ଅନ୍ୟାୟ ହୋଇଛି ଦେଖାଇ ଦାବି ହାସଲ କରିନେବି, ଏହି ଯୁକ୍ତିରେ ମୁଁ ଏ ପ୍ରଥମ ଅନ୍ୟାୟ ସହିନେଲି । କିନ୍ତୁ ପ୍ରଥମ ଅନ୍ୟାୟ ଯାହା ସବୁ ଅନ୍ୟାୟ ସେପରି ହେଲା; ଶେଷରେ ମୋତେ କଂଗ୍ରେସ ଛାଡ଼ିବାକୁ ପଡ଼ିଲା ।

ଅବସର ନେବାପରେ ଓ ଓକିଲାତି କଲାପରେ ମଧ୍ୟ ଯଥେଷ୍ଟ ସମୟ

ବଳେ । ଏଥିରେ କଣ କରିବି, କିଛି ଠିକ୍ କରିପାରିଲି ନାହିଁ । ଅବଶ୍ୟ ମୋର କେଶପୁର ଛକରେ ଥିବା ଜମି ନିଜ ହାତରେ ଚାଷ କରିବାକୁ ଆରମ୍ଭ କଲି । ହଳ ବଳଦ ଓ ହଳିଆ ରଖି ଚାଷ କଲି । ପନ୍ଦର ଦିନରେ ଥରେ ସେଠାକୁ ଯାଉଥାଏ । ଥରେ ଶ୍ରୀଯୁକ୍ତ ରାଧାନାଥ ରଥଙ୍କୁ କହିଲି, "ମୋର ସମୟ ବଳୁଛି, ଆପଣ କିଛି ସମାଜକଲ୍ୟାଣ କାମ ଦିଅନ୍ତୁ ।" ସେ ଏ ପ୍ରସ୍ତାବରେ ଖୁବ୍ ଉଦ୍‌ବୁଦ୍ଧ ହୋଇଗଲେ; କିନ୍ତୁ କିଛି କଲେ ନାହିଁ । ରାଜୁବାବୁଙ୍କ ମୋ ପ୍ରତି ଭଲ ଧାରଣା ଥିଲା । ସେ ମୋତେ କଟକ ଉନ୍ନୟନ ସଂସ୍ଥାର ଜଣେ ସଭ୍ୟ କରି-ଥିଲେ । ଏଥିରେ ମାସକରେ ଦୁଇମାସରେ ଥରେ ଗୋଟିଏ ଅଧିବେଶନ ହୁଏ । ଏ କାମ ମଧ୍ୟ ଯଥେଷ୍ଟ ହେଲା ନାହିଁ । ରମା ଦେବୀଙ୍କ ଭୂଦାନ ଅଫିସରେ ଯୋଗ ଦେଲି । ସେଠାର କର୍ମୀମାନଙ୍କ ସଙ୍ଗେ ଅନେକ ଜାଗା ବୁଲିଲି । ସେମାନେ ଭିନ୍ନ ଭିନ୍ନ ସ୍ଥାନରେ ଯାହା ସବୁ କାର୍ଯ୍ୟ କରିଛନ୍ତି, ଦେଖିଲି । ସେମାନେ ସବୁଠାରୁ ଭଲ କାମ ଯେଉଁଠାରେ କରିଛନ୍ତି ସେ ସବୁ ଆଦିବାସୀ ଗାଁ । ଏସବୁ ଗାଁର ଲୋକମାନେ ସରଳ । ସମ୍ପତ୍ତିବାଦ୍ ଜଣେ ଦୁଇଜଣଙ୍କଠାରେ ଠୁଳ ହୋଇ ନାହିଁ । ତେଣୁ ଧନୀ ଲୋକଙ୍କଠାରୁ ପ୍ରତିବାଦ ନାହିଁ । ସବୁ ଲୋକଙ୍କ ଅବସ୍ଥା ପ୍ରାୟ ସମାନ ହୋଇଥିବାରୁ ସାମ୍ୟବାଦ ସେଠାରେ ଆଗରୁ କାମ କରୁଛି । ଏମାନେ ସେଠାରେ ପହଞ୍ଚି ଲୋକଙ୍କୁ କହି କହି ଓ ଟଙ୍କା ଦେଇ ଗାଁଟିକୁ ସୁନ୍ଦର କରି ଗଢ଼ନ୍ତି । ଭଙ୍ଗା ଘରଗୁଡ଼ିକୁ ତିଆରି କରାନ୍ତି । ସବୁ ଘରଗୁଡ଼ିକୁ ସଫା-ସୁତୁରା କରାନ୍ତି । ଗାଁରେ ସ୍କୁଲଟିଏ କରି ପଢ଼ାପଢ଼ିର ବନ୍ଦୋବସ୍ତ କରନ୍ତି । କୂଅଟିଏ ଖୋଳି ପାନୀୟ ଜଳର ବ୍ୟବସ୍ଥା କରନ୍ତି । ଲୋକଙ୍କୁ ଲଗାଇ ପୋଖରୀ ଖୋଳି ବା ମରାମତି କରି ଜଳସେଚନର ସୁବିଧା କରନ୍ତି । ଋଣ ଦେଇ ଯାହାର ହଳ-ବଳଦ ନ ଥାଏ ତା ସକାଶେ ଖରିଦ କରାଇଦେଇ, ଭଲ ବିହନ ଓ ନୂତନ ରକମର ବିହନ ଯୋଗାଇ ସବୁ ରକମ ଫସଲ କରାନ୍ତି । କୁଟୀରଶିଳ୍ପ କରାନ୍ତି, ସମବାୟ ସଂସ୍ଥା ଗଢ଼ନ୍ତି, ସନ୍ଧ୍ୟା ସ୍କୁଲ କରି ପ୍ରୌଢ଼ ଲୋକମାନଙ୍କୁ ପାଠ ପଢ଼ାନ୍ତି, ଗାଁ ଲୋକଙ୍କୁ ନେଇ ନାଟତାମସା କରାନ୍ତି । ସଂକ୍ଷେପରେ ସେମାନେ ଯେଉଁ ଗ୍ରାମଟିକୁ ହାତରେ ନିଅନ୍ତି ତାର ମୁଖ ସମ୍ପୂର୍ଣ୍ଣ ପରିବର୍ତ୍ତନ କରିଦିଅନ୍ତି । ଏପରି ହିସାବରେ ଭୂଦାନ କର୍ମୀମାନେ ବହୁତ ଭଲ କାମ କରନ୍ତି । ସମସ୍ତେ ଭାବନ୍ତି, ଭୂଦାନ କର୍ମୀମାନେ ଖାଲି ପଡ଼ିତ ଜମି, କଙ୍କଡ଼ମୟ ଜମି ବା ଜଙ୍ଗଲ ଯେଉଁଥିରେ କ କାର ସ୍ୱତ୍ୱ ନାହିଁ, ସେସବୁ ଜମି ଧୋକାବାଜି କରି ଲୋକଙ୍କଠାରୁ ଦାନ ସ୍ୱରୂପ ନେଇ ଲୋକଙ୍କ ଭିତରେ କାଗଜ କଲମରେ ବାଣ୍ଟନ୍ତି; କିନ୍ତୁ ସେ ଜମିର କିଛି ଉପ-

କାରିତା ବା ମୂଲ୍ୟ ନାହିଁ—ଯେପରି ପାହାଡ଼ସଙ୍କୁଳ ସମୁଦାୟ କୋରାପୁଟ ଜିଲ୍ଲା ଭୂଦାନ କର୍ମୀଙ୍କୁ ଦାନସ୍ୱରୂପ ଦିଆଯାଇଛି ବୋଲି କୁହାଯାଏ ଏଥିରେ ଦାତା କିଏ, ଗ୍ରହୀତା କିଏ, ଜମି କାହାର, ଦାନଜମି କିପରି ଭାବରେ ବ୍ୟବହାର କରାଯାଉଛି କିଛି ଜଣା ପଡ଼େନାହିଁ । ଏପରି କଥା ମନୁଷ୍ୟର ବୁଦ୍ଧି ବଣା କରିଦିଏ; କିନ୍ତୁ ଯେଉଁ କେତେକ ଗାଁରେ ଭୂଦାନ କର୍ମୀମାନେ କାମ କରୁଛନ୍ତି ସେଠାରେ ଲୋକମାନଙ୍କର ଶାରୀରିକ, ମାନସିକ, ଆର୍ଥିକ ଓ ଆଧ୍ୟାତ୍ମିକ ଉନ୍ନତି ଯେ ହୋଇଛି, ଏଥିରେ ସନ୍ଦେହ ନାହିଁ ।

ଏହାପରେ ଭୂଦାନ ଆନ୍ଦୋଳନଦ୍ୱାରା ଗାଁମାନଙ୍କରେ ଯେଉଁ ସବୁ କାମ ହୋଇଛି ଏବଂ ଶ୍ରୀମତୀ ରମାଦେବୀଙ୍କ ଆଦର୍ଶରେ ମୁଗ୍ଧ ହୋଇ କେତେ ମାସ ଭୂଦାନ କାମରେ ଲାଗିଲି । ଗାନ୍ଧୀ ଶତବାର୍ଷିକୀ କମିଟିର ମୁଁ ଜଣେ ଯୁଗ୍ମ-ସମ୍ପାଦକ ହେଲି ଏବଂ ଶ୍ରୀ ନନ୍ଦକିଶୋର ଦାସ ଏହାର ସେକ୍ରେଟେରୀ ହେଲେ । ଏହି କାମ ସକାଶେ ମୋତେ ଅଧିକାଂଶ ଦିନ ଥୋରିଆସାହି ଭୂଦାନ ଅଫିସକୁ ଯିବାକୁ ପଡ଼ୁଥିଲା । କିନ୍ତୁ ହଠାତ୍ ସରକାର ଏହି କାମ ହାତକୁ ନେଲେ ଏବଂ ଆଉ ଗୋଟିଏ କମିଟି କଲେ । ସରକାର ତାଙ୍କର କମିଟି କଲେ, ଠିକ୍ ଅଛି; କିନ୍ତୁ ଏଥି ସକାଶେ ଆମ କମିଟି ଓ ଆମର କାର୍ଯ୍ୟକ୍ରମ ଯେ କାହିଁକି ବନ୍ଦ ହୋଇଯିବ ଜଣାପଡ଼ିଲା ନାହିଁ । ସେମାନେ ରମା ଦେବୀଙ୍କୁ ସେ କମିଟିରେ ଜଣେ ପୁରୋଧା କରି ରଖିଲେ । ମୋର ଆଉ କିଛି ସ୍ଥାନ ନଥିବାରୁ ମୁଁ ଚୁପ୍ ରହିଲି ଏବଂ ସେଦିନଠାରୁ ଭୂଦାନ ଅଫିସ ପ୍ରତି ମୋର ଟିକିଏ ବିତୃଷ୍ଣା ହୋଇଯାଇଥିଲା । ଅବଶ୍ୟ ସେମାନଙ୍କ ସଙ୍ଗେ ସମ୍ପର୍କ ତୁଟେଇ ନାହିଁ । ତେବେ ସେ କାମରେ ଆଗ ଯେତେ ସମୟ ଦେଉଥିଲି, ତାହା ଟିକିଏ କମିଗଲା ।

ତା ପରେ ମୋର ଆଉ ଗୋଟିଏ କାମ ହେଲା ଅବସରପ୍ରାପ୍ତ କର୍ମଚାରୀ ସଙ୍ଘର ସେକ୍ରେଟେରୀ ଭାବରେ । ଏହି ସଙ୍ଘଟି ସ୍ୱର୍ଗତ ହରିକିଶୋର ରାୟଙ୍କ ଦ୍ୱାରା ଗଠିତ ହୋଇଥିଲା ଏବଂ ଅବସରପ୍ରାପ୍ତ ଶ୍ରୀ ଦାମୋଦର ଦାସ ଏହାର ସେକ୍ରେଟେରୀ ଥିଲେ; କିନ୍ତୁ ସେ ବହୁତ କାଳ ବେମାରରେ ପଡ଼ିବାରୁ କାମ କିଛି ହେଉ ନ ଥିଲା । ୧୯୬୫ ସାଲରେ ମୁଁ ଏହାର ସେକ୍ରେଟେରୀ ହେଲି ଏବଂ ପ୍ରାୟ ୩ ବର୍ଷ ରହିଲି । ଏ ମଧ୍ୟରେ କଟକ ଟାଉନର ମେମ୍ବରସଂଖ୍ୟା ତିରିଶରୁ ଶହେ ପର୍ଯ୍ୟନ୍ତ କଲି ଏବଂ ପ୍ରାୟ ସମୁଦାୟ ଜିଲ୍ଲା, ସବ୍‌ଡିଭିଜନ ଏବଂ କେତେକ ଅନ୍ୟ ପ୍ରଧାନ କେନ୍ଦ୍ରରେ ମଧ୍ୟ ଶାଖା ସବୁ ଗଢ଼ିଲି । ସରକାର ଯେତେବେଳେ ଶହେ ଟଙ୍କା ପେନ୍‌ସନ ପର୍ଯ୍ୟନ୍ତ ଶତକଡ଼ା ପ୍ରାୟ ଦଶଟଙ୍କା ହିସାବରେ ଅଧିକା କିଛି ମହଙ୍ଗା ଭତ୍ତା

ଦେଉଥିଲେ । ଅନ୍ୟମାନଙ୍କୁ କିଛି ମିଳୁନଥିଲା । ସରକାରୀ ପେନ୍‌ସନ ଧାର୍ଯ୍ୟ-ଧାରାର ଯେ ଆମେ ପ୍ରାପ୍ୟ ଥିଲୁ, ସେମାନଙ୍କ ଜରିଆରେ ଅନ୍ୟ ଷ୍ଟେଟମାନଙ୍କରେ ପେନ୍‌ସନର-ମାନେ କମ ପାଉଥିଲେ, ସେ ତଥ୍ୟ ସଂଗ୍ରହ କରି ସରକାରଙ୍କ ପାଖରେ ଆମେ କେତୋଟି ଦାବି ପେଶ କଲୁ; ଯଥା—ସମସ୍ତ ପେନ୍‌ସନରମାନଙ୍କୁ ସରକାରୀ ଚାକିରୀ ଯାହା ପାଉଥିଲେ ସେହି ରେଟ୍‌ରେ ମହଙ୍ଗାଭତ୍ତା ଦିଆଯାଉ, ସର୍ବନିମ୍ନ ପେନ୍‌ସନ ମାସକୁ ପଚାଶଟଙ୍କା ରଖାଯାଉ ଏବଂ ପେନ୍‌ସନରମାନଙ୍କୁ ସରକାରୀ ଡାକ୍ତରୀ ଚିକିତ୍ସା ସୁବିଧା ଦିଆଯାଉ । ସରକାର ଏଥିରୁ ଆମ ପ୍ରଥମ ଦାବିଟି କେତେକ ଟଙ୍କା ପେନ୍‌ସନ ପର୍ଯ୍ୟନ୍ତ ଗ୍ରହଣ କରିଛନ୍ତି; କିନ୍ତୁ ସରକାରୀ କର୍ମଚାରୀଙ୍କଠାରୁ କମ୍ ରେଟ୍‌ରେ । ଦ୍ୱିତୀୟ ଦାବିଟି ପୂରା ଗ୍ରହଣ କରିଛନ୍ତି ଏବଂ ତୃତୀୟ ଦାବି ଅଦ୍ୟାବଧି ବାକି ଅଛି । ମୋ ପରେ ଅବସରପ୍ରାପ୍ତ ହେଲ୍‌ଥ ଡାଇରେକ୍ଟର ଡାକ୍ତର ପଟ୍ଟନାୟକ ପ୍ରେସିଡେଣ୍ଟ ହେଲେ । ତଥାପି କାର୍ଯ୍ୟ ନିର୍ବାହକ କମିଟିର ସଭ୍ୟ ହିସାବରେ ଏବଂ ପରେ ଉପସଭାପତି ଭାବରେ ମୋତେ କାର୍ଯ୍ୟ କରିବାକୁ ପଡ଼ୁଥିଲା ।

ଓକିଲାତିରେ ପ୍ରଥମେ ମାଲୁଦ, ପାରିକୁଦ ଅଞ୍ଚଳରୁ ଓ ପରେ ଖୋର୍ଦ୍ଧା ଇଲାକାରୁ ବହୁତ କେସ୍ ରେଭେନ୍ୟୁ ବୋର୍ଡରେ ଦାଖଲ କଲି । ସେଥିରେ ମୋର ବୋର୍ଡରେ ଟିକିଏ ନାମ ହୋଇଗଲା । ମୋର ପ୍ରଥମ କେସ୍ ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ରଙ୍କ ବିରୁଦ୍ଧରେ ଜିତିବାରୁ ନାମ ଟିକିଏ ବଢ଼ିଥିଲା । ଏଡ଼ିସନାଲ କମିଶନରଙ୍କ ପାଖରେ ଅଶୋକ ଦାସଙ୍କ ବିରୁଦ୍ଧରେ ଆଉ ଗୋଟିଏ କେସ୍ ଜିତିବାରୁ ସେଠାରେ ମଧ୍ୟ କିଛି ନାମ ହେଲା । ହାଇକୋର୍ଟରେ କାମ ଧୀରେ ଧୀରେ ବଢ଼ିଲା । ପ୍ରଥମେ ସମ୍ବଲପୁର, ବଲାଙ୍ଗୀର, କଳାହାଣ୍ଡି ଓ ଗଞ୍ଜାମ ଜିଲ୍ଲାରୁ କିଛି କିଛି କେସ୍ ପାଇଲି । ମୋର କିନ୍ତୁ କେଶପୁର ଛକ ପାଖରେ ଗୃହବାସ ଥିବାରୁ ଏବଂ ସେଠାରେ ଗୋଟିଏ ବଡ଼ ପୋଖରୀ ଓ କେତେଗୋଟି ଘର କରିଥିବାରୁ ଅଧିକାଂଶ ଶନିବାର ରବିବାରେ ସେଠାରେ ରହେ । ଏହି ଦିନମାନଙ୍କରେ ଯେଉଁମାନେ ଆସନ୍ତି ସେମାନେ ଅନ୍ୟ ଜାଗାକୁ ଚାଲିଯାନ୍ତି । ଓକିଲଙ୍କ ମୋହରିରମାନେ ସାଧାରଣତଃ ରବିବାରେ ମକ୍କେଲମାନଙ୍କୁ ନେଇ ହାଇକୋର୍ଟ ଆସନ୍ତି । ସେମାନେ ମୋ ପାଖକୁ ଆସିଲେ ନାହିଁ । ଚାକିରି କଲାବେଳେ ଗସ୍ତ ଥାଏ, କାଜୁଆଲ ଲିଭ୍ ଥାଏ । ତେଣୁ ଯିବା-ଆସିବା ଚୁଲବୁଲ ଥାଏ । ଅବସର ନେବାପରେ ରବିବାରେ ମଧ୍ୟ କୁଆଡ଼େ ନ ଯାଇ ଟେବୁଲ ପାଖରେ ବସିବାକୁ ମୋତେ ଖରାପ ଲାଗିଲା । ତେଣୁ ଓକିଲାତି ସାହାହେଉ ପଛେ ଶନିବାରେ ରବିବାରେ ମୁଁ ସବୁବେଳେ

ବାହାରେ ରହିଲା । ଏହା ହେଲା ମୋର ହଷ୍ଟେଲ ମାଟ୍ରୋନ ମେମ୍ବ ଏବଂ ଦୁର୍ବୃତ୍ତ ମଝେ ନିଜକୁ ମଜାଇ ଦେବାର ମୌକା । ସେଥିରେ ଭାଗୀଦାର ହେଲି, ଏହା ନ ହେଲେ ମୁଁ ବଞ୍ଚିପାରେ ନାହିଁ । କେବେକେବେ ମଧ୍ୟ ମୋର ମନ ଆକାଶ ଚିଲିକା ଅନ୍ତର୍ଗତ ଦୂରିବେଲ ଗ୍ରାମକୁ ଯାଉଥିଲା । ସେଠାକୁ ଯିବାକୁ ହେଲେ ଖଡ଼ି କୋଟ ନସ୍ତୁମାନ କେଶପୁରଠାରେ ଷ୍ଟେସନରେ ଖାଇପିଇ ଯାଇ ନାଆରେ ଶୋଇବାକୁ ହୁଏ । ଭୋର ୩ଟା ବେଳକୁ ଯେତେବେଳେ ସମୁଦ୍ର ଆଡ଼କୁ ହାଓ୍ବା ହୁଏ, ନାଆରେ ଚଲେଇ ବାନ୍ଧି ନାଉରିମାନେ ନାଆକୁ ସ୍ବାଧୀନଅନ୍ତ ଏବଂ ପବନ ସାହାଯ୍ୟରେ ପ୍ରାୟ ୭ ମାଇଲ ବାଟ ଘଣ୍ଟାକେ ଅତିକ୍ରମ କରି ନାଆ ୪ଟା ବେଳକୁ ଆରପଟେ ଲାଗିଯାଏ । ସେହି ପାହିର ନିସ୍ତବ୍ଧ ଓ ବିସ୍ତୀର୍ଣ୍ଣ ଚିଲିକାରେ ଅନ୍ଧାର ରାତିରେ ବା ଜହ୍ନ ଥିଲାବେଳେ ଝୁଲୁ ଝୁଲୁ ପବନ ବୋହୁଥିବାବେଳେ ନାଆ ଉପରେ ବସି ଚିଲିକା ପାରହେବା ଅନୁଭୂତ ବଡ଼ ସୁଖକର । ନୌକା ତରଙ୍ଗ ଉପରେ ଆସ୍ତେ ଆସ୍ତେ ଡେଇଁ ଡେଇଁ ଚାଲୁଥାଏ ଏବଂ ପବନ ଟିକିଏ ଜୋର ଥିଲେ ଘୋଡ଼ା ପିଠିରେ ବସି ଗ୍ୟାଲପ କରି ଚାଲିଲା ପରି ଲାଗେ । ଆଉ କୂଳକୁ ଗଲାବେଳକୁ ଶୀତଦିନେ ଲକ୍ଷ ଲକ୍ଷ ଚଢ଼େଇ ସୈନ୍ୟ ସାଜିଲା ପରି ମାଇଲ ମାଇଲ ଧାଡ଼ି ଧରି ବସିଥାନ୍ତି । ତା ପରେ ଦୂର ଦିଗ୍‌ବଳୟ ଓ ବିସ୍ତୀର୍ଣ୍ଣ ପ୍ରାନ୍ତର । ଜୀବନରେ ଥରେ ଯେ ଏହା ଅନୁଭବ କରିଛି, ସେ ଆଉ ଭୁଲିପାରିବ ନାହିଁ । ନାଆରୁ ଓହ୍ଲାଇ ଆମ ଗାଁକୁ ଯିବାକୁ ମାଇଲିଏ ଚାଲିବାକୁ ପଡ଼େ । ଗାଁରେ ପହଞ୍ଚିଲା ପରେ ମାଛ ଧରିବାର ବନ୍ଦୋବସ୍ତ କରାଯାଏ । ଆମ ଗାଁର ସ୍ବରପଟେ ଯେଉଁ ଚିଲିକାର ଜଳଖଣ୍ଡ ଅଛି, ତାହା ଗ୍ରାମବାସୀମାନଙ୍କର । ସେମାନେ ଏହି ଜଳଖଣ୍ଡର ମାଛ ଜଗିକରି ରଖିଥାନ୍ତି ଏବଂ ଏହାକୁ ଧରି କିଛି ଖାଇ କିଛି ବିକି ସେଥିରେ ଗାଁର କୋଠକାମ ତାହା କରନ୍ତି । ଗାଁକୁ ଗଲେ ଏହି ଜାଗାରୁ ମାଛ ଧରାଯାଏ, ଅବଶ୍ୟ କିଣିବାକୁ ପଡ଼େ । ତେବେ କଟକ ଦର ଅପେକ୍ଷା ବହୁତ କମ୍ ଓ ତଟକା । କେତେବେଳେ ପାଳପୋଡ଼ା କରାଯାଏ, କେତେବେଳେ ବାଲିପୋଡ଼ା କରାଯାଏ, କେତେବେଳେ ତରକାରି ଓ ଭଜା ହୁଏ । ବାଲିପୋଡ଼ା ହେଉଛି ବାଲିର ଅଳ୍ପତଳେ ମାଛ ପୋତି ତା ଉପରେ ନିଆଁ ଜଳାଯାଏ । ଏହାର ତାପରେ ମାଛ ପୋଡ଼ିଯାଏ । ଏହା ବଡ଼ ସୁସ୍ୱାଦୁ । କେବଳ ତଟକା ମାଛରେ ଏହା କରାଯାଇପାରେ ।

ଏହି ଗାଁରେ ଆମର ପୂର୍ବପୁରୁଷରୁ କିଛି ଜମି ଅଛି । ଭଲଘର ନ ଥିଲା । ନିକଟରେ ଗାଁ ବାହାରେ ଆମର ଯେଉଁ ପଡ଼ିଆଟିଏ ଥିଲା ସେଥିରେ ଟ୍ରେଷ୍ଟ ଘର ଖଣ୍ଡେ କରିଛି । ସେଠାକୁ ଗଲେ ମାଛ ଖାଇ ଆରାମରେ ଶୋଇବାକୁ

ହୁଏ । ଏତେ ଜୋରରେ ପବନ ବୋହେ ଯେ ଖରାଦିନେ ଯୋଡ଼ାଇ ନ ହେଲେ ଶୋଇ ହୁଏ ନାହିଁ । ଗାଁର ଏବଂ ସେଇ ଇଲାକାର ଲୋକମାନେ ସବୁବେଳେ କଥା ହେବାକୁ ଭଲ ଲଗାନ୍ତି । ମୁଁ ସମସ୍ତଙ୍କର କିଛି ଉପକାର କରିପାରିନାହିଁ । ତଥାପି ଲୋକମାନଙ୍କର ଆନନ୍ଦ ଯେ ଆମ ଇଲାକାର ଜଣେ ଲୋକ ପାଠ ପଢ଼ି ବଡ଼ଲୋକ ହୋଇଛନ୍ତି । ଆମ ଗାଁଠାରୁ ପ୍ରାୟ ୫ ମାଇଲ ଦୂରରେ ନନ୍ଦଳା, ମାୟାଧର ମାନସିଂହଙ୍କ ଗାଁ । ସେ ତାଙ୍କ ଗାଁରେ ମଧ୍ୟ ଘର ଖଣ୍ଡେ କରିଛନ୍ତି । ତାଙ୍କର ଜମିବାଡ଼ି ଆମ ଅପେକ୍ଷା ବେଶୀ ଅଛି । ଏଠା ଲୋକମାନେ ଆମ ଦୁହିଙ୍କି ନେଇ ଗର୍ବ କରନ୍ତି । ଲୋକମାନଙ୍କୁ ଦେଖାକରିବା ସକାଶେ ମୁଁ ଅଧିକାଂଶ ସମୟରେ ପଞ୍ଚୁଦୋଳ ଯାତ୍ରା ସମୟରେ ଯାଏ । ଆମ ଗାଁଠାରୁ ଦୁଇ ମାଇଲ ଦୂରରେ ମାଲୁଦରେ ପଞ୍ଚୁଦୋଳ ଯାତ୍ରା ହୁଏ । ଏଠାକୁ ମାଲୁଦ ପାରିକୁଦରେ ଅଧିକାଂଶ ମୁଖିଆ ମୁଖିଆ ଲୋକ ଆସନ୍ତି । ପ୍ରାୟ କୋଡ଼ିଏ ଖଣ୍ଡେ ମହାଦେବ ଚଉଦୋଳରେ ଆସି ଜମାହୁଅନ୍ତି ଏବଂ ପ୍ରତି ଠାକୁରଙ୍କ ପାଖରେ ପାଲା, ଦାଣ୍ଡ-କାଠିଆ ବା ସଖୀନାଚ ହୁଏ । ବର୍ଷକେ ଥରେ ଏଠାକୁ ଆସି ବସି ଲୋକମାନଙ୍କ ସଙ୍ଗେ ପୁରୁଣା ସଂପର୍କ ନୂଆ କରିବାକୁ ଏବଂ ନାଚ ଦେଖିବାକୁ ଖୁବ୍ ଭଲ ଲାଗେ ।

୧୯୬୮ ସାଲ ତୋଫାନରେ ଯେତେବେଳେ ଚିଲିକାରେ ଭୟାନକ ବଢ଼ି ହୋଇ ବନ୍ଧବାଡ଼ ସବୁ ଭାଙ୍ଗିଗଲା ଏବଂ ଫସଲ ସବୁ ନଷ୍ଟ ହୋଇଗଲା, ସେତେବେଳେ ରେଭେନ୍ୟୁ ବୋର୍ଡ଼ ମେମ୍ବର ରାମନାଥ ସାହେବଙ୍କ ସଙ୍ଗେ କଥା ହୋଇ ଏହି ଇଲାକାର ବନ୍ଧବାଡ଼ ସକାଶେ ୧୫ ଲକ୍ଷ ଟଙ୍କା ମଞ୍ଜୁର କରିବାରେ ମୁଁ ସାହାଯ୍ୟ କରିଥିଲି ଏବଂ ଏହି ଇଲାକାକୁ ପାଲୁର୍‌ଠାରୁ ଯେଉଁ ରୋଡ଼ଟି ଯାଇଛି ତାକୁ ବଢ଼େଇ ନେବା ପାଇଁ ସାହାଯ୍ୟ କରିଥିଲି ଏବଂ ଏଥିସକାଶେ ସେ ଇଲାକାକୁ ମଧ୍ୟ ଗୋଟିଏ ଜିପ୍ ନେଇ ଯାଇଥିଲି । ଏଥିପାଇଁ ଲୋକମାନେ କେତେକ ପରିମାଣରେ ମୋ ପ୍ରତି କୃତଜ୍ଞ । କିନ୍ତୁ ଆଜିକାଲି ତ ରାଜନୀତିର ଯୁଗ । ଏହି ଇଲାକାରେ ଯେଉଁମାନେ ରାଜନୀତି କରୁଛନ୍ତି, ସେମାନେ ପ୍ରତ୍ୟେକେ ଏହି କାମ ସକାଶେ ନିଜର କୀର୍ତ୍ତିଭୁ ଦାବି କରି ବାହାଦୁରୀ ନେବାକୁ ଚେଷ୍ଟା କରନ୍ତି । ଆମ ଇଲାକାର ଜଣେ ରାଜନୀତିକ କର୍ମୀ ହେଉଛନ୍ତି ଉଦୟନାଥ ଜେନା । ସେ ଆମ ସମୟର ଲୋକ । ଆମ ସମୟରେ ହାଇସ୍କୁଲରେ ପଢ଼ୁଥିଲେ । ପଢ଼ା ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସେହି ଦିନଠାରୁ କଂଗ୍ରେସରେ ଅଛନ୍ତି । ଧୁଙ୍ଗୁଳା ଦେହରେ ତାଳପତ୍ର ଛତା ଖଣ୍ଡେ ଧରି ବୁଲିଆଡ଼େ

ଯିବାଆସିବା କରନ୍ତି । ତାଙ୍କର ଏ ଦୃଢ଼ତା ସକାଶେ ମୁଁ ତାଙ୍କୁ ଧନ୍ୟବାଦ ଦିଏ । ଲୋକେ ତାଙ୍କୁ ପାରିକୁଦ-ଗାନ୍ଧି ବୋଲି ଡାକନ୍ତି । ଦେଶପ୍ରତି ତାଙ୍କର ପ୍ରେମ ପ୍ରକୃତ ପ୍ରଶଂସନୀୟ । ଗାଁଗଣ୍ଡାରେ ଯେତେ ଭଲଲୋକ ହେଲେ ମଧ୍ୟ ତାଙ୍କର ଦୋଷ ବାହାର କରିବାକୁ ଲୋକଙ୍କର ଅଭାବ ନାହିଁ, ବିଶେଷତଃ ରାଜନୀତି କ୍ଷେତ୍ରରେ; ତେଣୁ ଅନେକ ଲୋକ ତାଙ୍କୁ ଠକ ଏବଂ ରାଜନୀତିରୁ ଫାଇଦା ଉଠାଇ ବହୁତ ସମ୍ପତ୍ତି କରିଛନ୍ତି ବୋଲି କୁହନ୍ତି । କିନ୍ତୁ ତାଙ୍କର ଲୋକମାନଙ୍କ ସକାଶେ ଯେ ହୃଦୟରୁ ଅଜସ୍ର ପ୍ରେମ, ସେ କଥା ସେମାନେ ଭୁଲିଯାନ୍ତି । ଆମ ଇଲାକାର ଆଉ ଜଣେ ରାଜନୀତିକ କର୍ମୀ ହେଉଛନ୍ତି ବାସୁଦେବ ଜେନା । ସେ ଜଣେ ଧନୀ ଲୋକ, ମାଛ ବ୍ୟବସାୟୀ ଏବଂ ରାଜନୀତିରେ ମଧ୍ୟ ଭାଗ ନିଅନ୍ତି ।

ପାରିକୁଦ ରାଜା ଶ୍ରୀ କୃଷ୍ଣଚନ୍ଦ୍ର ହରିଚନ୍ଦନ ମୋର ଜଣେ ବହୁକାଳର ବନ୍ଧୁ । ସେ ଅଧିକାଂଶ ସମୟ ପାରିକୁଦ ବାହାରେ କଟାନ୍ତି । କଟକ ଭୁବନେଶ୍ୱରରେ ଯେତେବେଳେ ରହନ୍ତି, ସେ କେବେ ଏକା ଖାଆନ୍ତି ନାହିଁ । ନିତାନ୍ତ ପକ୍ଷେ ଦୁଇ ତିନି ଜଣଙ୍କୁ ସେ ସବୁବେଳେ ନିମନ୍ତ୍ରଣ କରନ୍ତି । ମୁଁ ଭୁବନେଶ୍ୱରରେ ଥିଲାବେଳେ ମୋତେ ବହୁତ ଥର ଏପରି ଡାକିଛନ୍ତି ଏବଂ ମୋ ଘରେ ଜବରଦସ୍ତ ବହୁତ ଥର ଅତିଥି ହୋଇଛନ୍ତି । ତାଙ୍କୁ ଅତିଥି କରିବା ବଡ଼ ମୁସ୍କିଲ ବ୍ୟାପାର । ସେ କେବେ ରାତି ୧୧ଟା ପୂର୍ବରୁ ଖାଆନ୍ତି ନାହିଁ । ସେ ଯେବେ ଆସିବେ ଘରେ ସମସ୍ତେ ଖାଇପିଇ ଶୋଇ ଯାଇଥିବେ । ମୁଁ ଖାଲି ଏକଲା ଚେତା ଥାଏ ଏବଂ ସେ ଆସିଲେ ପୂଜାରୀକୁ ଉଠାଏ । ତାଙ୍କର ଗାଡ଼ି ନଥାଏ । ଦୁଇଟା ଟେକ୍ସି କରି ଗୃହିଣୀଙ୍କୁ ଖର୍ଚ୍ଚ କରି ଆସନ୍ତି ଖାଲି ସଉକ ସକାଶେ ଯେ କାହା ସାଙ୍ଗରେ ମିଶିକରି ଖାଇବେ । ସେ ଯେତେ ବଙ୍ଗଳା ଭଡ଼ା ଦିଅନ୍ତି, ତାକୁ ଖର୍ଚ୍ଚ କରିଥିଲେ ଭୁବନେଶ୍ୱରରେ ଖଣ୍ଡେ ଘର କରିପାରିଥାନ୍ତେ । କିନ୍ତୁ ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ପୁଅ ଆଗରେ ମଦ ପିଅନ୍ତି ଏବଂ ପୁଅକୁ କହନ୍ତି, ମୁଁ ବୁଢ଼ା ଓ ଅଚଳ ହୋଇଗଲେ ମୋତେ ଖାଲି ମଦ ଟିକିଏ ଟିକିଏ ଦେଉଥିବୁ । ସୌଭାଗ୍ୟବଶତଃ ଅଚଳ ହେବା ପୂର୍ବରୁ ସେ ମରିଗଲେ ଏବଂ ମରିବା ପୂର୍ବରୁ ସେ କଷ୍ଟ ଭୋଗିନାହାନ୍ତି । ତାଙ୍କ ସମୁଦାୟ ଜୀବନ ବେପରୁଆ ଭାବରେ କଟିଗଲା । ତାଙ୍କ ପରେ ତାଙ୍କ ପିଲା ଓ ସ୍ତ୍ରୀଙ୍କର କଅଣ ହେବ, ସେ କେବେ ଭାବିନାହାନ୍ତି ।

□□□

## ରାଜନୀତି

ଅବସର ଗ୍ରହଣ ପରେ ମୁଁ କହୁଛି ଯେ କଂଗ୍ରେସର ସଭ୍ୟ ହୋଇଥିଲି । ଖାଲି ସଭ୍ୟ ନୁହେଁ ଜଣେ ସକ୍ରିୟ ସଭ୍ୟ ମଧ୍ୟ ହେଲି । ପ୍ରଥମ ଧକ୍କା ଖାଇଲି କଟକ ମ୍ୟୁନସିପାଲଟି ଭୋଟରେ; ବୀରେନବାବୁ ମୋତେ ଟିକଟ ଦେବେ ବୋଲି କହି ଦେଲେନାହିଁ । ପଚାଶ ଟଙ୍କା ଦରଖାସ୍ତ ଫିସ ଗଲା ଏବଂ ମନ ମଧ୍ୟ ଖରାପ ହେଲା । ସେ କଥାକୁ ଅବଶ୍ୟ ମନରୁ ଫିଙ୍ଗିଦେଲି ଏବଂ ଭାବିଲି ଭବିଷ୍ୟତରେ ବୋଧହୁଏ ଏପରି ଦଶା ହେବନାହିଁ । ୧୯୬୭ ସାଧାରଣ ନିର୍ବାଚନ ପୂର୍ବରୁ ୧୯୬୭ ସାଲ ଆରମ୍ଭରୁ ବିଜୁ ପଟ୍ଟନାୟକ ଓଡ଼ିଶାର ନିର୍ବାଚନ ଦାୟିତ୍ୱରେ କଂଗ୍ରେସ ତରଫରୁ ରହିଲେ । ମୋର ତାଙ୍କ ସଙ୍ଗେ ଭଲ ପରିଚୟ ଥିଲା ଏବଂ ସେ ମୋତେ କଟକର ଉନ୍ନୟନ ଟ୍ରଷ୍ଟର ଗୋଟିଏ ମେମ୍ବର କରିଥିଲେ । ରାଜମାନ୍ତିକମାନେ ଲନ୍ଦଫନ୍ଦ କରିବେ, କାମ କରିବେ ନାହିଁ ଭାବି ସେ ମୋତେ ସର୍ବସାଧାରଣ ତରଫରୁ ସଭ୍ୟ କରି ନେଇଥିଲେ । ଆଉ ଜଣେ ସର୍ବସାଧାରଣ ସଭ୍ୟ ଥିଲେ ଶ୍ରୀଯୁକ୍ତ ଶରତ ମୁଖାର୍ଜି । ବୀରେନ ମିତ୍ରଙ୍କ ତରଫରୁ ମୁଁ ତାଙ୍କୁ ନିର୍ବାଚନରେ ମୋତେ ଗୋଟିଏ ଲୋକସଭା ଟିକଟ ଦେବାକୁ କହିଲି । ସେ କହିଲେ—"ନାହିଁ, ସମସ୍ତେ ଦିଲ୍ଲୀ ଯିବେ, ଓଡ଼ିଶାରେ କିଏ କାମ କରିବ ? ତୁମେ ଆସେମ୍ବ୍ଲିକୁ ଆସ ।" ମୁଁ ତେଣୁ ଖଲ୍ଲିକୋଟ ଆସେମ୍ବ୍ଲି ସ୍ଥାନ ପକାଶେ ଠିଆହେବାକୁ କହିଲି । ପୁରୁଣା ରାଜାସାହେବ ମରିଯାଇଥିଲେ । ବର୍ତ୍ତମାନର ରାଣୀ ଯେ ଏମ. ଏଲ. ଏ. ଥିଲେ ସେ ଓଡ଼ିଶା ଛାଡ଼ି ମାଦ୍ରାଜରେ ରହୁଥିଲେ । ତେଣୁ ଖଲ୍ଲିକୋଟ ସକାଶେ ବିଜୁବାବୁ ରାଜିହେଲେ । ଭୋଟର ବର୍ଷେ ଆଗରୁ ହାତରୁ ୧୯ ହଜାର ଟଙ୍କା ଦେଇ ଗୋଟିଏ ନୂଆ ଜିପ କିଣିଲି । କାରଣ ମୋ ଗାଡ଼ି ମୁଁ ନିଜେ ଚଲାଏ । ପୁରୁଣା ଗାଡ଼ି ନେଲେ ହଇରାଣ ହେବ ବୋଲି ନୂଆ ଗାଡ଼ିଟିଏ କିଣିଲି । ଗାଡ଼ି କିଣି ନିର୍ବାଚନମଣ୍ଡଳୀରେ ବୁଲିଲି । ଏହି ଭିତରେ କେଶପୁର ଛକରେ ମୋର ଘର ଥିଲା । ବାଲ୍ୟଜୀବନର ଘର ଏହି ଇଲାକାର ଭଳାରାମପଲ୍ଲିରେ । ଶ୍ୱଶୁର ଘର ଖଲ୍ଲିକୋଟରେ । ମାମୁଁଘର ଏ ଇଲାକା ମଧ୍ୟରେ । ତା ପରେ ବନ୍ଧୁବାନ୍ଧବ ଘର ବହୁତ ଅଛନ୍ତି । ମୋର ଶ୍ରଦ୍ଧେୟ ବନ୍ଧୁ ବାଇକୋଳ ମହାପାତ୍ର ଓ ଆନନ୍ଦ ସ୍ୱାଇଁ ମୋତେ ମଧ୍ୟ ସାହାଯ୍ୟ କରିବାକୁ

ରାଜି ହେଲେ । ଲୋକମାନେ ସମସ୍ତେ ଉତ୍ସାହ ଦେଲେ । ସମସ୍ତେ କହିଲେ, ଆପଣ ଯୋଗ୍ୟ ଲୋକ, ଆପଣଙ୍କୁ ଦେବୁ । କିନ୍ତୁ ପରେ ବିଜୁବାବୁ ମୋତେ ଟିକେଟ ଦେଲେନାହିଁ; କାରଣ ଗଞ୍ଜାମର କଂଗ୍ରେସ ନେତା ଶ୍ରୀ ବୃନ୍ଦାବନ ନାୟକ ମୋର ବିରୋଧୀ ହେଲେ । ତାଙ୍କର ଇଚ୍ଛା ତାଙ୍କର ଅନୁଗତ ଓ ସ୍ୱଜାତି ଖଲ୍ଲିକୋଟର ଶ୍ରୀ ହରିନାଥ ସାମନ୍ତରାୟ, ଯେ କି ରାଜାଙ୍କର କୌଣସି ଚଳିଆ ଚାକିରି କରୁଥିଲେ, ତାଙ୍କୁ ଠିଆକରାଇବାକୁ । ଶେଷରେ ବୃନ୍ଦାବନ ନାୟକଙ୍କ କଥା ରହିଲା । ମୁଁ ବାଏଁ ବାଏଁ ଉଡ଼ିଗଲି । ଦିଲ୍ଲୀ ପର୍ଯ୍ୟନ୍ତ ଅପିଲ କଲି ଏବଂ ଏ ସମ୍ପର୍କରେ ଦିଲ୍ଲୀ ଯାଇ ୮ ଦିନ ସେଠାରେ ରହିଲି । କିନ୍ତୁ କେନ୍ଦ୍ରର ବଡ଼ ବଡ଼ ନେତାଙ୍କ ସଙ୍ଗେ ଦେଖା ହୋଇପାରିଲା ନାହିଁ । କାମରାଜ, ସଞ୍ଜୀବ ରେଡ୍ଡୀ ଓ ଚଉହାନ ଦେଖା ଦେଲେନାହିଁ । ସେତେବେଳେ ସମସ୍ତ ଷ୍ଟେଟରୁ ଟିକେଟ ପାଇପାରି ନଥିବା ଅସନ୍ତୁଷ୍ଟ ଗୋଷ୍ଠୀ ଅନ୍ତତଃପକ୍ଷେ ଦୁଇଶ ଲୋକ ମେଳା ମେଳା ହୋଇ କଂଗ୍ରେସନେତାମାନଙ୍କ ସଙ୍ଗେ ଦେଖା କରି ସେମାନଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କରୁଥାନ୍ତି । ଦେଖା କରିବାକୁ ଦିନ ପରେ ଦିନ ଘଣ୍ଟା-ଘଣ୍ଟା ଧରି ବାହାର ଅଫିସରେ ବସିରହନ୍ତି । ଏ ଏକ କରୁଣ ଦୃଶ୍ୟ । ଦିଲ୍ଲୀରେ ଥିବାବେଳେ ବିଜୁବାବୁଙ୍କ ସଙ୍ଗେ ଦେଖା ହୋଇଥିଲା । ସେ କହିଲେ, "ଏଠି ବସି ଲାଭ ନାହିଁ; ଫେରି ଯାଇ ଗଙ୍ଗାଧର ମହାପାତ୍ରଙ୍କ ସଙ୍ଗେ କଥା କରି ତୁମ ଜନ୍ମସ୍ଥାନ ବ୍ରହ୍ମଗିରି ସିଟ୍ ସକାଶେ ଚେଷ୍ଟା କର ।" ସେତେବେଳକୁ ସମୟ ମୋଟେ ଦୁଇମାସ ଥାଏ । ସେ ଇଲାକାକୁ ମୁଁ ଆଦୌ ଯାଇନାହିଁ । ଖଲ୍ଲିକୋଟ ଇଲାକାରେ ତିନିଥର ବୁଲିଲିଣି । ଲୋକମାନେ ବହୁତ ଉତ୍ସାହ ଦେଉଥାନ୍ତି । ତେଣୁ ବିଜୁ-ବାବୁଙ୍କ କଥାରେ ରାଜି ହେଲି ନାହିଁ । ନିର୍ବାଚନରେ ଦିଲ୍ଲୀରୁ ଫେରିଆସି ବହୁତ ଉଜାଗର ରାତି କଟାଇଲି, ଠିଆ ହେବି କି ନାହିଁ ଏହି ଚିନ୍ତା କରି । ସେତେବେଳକୁ ଜିପ କିଣା ସରିଲାଣି । କେତେ ଟଙ୍କା ଖର୍ଚ୍ଚ ହେଲାଣି । କଟକରେ ମୋର ସମ୍ବନ୍ଧୀ ଶ୍ରୀଯୁକ୍ତ ଈଶ୍ୱର ଦାସଙ୍କଠାରୁ କିଛି ଦିନ ସକାଶେ ଗୋଟିଏ ଜିପ ମିଳିବାର ଆଶା ଥାଏ । ମୋର ସାନଭାଇ ଦେବେନ୍ଦ୍ର ଯେ କି ବ୍ରଜରାଜନଗରର ପେପର ମିଲରେ ଅଛି ସେ ମଧ୍ୟ ଗୋଟିଏ ଜିପ ଦେବ ବୋଲି କହୁଥାଏ । ଲୋକମାନେ ଏଆଡ଼େ ଉତ୍ସାହ ଦେଉଥାନ୍ତି । ମୋତେ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଇଥିବା ଆନନ୍ଦ ସ୍ୱାଇଁ ସେତେବେଳେ ସେ ଇଲାକାର ପଞ୍ଚାୟତ ସମିତି ଚେୟାରମ୍ୟାନ ଥିଲେ । ଏ ସବୁ ଅନୁକୂଳ ଅବସ୍ଥା ଦୃଷ୍ଟିରୁ ମୁଁ ଭାବିଲି ଯଦି ଠିଆ ନ ହେବି ମନରେ ଗୋଟିଏ ଅବଶୋଷ ରହିଯିବ ଯେ ଠିଆ ହେଲେ

ବୋଧହୁଏ ହୋଇଥାନ୍ତା । ତେଣୁ କଂଗ୍ରେସରୁ ଇସ୍ତଫା ଦେଇ ସ୍ୱାଧୀନ ପ୍ରାର୍ଥୀ ଭାବରେ ଠିଆହେଲ । ତାପରେ କିନ୍ତୁ ମୋର ବନ୍ଧୁମାନେ କ୍ରମେ ଅପସରିଗଲେ । ଆନନ୍ଦ ସ୍ୱାଇଁ ଖୋଲାଖୋଲି ଭାବରେ ମୋର ପ୍ରତିଦ୍ୱନ୍ଦ୍ୱୀ ନାରାୟଣ ସାହୁଙ୍କୁ ସାହାଯ୍ୟ କଲେ । ମୋର କର୍ମୀମାନେ, ଯେଉଁମାନେ ମୋଠାରୁ ଟଙ୍କା ନେଇ କାମ କରୁଥିଲେ, ସେମାନେ ପ୍ରକୃତରେ ମୋର କି ନାରାୟଣ ସାହୁଙ୍କ ଲୋକ ମୋତେ ଠିକ୍ ଜଣାପଡ଼ୁ ନ ଥାଏ । ସ୍ୱାଧୀନ ପ୍ରାର୍ଥୀଙ୍କର କର୍ମୀ ଆସିବେ କେଉଁଠାରୁ ? ନାରାୟଣ ସାହୁ ସେହି ଇଲାକାର ସ୍ଥାୟୀ ବାସିନ୍ଦା । କୋଡ଼ିଏ ବର୍ଷ ହେଲା ଭୋଟରେ ଠିଆ ହୋଇ ଆସିଛନ୍ତି; କିନ୍ତୁ ସବୁଥର ରାଜାଙ୍କଠାରୁ ହାରିଥାନ୍ତି । ଏଥର ତାଙ୍କୁ ମୌକା ମିଳିଗଲା । କଂଗ୍ରେସ ପ୍ରାର୍ଥୀ ନିନାଥ ସାମନ୍ତରାଙ୍କ ବ୍ୟକ୍ତିତ୍ୱ ନ ଥିଲା । ମୁଁ କଟକରେ ରହେ, ବୁଢ଼ାଲୋକ; ଲୋକମାନଙ୍କର କଥା ଶୁଣିବି ନାହିଁ କି କାମ କରିବି ନାହିଁ ବୋଲି ନାରାୟଣ ସାହୁ ଚାରିଆଡ଼େ ପ୍ରଚାର କଲେ । ସବୁ ଗାଁରେ ନାଟ-ତାମସା କରି ଲୋକମାନଙ୍କୁ ଭୋଳାଇ ଦେଲେ । ଅଧିକାଂଶ ସରପଞ୍ଚ ତାଙ୍କୁ ସାହାଯ୍ୟ କଲେ । ସରପଞ୍ଚମାନେ ଉନ୍ନୟନ ଟଙ୍କାରୁ ଅଧିକାଂଶ ଆତ୍ମସାତ୍ କରିଥାନ୍ତି । ଏହି କାମରେ ମୋଠାରୁ ସାହାଯ୍ୟ ମିଳିପାରିବ ନାହିଁ ଏହି ଆଶଙ୍କାରେ ସେମାନେ ସମସ୍ତେ ନାରାୟଣ ସାହୁଙ୍କୁ ସମର୍ଥନ କଲେ । ମୁଁ କହୁଥାଏ—"ମୁଁ ଏମ.ଏଲ.ଏ. ହେଲେ ତୁମର ଦୁଇଟି କାମ କରିବି । ଏଟା ହେଲା ମରୁଡ଼ି ଇଲାକା, ବନ୍ଧବାଡ଼ କାମ ବେଶୀ ହୋଇପାରି ନାହିଁ । ଅଫିସରମାନଙ୍କ ସଙ୍ଗେ ମୋର ଭଲ ପରିଚୟ ଅଛି । ସେମାନଙ୍କୁ ପ୍ରଭାବିତ କରି ଏହି ଇଲାକାରେ ଯେପରି ବନ୍ଧବାଡ଼ କାମ ବେଶୀ ହୋଇପାରିବ, ତାର ଯତ୍ନ ନେବି ଏବଂ ଚାରିଆଡ଼େ ଯେଉଁ ଲାଞ୍ଚମିଛ ଚାଲିଛି ମୋର ପ୍ରଭାବ ପକାଇ ତାକୁ ଯଥାସାଧ୍ୟ ରୋକି ପାରିବି ।" ଲୋକମାନେ ହଁ-ହଁ କଲେ, କହିଲେ—ବାବୁ ଭଲ କଥା କହୁଛନ୍ତି, ତାଙ୍କୁ ଦେବା । କିନ୍ତୁ ତାଙ୍କ ମନରେ କଣ ଥାଏ କିଛି ଜଣାପଡ଼େ ନାହିଁ । ତୁମେ ଲୋକଙ୍କୁ ଯେତେ ବୁଝାଇଥାଅ ପଛକେ ଭୋଟଦିନ ସେମାନଙ୍କୁ ଉଠେଇନେଇ ଭୋଟକେନ୍ଦ୍ରରେ ଜମା କରି ତୁମ ବାକ୍ସରେ ଭୋଟ ନ ଦେବା ପର୍ଯ୍ୟନ୍ତ କିଛି ଭରସା ନାହିଁ । ସେ କାମ ମୁଁ କରିପାରିଲି ନାହିଁ, କାରଣ ମୋର ଏତେ ବିଶ୍ୱସ୍ତ ଓ ସଚ୍ଚୋଟ କର୍ମୀ ନ ଥିଲେ । ଶେଷରେ ନାରାୟଣ ସାହୁ ଅଧିକାଂଶ ଭୋଟ ମାରିନେଲେ । ତାପରେ ମୋର ଥିଲା ସାଇକଲ ଚିହ୍ନ । ଜଣେ ଲୋକସଭା ପ୍ରାର୍ଥୀଙ୍କର ମଧ୍ୟ ଥିଲା ସାଇକଲ ଚିହ୍ନ । ମୁଁ ଶୁଣିଲି, ମୋର ପ୍ରତିଦ୍ୱନ୍ଦ୍ୱୀମାନେ ପ୍ରଚାର କଲେ ଗୋଟେ ଭୋଟ ତାଙ୍କ ଚିହ୍ନରେ ଦେଇ ଆଉ ଗୋଟିଏ ସାଇକଲ ଚିହ୍ନରେ ଦିଅ । ମୁଁ ସାଇକଲ ଚିହ୍ନ ସକାଶେ ପ୍ରଚାର କରିଥାଏ । ତେଣୁ

ମୋ ପକ୍ଷରେ ଯେଉଁମାନେ ଥିଲେ ସେମାନେ ଆସେମ୍ବ୍ଲି ଭୋଟ ଅନ୍ୟ ଚିହ୍ନରେ ଦେଇ ଲୋକସଭା ଭୋଟ ସାଇକଲ ଚିହ୍ନରେ ଦେଲେ । ତେଣୁ ଲୋକସଭା ପ୍ରାର୍ଥୀ କିଛି ପ୍ରଚାର କରି ନ ଥିଲେ ମଧ୍ୟ ତାଙ୍କର ସାଇକଲ ଚିହ୍ନରେ ଅନେକ ଭୋଟ ବାହାରିଲା, ମୋର କମିଗଲା । ସେଥିଯୋଗୁଁ ମୋତେ ଡ଼ିପୋଜିଟ ହରାଇବାକୁ ପଡ଼ିଲା । ଏ ଅବଶ୍ୟ ବଡ଼ ଅପମାନର କଥା । ସେଥିଯୋଗୁ ସେ ଇଲାକାରେ ମୁଁ ଆଉ ଲୋକଙ୍କ ଆଗରେ ମୁହଁ ଦେଖାଇ ପାରିଲି ନାହିଁ । ଜାଣିବା ଶୁଣିବା ଲୋକ-ମାନେ ମଧ୍ୟ ହତାଶ ହେଲେ । ଭୋଟର ମାସେ ପୂର୍ବରୁ ମୁଁ ମୋର ସମସ୍ତ ପରିବାର ନେଇ ଆମ କେଶପୁର ଛକ ଘରେ ରହୁଥିଲି । ମୋର ସ୍ତ୍ରୀ, ମୋର ସବା ସାନ ଭାଇ ଓ ତାର ପିଲାମାନେ, ମୋର ବଡ଼ପୁଅ ଯେ କି ବ୍ରଜରାଜନଗର ପେପର ମିଲରେ ଇଞ୍ଜିନିୟର ଥିଲା ସେ ଓ ତାର ପିଲାମାନେ ସେମାନେ ସମସ୍ତେ ଥିଲେ । ମୋର ବାକି ଦୁଇପୁଅ ପଛେ ଆସିଲେ । ସମସ୍ତଙ୍କର ଅକ୍ଳାନ୍ତ ପରିଶ୍ରମ ବ୍ୟର୍ଥ ହେଲା । ଭୋଟଦିନ ପୂର୍ବରୁ ଟଙ୍କା ପଇସା କାରବାର ବହୁତ ହେଲା । ଆମକୁ ଆସି ଅନେକ ମାଗିଲେ, ଆମେ ଦେଲୁନାହିଁ । ଆମେ କହିଲୁ, ଆମେ ଟଙ୍କା ଦେଇ ଭୋଟ କିଣି ଦୁର୍ନୀତି କରିବୁ ନାହିଁ । କାରଣ ଏ ଦୁର୍ନୀତି କଲେ ଆମକୁ ପରେ ଦୁର୍ନୀତି କରି ଏହି ଟଙ୍କା ଉଠାଇବାକୁ ପଡ଼ିବ । ଲୋକ-ମାନେ କଣ ଏ ନୀତି କଥା ବୁଝନ୍ତି ? ସେମାନଙ୍କର ଆବଶ୍ୟକ ଟଙ୍କା । ଏ ଟଙ୍କା ଅବଶ୍ୟ ସବୁ ଲୋକଙ୍କ ପାଖକୁ ଯାଏ ନାହିଁ; ଟାଉଟରମାନେ ମାରିନିଅନ୍ତି । ଦୁଇମାସ ଅକ୍ଳାନ୍ତ ପରିଶ୍ରମ କରି ଅର୍ଥଶ୍ରାଦ୍ଧ କରି ଭଗ୍ନମନୋରଥରେ ଫେରି-ଆସିଲି । ମୋର ଭାଇ, ଭାଇବୋହୂ, ସ୍ତ୍ରୀ, ପୁଅ, ବୋହୂ ଏମାନଙ୍କୁ ଯେ ମୁଁ ନେଇ ବହୁତ କଷ୍ଟ ଦେଇ ଗାଁ ଗାଁ ବୁଲାଇ ବୃଥାରେ ଫେରାଇ ଆଣିଲି, ସେଥିପାଇଁ ବେଶୀ ମନଦୁଃଖ ହେଲା । ସାତବର୍ଷକାଳ ମୁଖ୍ୟ ନିର୍ବାଚନ ଅଫିସର ଭାବରେ ମୁଁ ବହୁତ ନିର୍ବାଚନ କରାଇଥିଲି । ଶେଷରେ ନିର୍ବାଚନ ଲଢ଼େଇରେ ଯେ ନିଜେ ଯୋଗ ଦେଇ କ୍ଷତବିକ୍ଷତ ହୋଇ ଫେରିଆସିଲି, ତାହା ଖୁବ୍ ବାଧିଲା । ଜୀବନର ଅନୁଭୂତି ବହୁତ ବଢ଼ିଗଲା । ରାଜନୀତି ଯେ ଗୋଟିଏ ତୋଟିକିଟା ବ୍ୟାପାର ଏ କଥାଟା ପ୍ରାଞ୍ଜଳ ହୋଇଗଲା । ବନ୍ଧୁମାନେ ପ୍ରଥମେ ପ୍ରତିଶ୍ରୁତି ଦେଇ ପରେ ହଟିଯିବା, କର୍ମୀମାନେ ତୁମଠାରୁ ଟଙ୍କା ନେଇ ଅନ୍ୟର କାମ କରିବା, ଲୋକ-ମାନେ ହଁ-ହଁ ଭରି ଶେଷରେ ଶତା କାଟିବା—ଏ କଥା ନିଜ ଆଖିରେ ଦେଖିନେଲି । ହାଇକୋର୍ଟର ଓକିଲମାନେ ମୋତେ ପ୍ରଥମରୁ ଏଥିରେ ପ୍ରବେଶ ନ କରିବାକୁ ଉପଦେଶ ଦେଉଥିଲେ । ମୁଁ ସେମାନଙ୍କ କଥା ଶୁଣିଲି ନାହିଁ । ମୁଁ ଭାବିଲି ସେମାନେ

ସ୍ୱାର୍ଥପର, ଆରାମରେ ରହିବାକୁ ଚାହାନ୍ତି; ମଫସଲରେ ପରିଶ୍ରମ କରିବାକୁ ଇଚ୍ଛା କରୁନାହାନ୍ତି; ସେମାନଙ୍କର ଆବଶ୍ୟକ ଟଙ୍କା, ଆଉ କିଛି ନୁହେ । ବନ୍ଧୁମାନେ ମୋତେ ନିବର୍ତ୍ତାଇଲେ । ମୋର ସ୍ତ୍ରୀ ମୋତେ ବହୁତ ନିବର୍ତ୍ତାଇଲା । କାହା କଥା ଶୁଣିଲି ନାହିଁ । ଶେଷରେ ଭାବିଲି ମୋର ଭାଗ୍ୟଦୋଷରୁ ଏହା ହେଲା । ରାଜନୀତିରେ ଚୂକ୍ତିରେ ଆମମାନଙ୍କର ସ୍ଥାନ ନାହିଁ । ଏ ହେଉଛି ଯେଉଁମାନେ ଆରମ୍ଭରୁ ଏହା କରି ଏଥିରୁ ଜୀବିକା ଉପାର୍ଜନ କରୁଛନ୍ତି, ସେମାନଙ୍କର ରାଜ୍ୟ । ଆମ ଭଳିଆ ଲୋକ ଏଥିରେ ପ୍ରବେଶ କରିବା ଧୃଷ୍ଟତା ମାତ୍ର ।

ନିର୍ବାଚନ ପରେ ଆସି ଲାଗିଲି ମୋର ନିଜ ଧନ୍ଦା ଓକିଲାତିରେ । ନିର୍ବାଚନ ଯୋଗୁଁ ଏହି କାମରେ ମୋର ବହୁତ ବାଧା ଜନ୍ମିଥିଲା । ଅନେକ ନୂଆ ମହକିଲ ଅନ୍ୟଆଡ଼େ ଚାଲିଗଲେ । ନିର୍ବାଚନରେ ପରାଜୟ ଧକ୍କା ମନକୁ ଏକଦମ୍ ଥକା କରିଦେଇଥିଲା । ନିର୍ବାଚନରେ ବଳୁବାବୁ ଯେ କି ମୋତେ ଧୋକା ଦେଇଥିଲେ ସେ ମଧ୍ୟ ଚିତ୍‌ପଟାଙ୍ଗ ହେଲେ । ତାଙ୍କର ଦାମ୍ଭିକତା ଧୂଳିସାତ୍ ହେଲା । ବୃନ୍ଦାବନ ନାୟକ ଅବଶ୍ୟ ଜିତିଲେ; କିନ୍ତୁ ତାଙ୍କର ଅନୁଚର ହରିନାଥ ସାମନ୍ତରାୟ ଓ ରାଧାଗୋବିନ୍ଦ ସାହୁ କଟିଗଲେ । ଏହି ନିର୍ବାଚନରେ ଭାରତର ଅନେକ ନାମଜାଦା ନେତା କାଟ ଖାଇଗଲେ; ଯଥା—କାମରାଜ, ପାଟିଲ ଓ ଅତୁଲ୍ୟ ଘୋଷ ପ୍ରଭୃତି । ପ୍ରତି ନୂତନ ନିର୍ବାଚନରେ ଲକ୍ଷ ଲକ୍ଷ ନୂତନ ଯୁବକ ଭୋଟର ତାଲିକାକୁ ଆସନ୍ତି । ସେମାନଙ୍କର ପୁରୁଣା ନେତା ବା ପୁରୁଣାକାଳିଆ ଲୋକଙ୍କ ପ୍ରତି ସମ୍ମାନ ନ ଥାଏ । ସ୍ୱାଧୀନତା ସଂଗ୍ରାମରେ ଲଢ଼େଇ କରି ଯେଉଁମାନେ ଦୁଃଖ କଷ୍ଟ ସହିଥିଲେ ତାହା ସେମାନେ ଦେଖିନାହାନ୍ତି । ସେମାନେ ଦେଖୁଛନ୍ତି ଖାଲି ବର୍ତ୍ତମାନ । ବର୍ତ୍ତମାନ ଚାରିଆଡ଼େ ଅଶାନ୍ତି, ଅଭାବ, ଅନଟନ, କ୍ଷୁଧା, ବେକାର ଓ ଦୁର୍ନୀତି । ଯେଉଁମାନେ ଲମ୍ବା ଚଉଡ଼ା ପ୍ରତିଶ୍ରୁତି ଦେଇ ଭୋଟ ନେଇ ଆସିଯାଉଛନ୍ତି ସେମାନେ କେବଳ ନିଜର ଉନ୍ନତି ଛଡ଼ା କିଛି କରୁନାହାନ୍ତି । ଯେଉଁ ରାଜନୈତିକମାନଙ୍କ ଘରେ ଛପର ନ ଥିଲା ସେ ଆଜି କୋଠା କରି ଲକ୍ଷାଧିକ ସମ୍ପତ୍ତିର ମାଲିକ ହୋଇ ହୋଇଯାଉଛନ୍ତି । ଏହା ଦେଖି ଯୁବକ ଭୋଟର ମନରେ ବିଦ୍ରୋହ ଆସେ । ସେ ଲୋଡ଼େ ନୂଆ ଲୋକ, ନୂତନ ରକ୍ତ ଓ ଏକ ନୂତନ ପରିପନ୍ଥୀ । ତେଣୁ ୧୯୬୭ ଭୋଟରେ ଅନେକ ସୋସିଆଲିଷ୍ଟ ଭୋଟ ପାଇ ଆସିଗଲେ । ଜନକଂଗ୍ରେସ ଯେ କି କଂଗ୍ରେସର ବିରୋଧ କରୁଥିଲେ ସେମାନେ ମଧ୍ୟ ଆସିଗଲେ; କାରଣ ଲୋକମାନେ ପୁରୁଣା କଂଗ୍ରେସ ବିରୁଦ୍ଧରେ ବୀତ୍‌ଶ୍ରଦ୍ଧ ହୋଇଯାଇଥିଲେ । ଓଡ଼ିଶାରେ ଅବଶ୍ୟ ସ୍ୱତନ୍ତ୍ର ଦଳର ଇଲାକା ଅଛି । ସେମାନେ ଆହୁରି କେତେକ ବର୍ଷ

ପାଏ ଆସିବେ; କାରଣ ସେ ଇଲାକାର ଲୋକଙ୍କ ମନରେ ଧାରଣା ଜନ୍ମିଛି, ରାଜା ମହାରାଜାମାନେ ତାଙ୍କର ରାଜ୍ୟ ଓ କ୍ଷମତା ହରାଇ ବର୍ତ୍ତମାନ ତାଙ୍କ ଦ୍ୱାରରେ ଭୋଟପ୍ରାର୍ଥୀ । ଯେଉଁମାନେ କି ଶୀତଳପ୍ରାସାଦରୁ କେବେ ଓହ୍ଲାଉ ନଥିଲେ ସେମାନେ ଓ ସେମାନଙ୍କ ଶିରିଷକୋମଳ ଅନ୍ତଃପୁରବାସୀ ରାଣୀ ମହାରାଣୀମାନେ ଖାଣ୍ଡରେ ଓ ଦ୍ୱାରେ ଦ୍ୱାରେ ବୁଲି ଭୋଟଭିକ୍ଷା କରୁଛନ୍ତି । ଏଥା ଲୋକମାନଙ୍କ ମନରେ ଖୁବ୍ ପ୍ରଭାବ ପକାଏ । ସେହି ଗଡ଼ଜାତର ଲୋକମାନେ ପୁରୁଣା କଥା ଦେଖିଛନ୍ତି । ଏହି ନୂଆ କଥା ଦେଖିଲେ ସେମାନେ ନିଶ୍ଚୟ ଭାବନ୍ତି ଯେ ଏହି ରାଜା ମହାରାଜାମାନେ ପ୍ରକୃତ ଦୟାର ପାତ୍ର ଏବଂ ଭୋଟର ଅଧିକାରୀ । ରାଜା ମହାରାଜାଙ୍କ ନମ୍ରତା ପାଖେ ପାଖେ ଲୋକମାନେ ଦେଖିପାରୁଛନ୍ତି ପୁରାତନ ସ୍ୱାର୍ଥତ୍ୟାଗୀ ନିଃସ୍ୱ କଂଗ୍ରେସକର୍ମୀ ଜାଗାରେ ଅଧୁନାତନ କଂଗ୍ରେସ ନେତାଙ୍କର ଔଦ୍ଧତ୍ୟ, ଆସ୍ପର୍ଦ୍ଧା, ଗର୍ବ ଓ ବୈଭବ । ତେଣୁ ସେମାନଙ୍କ ମନରେ ନିଶ୍ଚୟ ଏମାନଙ୍କ ବିରୁଦ୍ଧରେ ବିଦ୍ରୋହ ଜାତ ହେଉଛି । ଲୋକମାନଙ୍କର କାମ ନ କରି ଖାଲି ଗାନ୍ଧୀ ଓ କଂଗ୍ରେସର ନାମ ବିକି କେତେ ଦିନ ଚଳିହେବ ? ଯୁଗ ବଦଳିଯାଉଛି, ନୂତନ ଭୋଟରମାନଙ୍କର ଦୃଷ୍ଟିକୋଣ ବଦଳି ଯାଉଛି । ଏ ନୂତନ ଯୁଗ ସଙ୍ଗେ ଖାପ ଖୁଆଇ ଯେ ଚଳି ନ ପାରିବ ସେ ନିଶ୍ଚୟ କାଟ ଖାଇଯିବ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏହି କଥା ଉପଲବ୍ଧି କରିପାରିଛନ୍ତି । ତେଣୁ ସେ ଦୃଷ୍ଟିକୋଣ ବଦଳାଇବାକୁ ଚାହାନ୍ତି । କିନ୍ତୁ ଲୋକମାନେ ଜାଣନ୍ତି, ଯେ ଭୋଗବିଳାସରେ ବୁଲଶେଯରେ ବଢ଼ି ଆସିଛନ୍ତି— ଆଜିପର୍ଯ୍ୟନ୍ତ ଲୋକମାନଙ୍କ ସକାଶେ କିଛି ତ୍ୟାଗ କରିନାହାନ୍ତି ଓ କେବଳ ନିଜର ବାପା, ଗୋସାଇଁ-ବାପା ନାମରେ ବିକାଇ ହେଉଛନ୍ତି ଏବଂ ଯୁଗ ବଦଳିଯାଉଛି ଦେଖି ଲୋକମାନଙ୍କ ସକାଶେ କୁମ୍ଭୀରକାନ୍ଦଣା ଆରମ୍ଭ କରିଦେଇଛନ୍ତି ସେମାନଙ୍କୁ ଦେବେ ନାହିଁ । ଲୋକମାନେ ଭୋଟ ଦେବେ ଏପରି ଲୋକଙ୍କୁ, ଯେ କି ସେମାନଙ୍କ ମଧ୍ୟରୁ ଜଣେ, ଯେ କି ସେମାନଙ୍କର ଦୁଃଖ କଷ୍ଟରେ ଭାଗୀ ହେଉଛି, ସେମାନଙ୍କର ଅଭାବ-ଅସୁବିଧା ନିଜେ ଅଙ୍ଗେ ଲିଭାଉଛି ଏବଂ ଯାହାର ହୃଦୟ ସେମାନଙ୍କ ସକାଶେ କାନ୍ଦିବ । ଶୀତଳପ୍ରାସାଦନିବାସୀର କୁମ୍ଭୀରକାନ୍ଦଣା ଉପରେ ଆଉ ସେମାନଙ୍କର ବିଶ୍ୱାସ ନାହିଁ । ତେଣୁ କମ୍ୟୁନିଷ୍ଟ ଓ ସୋସିଆଲିଷ୍ଟମାନେ ଭୋଟପାଇ ଯାଉଛନ୍ତି । କମ୍ୟୁନିଷ୍ଟମାନେ ଅବଶ୍ୟ ଦେଶପ୍ରତି ବିପଦର କାରଣ । ସେମାନେ ଅନ୍ୟ ଦେଶ ସଙ୍ଗେ ଏହି ଦେଶକୁ ମିଶେଇଦେବାକୁ ଚାହାନ୍ତି । ସୋସିଆଲିଷ୍ଟମାନେ ଲୋକଙ୍କ ବିଶ୍ୱାସଭାଜନ ହୋଇପାରନ୍ତେ; କିନ୍ତୁ ସେମାନଙ୍କ ପରସ୍ପର ମଧ୍ୟରେ କଳିଆ ଏବଂ ସେମାନଙ୍କ ମଧ୍ୟରୁ ଅନେକେ ଲୋକଙ୍କ

ନିର୍ବାଚନରେ ପ୍ରାର୍ଥୀ ନାମ ଘୋଷଣା ହୋଇଥାଇଛନ୍ତି । ତେଣୁ ଭୋଟରମାନେ ବର୍ତ୍ତମାନ ବଡ଼ ଦ୍ୱନ୍ଦ୍ୱ ସମସ୍ୟାରେ ପଡ଼ିଛନ୍ତି । କାହାରିକୁ ଉପଯୁକ୍ତ ନ ଦେଖି ଖାଲି ଜଣକ ପରେ ଆଉ ଜଣକୁ ପରୀକ୍ଷା କରି ଦେଖୁଛନ୍ତି । ଭାରତବର୍ଷର ଭୋଟର ନିରକ୍ଷର ହେଲେ ମଧ୍ୟ ନିର୍ବୋଧ ନୁହେଁ । ସେ ନିଜର ସ୍ୱାର୍ଥ ଭଲରୂପେ ବୁଝେ ଏବଂ କିଏ ତାହା ସମ୍ପାଦନ କରିପାରିବେ, ତାହା ମଧ୍ୟ ଜାଣିପାରେ । ଖାଲି ହାଉଆ ବା ସ୍ଲୋଗାନରେ ଭାସି ଯାଏନାହିଁ । ଅବଶ୍ୟ ଭୋଟ ସମୟରେ କିଛି ପଇସାପତ୍ର ରୋଜଗାର କରିବାକୁ ଚେଷ୍ଟାକରେ । ତଥାପି ପଇସା ନେଇ ଉପଯୁକ୍ତ ପାତ୍ରରେ ଭୋଟ ଦେବାକୁ ପଛାଏ ନାହିଁ । ଆମ ସଂବିଧାନରେ ଯେଉଁ ଗୁପ୍ତ ଭୋଟର ପ୍ରଥା ଅଛି, ସେ ଏକ ମାରାତ୍ମକ ଜିନିଷ । ଏହା ଫଳରୁ ପର୍ଯ୍ୟନ୍ତ କୌଣସି ଲୋକ ଦମ୍ଭରେ କହିପାରିବେ ନାହିଁ ଯେ ସେ ଭୋଟରେ ଜିଣିବ । ଫଳ ନ ବାହାରିବା ପର୍ଯ୍ୟନ୍ତ ତାର ମନ ଧକୁଧକୁ ହେଉଥିବ ।

୧୯୭୧ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଲୋକମାନେ ଅବଶ୍ୟ ବହୁଦଳ-ମିଳିତ ମନ୍ତ୍ରୀମଣ୍ଡଳରେ ବିଶ୍ୱାସ ହରାଇ ଇନ୍ଦିରା ଗାନ୍ଧୀଙ୍କ ହାତମୁଠା ଦୃଢ଼ କରିବାକୁ ତାଙ୍କୁ ଭୋଟ ଦେଇଦେଲେ; ତାଙ୍କର ଅଜସ୍ର ଟଙ୍କା ଏବଂ ପ୍ରଚାର ସ୍ରୋତରେ ଭାସିଗଲେ । ୧୯୬୭ରେ ହାଓ୍ୱା ବୋହିଲା କଂଗ୍ରେସ ବିରୁଦ୍ଧରେ; ଏଥର ହାଓ୍ୱା ବୋହିଲା ଇନ୍ଦିରାଙ୍କ ସପକ୍ଷରେ । ଇନ୍ଦିରା କିନ୍ତୁ ଏତେ ସଂଖ୍ୟାରେ ଆସି କିଛି କରି ନ ପାରିଲେ ଯେବେ ସେ ହାଓ୍ୱା ଓଲଟି ବୋହିବ, ଆଜିଠାରୁ କହି ହେବ ନାହିଁ । ସେ କିନ୍ତୁ ଜଣେ ବିଚକ୍ଷଣ ମହୀୟସୀ ନାରୀ । ଭୋଟରମାନଙ୍କର ନାଡ଼ ସେ ବେଶ୍ ଧରିପାରିଛନ୍ତି । ଆମ ଦେଶରେ ଅଧିକାଂଶ ଭୋଟର ଗରିବ । ତେଣୁ ଗରିବୀ ହଟାଓ ହେଲା ତାଙ୍କର ପ୍ରଥମ ସ୍ଲୋଗାନ । ବୁଢ଼ା ବୁଢ଼ା ନେତା-ମାନଙ୍କୁ ତାଙ୍କ ପଥରୁ ହଟେଇବା ସକାଶେ ସେ ଏକ କାର୍ଯ୍ୟପନ୍ଥା ଧରିଲେ ବ୍ୟାଙ୍କ ଜାତୀୟକରଣ, ଯାହା କଂଗ୍ରେସର ପ୍ରଥମରୁ ମତ ଥିଲା । ଏଥିରେ ନୂତନତ୍ୱ କିଛି ନ ଥିଲା । ଖାଲି କିପରି ଭାବରେ କରିବାକୁ ହେବ ଏହା ନେଇ ଯାହା ମତ ପାର୍ଥକ୍ୟ ହେଲା । ବୁଢ଼ାଗୁଡ଼ାଙ୍କର ଏହା କରିବାରେ ପ୍ରକୃତ ଆନ୍ତରିକତା ନାହିଁ— ଏହା ପ୍ରଚାର କରି ସେମାନଙ୍କୁ ଅସ୍ଥାନରୁ ହଟାଇ ହଠାତ୍ ଜାତୀୟକରଣ କରି-ଦେଲେ; କିନ୍ତୁ ସୁପ୍ରିମକୋର୍ଟରେ କାଟ ଖାଇଗଲା । ପରେ ସାବଧାନ ନୂତନ ଆଇନ କରିଗଲେ । ରାଜା ମହାରାଜାମାନେ ସେମାନଙ୍କର ପୂର୍ବ ପ୍ରଭାବ ଏବଂ ଧନବଳ ଯୋଗୁଁ ରାଜନୈତିକକ୍ଷେତ୍ରରେ କଂଗ୍ରେସର ଘୋର ପ୍ରତିଦ୍ୱନ୍ଦ୍ୱୀ ହୋଇ ଠିଆହୋଇ-ଛନ୍ତି । ସେମାନଙ୍କୁ ପ୍ରତିଦ୍ୱନ୍ଦ୍ୱିତାରୁ ହଟେଇବାକୁ ହେଲେ ସେମାନଙ୍କର ପ୍ରଥମେ

ଭତ୍ତା କାଟିବା ଆବଶ୍ୟକ । ସେଥିଯୋଗୁଁ ସ୍ୱଳ୍ପ ସୁବିଧା ଦେଇ ଓ ଧମକ ଦେଇ ତାଙ୍କ ଭତ୍ତା କାଟିଦିଆଗଲା, ଯାହାକି ପ୍ରତିବର୍ଷ କମି କମି ଆସୁଥିଲା ଏବଂ ଆଜି କୋଡ଼ିଏ ବର୍ଷ ପରେ କିଛି ନଥାନ୍ତା । ରାଜାମାନଙ୍କ ସମ୍ମତି ଅନୁସାରେ ସେମାନଙ୍କ ସଙ୍ଗେ ଅପୋଷ ନିଷ୍ପତ୍ତି କରି ସେମାନଙ୍କର ରାଜ୍ୟ ନେବା ସଙ୍ଗେ ସେମାନେ ଭତ୍ତା ପାଇବେ ବୋଲି ଚୁକ୍ତି କରାଯାଇଥିଲା । ବର୍ତ୍ତମାନ ସେ ଚୁକ୍ତିର ଆଜି କିଛି ମୂଲ୍ୟ ରହିଲା ନାହିଁ । ଏ ପଦକ୍ଷେପରେ ଆଇନଗତ ଯାହା ତ୍ରୁଟି ଥାଉ ବା ନଥାଉ, ନୀତିଗତ ତ୍ରୁଟି ନିଶ୍ଚୟ ରହିଲା । ଆଇନଗତ ତ୍ରୁଟିକୁ ଆଇନ ସଂଶୋଧନ କରି ଦୂର କରିବାକୁ ଚେଷ୍ଟା କରାଗଲା । ବର୍ତ୍ତମାନ ଯେପରି ଭାବରେ ଆଇନ ସଂଶୋଧନ କରାଯାଇଛି, ଯେକୌଣସି ଲୋକର ସମ୍ପତ୍ତି ଟଙ୍କାଟିଏ କ୍ଷତିପୂରଣ ଦେଇ ନିଆଯାଇପାରେ । କିଏ ଏ ବିଷୟରେ କୋର୍ଟରେ କିଛି ଆପତ୍ତି କରିପାରିବ ନାହିଁ । ଧନୀ ଲୋକଙ୍କୁ ଛୁରିରେ କତଲ ନ କରି ଆଇନଦ୍ୱାରା କତଲ କରିବା ଅବଶ୍ୟ ଭଲ; କିନ୍ତୁ ସମସ୍ତ ସମ୍ପତ୍ତି କୋଠାବାଡ଼ି, ଘରଦ୍ୱାର, ଜମି ସମାନ ଭାବରେ ବାଣ୍ଟିଦେଲେ ଯେ ସମାଜବାଦ ହୋଇଯିବ, ତାହା ନୁହେଁ । ଲୋକତରଙ୍ଗର ଫରକଯୋଗୁଁ ପେଟରେ ଅସମାନତା ଆସିଯିବ । ତେଣୁ ପ୍ରତି ପାଞ୍ଚ ଦଶ ବର୍ଷ ଭିତରେ ପୁଣି ସମାନ କରିବାକୁ ହେବ । ଏଥିରେ ଉତ୍ପାଦନ ନିଶ୍ଚୟ କମିବ, କାମରେ ସ୍ପୃହା ଆସିବ ନାହିଁ ଓ ଦେଶ ଦରିଦ୍ର ହୋଇ ରହିବ । ଲୋକଙ୍କର ସ୍ପୃହା ନ ଆସିଲେ ସେମାନଙ୍କୁ ଜବରଦସ୍ତ କାମ କରାଇବାକୁ ପଡ଼ିବ । ଏହା ହେଲା **Communism** । ଏହି ଦିଗକୁ ଧୀରେ ଧୀରେ ଆମ ଦେଶ ଗତି କରୁଛି । ଋଷିଆ ଅନେକଦିନୁ ଏହି ମତ ଧରିଛି । କିନ୍ତୁ ଆଜି ବିଜ୍ଞାନକ୍ଷେତ୍ର ଛଡ଼ା ସାଧାରଣ ଜୀବନର ମାନ ଏଠାରେ ଆମେରିକାଠାରୁ ବହୁତ ତଳେ । ଏମାନେ ପ୍ରତିବର୍ଷ କୋଟି କୋଟି ଟଙ୍କାର ଗହମ ଆମେରିକାରୁ କିଣନ୍ତି । ଆମେରିକା ପୁଞ୍ଜିପତି ଦେଶ ହେଲେହେଁ ଏଠାରେ ଜଣେ ଲୋକଟିର ରୋଜଗାର ଋଷିଆଠାରୁ ବହୁତ ବେଶୀ । ଏଠାରେ କାମ ଯୋଗାଇ ନପାରିଲେ ସରକାର ବେକାର ଭତ୍ତା ଦିଅନ୍ତି । ସତୁରିବର୍ଷରୁ ବୟସ୍କ ଲୋକମାନଙ୍କ ଭରଣପୋଷଣ ଭାର ନିଅନ୍ତି । ଗରିବ ଲୋକଙ୍କୁ ମାଗଣାରେ ଔଷଧ ଦିଅନ୍ତି । ସେଠାରେ କେବଳ ରାସ୍ତାକଡ଼ରେ ରହିବା ଆମ ଦେଶର ପ୍ରାସାଦରେ ରହିବାଠାରୁ ଆହୁରି ଆରାମପ୍ରଦ ।

□□□

## ସମୀକ୍ଷା

ବିଶ୍ୱବିଦ୍ୟାଳୟରୁ କୃତୀ ଛାତ୍ର ହୋଇ, ତିରିଶବର୍ଷ ସରକାରୀ ଚାକିରି କରି ଓ ଦଶବର୍ଷ ସର୍ବସାଧାରଣ ଜୀବନଯାପନ କରି ବର୍ତ୍ତମାନ ସମୀକ୍ଷା କରେ ମୁଁ ଜୀବନରେ କଅଣ କରିପାରିଛି ଓ ଆଉ କଣ କରିପାରିବି ? ନିଃସ୍ୱ ଅବସ୍ଥାରୁ ସ୍ୱଚ୍ଛଳ କରିପାରିଛି । ପ୍ରଭୂତ ଧନଶାଳୀ ନ ହେଲେ ମଧ୍ୟ ଅଭାବର ଉପରକୁ ଉଠିପାରିଛି । ମୋର ନିଜର ଦୁଇ ଭାଇ ରାଧାନାଥ ଓ ଦେବେନ୍ଦ୍ରକୁ ଉଚ୍ଚଶିକ୍ଷା ଦେଇ ସମାଜରେ ପ୍ରତିଷ୍ଠିତ କରିପାରିଛି । ଶୈଶବ ଅବସ୍ଥାରେ ପିତାମାତାଙ୍କ ମୃତ୍ୟୁପରେ ମୁଁ ଯେପରି କଷ୍ଟ ପାଇଲି, ସେମାନେ ମଧ୍ୟ ପାଇଥିଲେ । ପର ଘରେ ରହି ଦୁଇ ତିନିବର୍ଷ ପଢ଼ି ତାପରେ ମୋର ଚାକିରି ହେବାରୁ ରାଧାନାଥର ଅବଶ୍ୟ ଆଉ କଷ୍ଟ ନ ଥିଲା । ପାଟନା କଲେଜରୁ ବି. ଏ. ଓ ଏମ୍. ଏ.ରେ ମନୋବିଜ୍ଞାନରେ ପ୍ରଥମ ଶ୍ରେଣୀ ପାଇ ପ୍ରଥମେ ରେଭେନ୍‌ସା କଲେଜରେ ଲେକଚରର୍ ହୋଇ ପରେ ବିଲାତ ଯାଇ ପି. ଏଚ୍. ଡି. କରି ସେହି ବିଭାଗର ମୁଖ୍ୟ ହୋଇପାରିଲା । କେବଳ ଭାରତବର୍ଷରେ ନୁହେ ସମଗ୍ର ପୃଥିବୀରେ ମଧ୍ୟ ସେ ନିଜ ବିଦ୍ୟାରେ ସୁନାମ ଅର୍ଜନ କରିପାରିଛି ।

ସାନଭାଇ ଦେବେନ୍ଦ୍ର ପିତାମାତା ହରାଇ ମାମୁଘରେ ରହି ଅବଶ୍ୟ ଅଭାବରେ ନ ଥିଲା; ପରେ ମୋ ପାଖକୁ ଆସି ଭଲରେ ରହିଲା । ସେ ମୋର ଗୋସାଇଁମା'ର ଗେହ୍ଲା ପୁଅ ଥିଲା । ଅତି ଗେହ୍ଲା ହୋଇ ତାର ପଢ଼ାପଢ଼ିରେ ଅବଶ୍ୟ ପୂରା ମନ ଲାଗୁନଥିଲା । ଯେତେବେଳେ ବି.ଏସ-ସି., ଏମ.ଏସ-ସି. ପାସ୍ କରି ଭେଟେନାରି ଡିଗ୍ରୀ ସକାଶେ ପିଲାମାନେ ମାନ୍ଦ୍ରାଜ ଯାଉଥିଲେ, ତେଣୁ ସେ ମଧ୍ୟ ଏହି ଡିଗ୍ରୀ ସକାଶେ ଗଲା । ସେଠାରେ ପାଞ୍ଚବର୍ଷ ରହି ପାଠପଢ଼ା ସାରି ସେ ଯେତେବେଳେ ଗୁରୁଦେବ ସିଂହଙ୍କ ଅଧୀନରେ କାମ କରିବାକୁ ଆରମ୍ଭ କଲା, ତାହାର ବିଦ୍ୟାବୁଦ୍ଧିର ଓ ଡିଗ୍ରୀର କିଛି ମର୍ଯ୍ୟାଦା ରହିଲା ନାହିଁ । ମିଷ୍ଟର ସିଂହ ଭେଟେନାରି ଗ୍ରାଜୁଏଟମାନଙ୍କୁ ଷ୍ଟକମ୍ୟାନଙ୍କଠାରୁ ମଧ୍ୟ ହୀନଦୃଷ୍ଟିରେ ଦେଖୁଥିଲେ । ଦୁଇବର୍ଷ ଚାକିରି ମଧ୍ୟରେ ତାଙ୍କ ବ୍ୟବହାରରେ ଏତେ କ୍ଷୁବ୍ଧ ହୋଇପଡ଼ିଲା ଯେ ସେ ଆଉ ଦିନେ ମାତ୍ର ଚାକିରିରେ ରହିବାକୁ ଚାହିଁଲା ନାହିଁ । ଯେତେବେଳକୁ ତାର ଚାକିରି ୩ ବର୍ଷ ହୋଇଥାଏ । ୫ ବର୍ଷ ଚାକିରି କରିବାଲାଗି ୫,୦୦୦ ଟଙ୍କା ଷ୍ଟାଇପେଣ୍ଡ ନେଇ ବଣ୍ଡ ଲେଖିଦେଇଥାଏ । ବାକି ଦୁଇବର୍ଷ ସକାଶେ ଦୁଇହଜାର

ଟଙ୍କାର ବନ୍ଧ ଦେଇ ତାକୁ କେଉଁଠୁ ଖଲାସ କରିଆଣିଲି ଏବଂ ମୋର ବନ୍ଧୁ ଶ୍ରୀ ପି. ଇ. ବଷ୍ଟାନ ଯେ କି ବ୍ରଜରାଜନଗରର ପେପର ମିଲ୍‌ରେ ସେକ୍ରେଟାରୀ ଥିଲେ, ତାଙ୍କ ସାହାଯ୍ୟରେ ତାକୁ ମିଲ୍‌ର ଡେଆରୀ ଫାର୍ମର ଷ୍ଟୋରରେ ରଖାଗଲା । କ୍ରମେ କ୍ରମେ ସେ କାର୍ଯ୍ୟ ସାଙ୍ଗେ ଅଫିସରେ ମଧ୍ୟ କାମ କଲାପରେ ଡେଆରୀ ଫାର୍ମ କାମ ଛାଡ଼ି ଅଫିସର ଅଣ୍ଡର ସେକ୍ରେଟେରି ଓ ପରସନେଲ ଅଫିସର ହେଲା । ଅବଶ୍ୟ ଡେୟାରି ଫାର୍ମର କାମକୁ ତତ୍ତ୍ୱାବଧାନ କରିବାକୁ ପଡ଼ୁଥିଲା । ଆଡ଼ମିନିଷ୍ଟ୍ରେସନରେ ବହୁତ ଦକ୍ଷତାସହ କାମ କରିବାରୁ ସମସ୍ତ କାର୍ଯ୍ୟରେ ତାହାର ସାହାଯ୍ୟ ଅପରିହାର୍ଯ୍ୟ ହୋଇପଡ଼ିଲା । କି ଲେବର, କି ପରସେନେଲ, କି ହାଉସିଂ, କି କେଣ୍ଟ୍ୱାର୍କ, କି ଚେମ୍ବର ଅଫ କମର୍ସ, କି କନଫରେନ୍‌ସ ସମସ୍ତ କାର୍ଯ୍ୟରେ ତାକୁ ବ୍ୟବହାର କରାଗଲା ଏବଂ କ୍ରମେ କ୍ରମେ ସେ ମ୍ୟାନେଜମେଣ୍ଟର ଦକ୍ଷିଣ ହସ୍ତ ହୋଇ ରହିଲା । ଆମର ପୈତୃକ ସମ୍ପତ୍ତି ବେଶୀ କିଛି ନ ଥିଲା । ମୁଁ ସ୍ୱୋପାର୍ଜିତ ଧନରୁ ଯାହା ଘର ଖଣ୍ଡେ ଖଣ୍ଡେ କରିଥିଲି । ରାଧାନାଥ ସେହିପରି କଟକ-ସହର ବକ୍ସିବାଜାରରେ ଦୁଇ ଏକର ଜାଗା ନେଇ ବହୁତ ପରିଶ୍ରମ କରି ସେଠାରେ ଘର ଏବଂ ପୋଖରୀ କଲା; ଯାହାକୁ ଲୋକମାନେ ଖାଲି ଦେଖିବାକୁ ଆସିଲେ । ସାନଭାଇ ଦେବେନ୍ଦ୍ର ଭୁବନେଶ୍ୱରରେ ଏକରେ ଜାଗା ସହ ଗୋଟିଏ ଘର କିଣିଲା । ଏପରି ଆମ ସବୁ ଭାଇଙ୍କର ଖଣ୍ଡେ ଖଣ୍ଡେ ଘର ହୋଇଗଲା । କକେଇ-ପୁଅ ଭାଇ ପୁରୁଷୋତ୍ତମକୁ ମୁଁ ହାଇସ୍କୁଲ ସ୍ତରରୁ ପଢ଼ାଇ ଆସିଲି । କାରଣ ତାର ପିତାଙ୍କର ଅକାଳମୃତ୍ୟୁ ହୋଇଯାଇଥିଲା । ସେ ଦର୍ଶନଶାସ୍ତ୍ରରେ ଅନର୍ସ ନେଇ ବି. ଏ. ପାସ୍ କଲାପରେ ମୁଁ ତାକୁ ଡି. ଇଡ଼. ପଢ଼ାଇଲି । ତାପରେ ଏମ. ଇଡ଼. ପଢ଼ିବାକୁ ପାଟଣା ପଠାଇଲି । ଦୁର୍ଭାଗ୍ୟବଶତଃ ଏମ୍. ଇଡ଼.ରେ ଗୋଟିଏ ପେପର୍‌ରେ ପରୀକ୍ଷକ ଅନବଧାନବଶତଃ ଶୂନ ଦେଲେ । ସେଥିଯୋଗୁଁ ତାର ତୃତୀୟ ଶ୍ରେଣୀ ହୋଇଯିବାରୁ ତାକୁ ପାଟଣାରେ ଆଉ ବର୍ଷେ ଦର୍ଶନରେ ଏମ. ଏସ୍. ପଢ଼ାଇଲି । ସେ ସେଥିରେ ଦ୍ୱିତୀୟ ଶ୍ରେଣୀ ପାଇଲା; ତାପରେ ଆସି ଟ୍ରେନିଂ କଲେଜ କଟକରେ ଲେକ୍‌ଚରର ହେଲା । ସେ ସମୟରେ ତାର ବିବାହ ବ୍ରହ୍ମପୁରନିବାସୀ ଅବସରପ୍ରାପ୍ତ ସବଜଜ୍ ଗଣେଶ ମହାପାତ୍ରଙ୍କ ଝିଅ ସଙ୍ଗେ ହୋଇଥିଲା । ତାପରେ ସେ ଛ'ମାସ ସାଙ୍ଘାତିକ ବେମାର ପଡ଼ିଲା । ତାର ବେମାର ସମୟରେ ତାର ସ୍ତ୍ରୀ ଯେଉଁ ସେବା-ଶୁଶ୍ରୂଷା କଲେ ତାହା ବିରଳ । ତାଙ୍କର ଧର୍ମବଳରେ ସେ ଆରୋଗ୍ୟ ଲାଭ କରି ପୁଣି ସେହି ଲେକ୍‌ଚରର କାମରେ ଯୋଗ ଦେଲା ଏବଂ ପରେ ସ୍କୁଲ ବିଭାଗର

ଇନ୍‌ସପେକ୍ଟର ଓ ଡେପୁଟି ଡ. ପି· ଆଇ. ହୋଇପାରିଲି ।

ମୋର ଦୁଇଟି ଭଣଜା ପିଲାଦିନୁ ତାଙ୍କ ପିତାଙ୍କୁ ହରାଇଥିଲେ । ସେମାନଙ୍କୁ ଆଣି ପଢ଼ାଇଲି । ବଡ଼ ଭଣଜା ରଘୁନାଥ ଦାଶ କଟକ ଇଞ୍ଜିନିୟରିଙ୍ଗ ସ୍କୁଲରୁ ପାସ୍ କରି ସରକାରୀ ଚାକିରି କଲା । ସାନ ଭଣଜା ଜଗନ୍ନାଥ ଦାଶ ଏମ୍. ଏସ୍-ସି. କେମିଷ୍ଟ୍ରିରେ ପ୍ରଥମ ଶ୍ରେଣୀ ପାଇ ଖଡ଼୍ଗପୁରରେ ଆଇ. ଆଇ. ଟି.ରେ ରିସର୍ଚ୍ଚ କରୁଥିବାବେଳେ ଟାଟା କମ୍ପାନୀଦ୍ୱାରା ମନୋନୀତ ହୋଇ ଜର୍ମାନୀ ଗଲା । ସେଠାରୁ ଫେରିଆସି ଉଚ୍ଚ ଚାକିରିରେ ସେହି କମ୍ପାନୀରେ ରହିଲା ଏବଂ ପରେ ମାସିକ ତିନି ହଜାର ଟଙ୍କା ପର୍ଯ୍ୟନ୍ତ ତାର ବେତନ ବଢ଼ିବାର ସୁଯୋଗ ମିଳିଲା । ତାର ବିବାହ ମଧ୍ୟ ମୁଁ ଢେଙ୍କାନାଳ ଏକ୍‌ଜିକ୍ୟୁଟିଭ ଇଞ୍ଜିନିୟର ନୀଳକଣ୍ଠ ରଥଙ୍କ ଝିଅ ସଙ୍ଗେ କରାଇଥିଲି । କଲେଜପଢ଼ା ସମୟରେ ମୋର ଭାଇ ରାଧାନାଥ ଘରେ ରହି ପଢ଼ୁଥିଲା । ମୋର ଶଳାର ପୁଅ ଭବାନୀପ୍ରସାଦ ଆଚାର୍ଯ୍ୟ ମୋର କଟକ ଘରେ ରହି ଡ. ଇଡ଼. ଏବଂ ଆଇନ ପଢ଼ିଲେ । ସେ ବର୍ତ୍ତମାନ ସୁନ୍ଦରଗଡ଼ ହାଇସ୍କୁଲରେ ଆସିଷ୍ଟାଣ୍ଟ ହେଡ଼ମାଷ୍ଟର ଅଛନ୍ତି । ପୁତୁରା ବନମାଳୀ ରଥଙ୍କୁ ଆଇ· ଏ. ପଢ଼ିବାରେ ସାହାଯ୍ୟ କରି ପୋଲିସ ସବ୍‌ଇନ୍‌ସପେକ୍ଟର କରି ଦେଇଥିଲି । ସେ ବର୍ତ୍ତମାନ ଡ. ଏସ୍. ପି. ଅଛନ୍ତି । ମୋର ଭାଇ ବୀରଭଦ୍ର ମିଶ୍ର ଯେ କି ପୋଷ୍ୟପୁତ୍ର ହୋଇଯାଇଥିଲେ, ସେ ପଞ୍ଚମଶ୍ରେଣୀ ପାସ୍‌କରି ତାଙ୍କ ଗାଁରେ ଗୃହବାସ କରୁଥିଲେ । ମୋର ଚାକିରି ସମୟରେ ମୁଁ ତାଙ୍କୁ ୮ମ ଶ୍ରେଣୀ ପାସ୍ କରାଇ ଟ୍ରେନିଂ କରାଇ ଶିକ୍ଷକ କାମରେ ନିଯୁକ୍ତ କରାଇଥିଲି । ବାହାରର ବହୁତ ପିଲାଙ୍କୁ ମଧ୍ୟ ପଢ଼ାରେ ସାହାଯ୍ୟ କରିଛି ଏବଂ ପ୍ରାୟ ୨୦।୩୦ ଜଣ ଗାଁ ପାଖ ଲୋକଙ୍କୁ ପିଅନ ଚାକିରିରୁ ଆରମ୍ଭ କରି କିରାନି ସ୍ତରର ଚାକିରି ପର୍ଯ୍ୟନ୍ତ କରାଇ ଦେଇଛି । ସେମାନଙ୍କୁ ଦେଖିଲେ ବର୍ତ୍ତମାନ ମନରେ ଆନନ୍ଦ ଆସେ ।

ମୋର ଜୀବନରେ ଅବଶ୍ୟ ବହୁତ କିଛି କରିଛି; କିନ୍ତୁ ମୋର କୌଣସି କାମ ପୂର୍ଣ୍ଣତାପ୍ରାପ୍ତ ହୋଇପାରିଲା ନାହିଁ । ପାଠପଢ଼ା ଏମ୍. ଏ. ଷଷ୍ଠବର୍ଷ ପର୍ଯ୍ୟନ୍ତ ଯାଇଥିଲେ ମଧ୍ୟ ଚାକିରି ହୋଇଯିବାରୁ ଏବଂ ଆଳସ୍ୟବଶତଃ ଏମ୍· ଏ. ପରୀକ୍ଷା ଦେଇପାରିଲି ନାହିଁ; ତେଣୁ ପଢ଼ା ଅସମ୍ପୂର୍ଣ୍ଣ ରହିଲା । ପରେ ଅବଶ୍ୟ ଆଇନ ପାସ କରିଥିଲି । ଚାକିରିରେ ଅନ୍ତତଃପକ୍ଷେ ୩ ବର୍ଷ କମିଶନର ହୋଇଥାନ୍ତି । ମୋର ଜୁନିଅର ରତ୍ନାକର, ପ୍ରାଣନାଥ, ନାଗରୀ ଓ ମୋହିନୀଙ୍କ ପ୍ରଭୃତି କମିଶନର ହେଲେ; କିନ୍ତୁ ମୋର ଆଇ. ଏ. ଏସ୍.କୁ ଯିବାରେ ଡେରି ହେବାରୁ କମିଶନର ହୋଇପାରିଲି ନାହିଁ । ସର୍ବମୋଟ ଚାକିରିରେ ଏକ ଲକ୍ଷ ଟଙ୍କା କ୍ଷତି ହେଲା ଏବଂ

ଆତ୍ମଗ୍ଲାନି ବହୁତ ହେଲା । ଓକିଲାତି ସେପରି ଅଧାଅଧି । ମୋର ବୟସ ଓ ପଦମର୍ଯ୍ୟାଦା ଯୋଗୁ ମୁଁ କୌଣସି ସିନିୟର ଓକିଲ ପାଖରେ ଜୁନିଅର ହୋଇ ରହିଲି ନାହିଁ; ଯଦ୍ୟପି କି ମହକିଲ ମହଲ ଜାଣିଥାନ୍ତେ ମୋର କାହିଁକି ଏବଂ ମୁଁ ଓକିଲାତି କରୁଛି ବୋଲି । ରିଟାୟର ପରେ ମୁଁ ନିଜେ ସ୍ୱାଧୀନ ଭାବରେ ଓକିଲାତି ଆରମ୍ଭ କଲି ଏବଂ ମୋର ମର୍ଯ୍ୟାଦା ରକ୍ଷା କରିବାକୁ ହାଇକୋର୍ଟ ଏବଂ ରେଭେନ୍ୟୁ ବୋର୍ଡ ଛଡ଼ା ତଳକୁ ଗଲିନାହିଁ କି ଟାଉଟରେ ମୋହରିର ନିଯୁକ୍ତ କଲିନାହିଁ । ତାପରେ ଗୃହବାସ ଓ ନିଜ କାମରେ ଶନିବାର ରବିବାର ସବୁବେଳେ ଅନୁପସ୍ଥିତ ରହିଲି । ଶନିବାର ରବିବାରେ ମହକିଲମାନେ ଭିନ୍ନ ଭିନ୍ନ ଜିଲ୍ଲାରୁ ଆସି ମୋତେ ନପାଇ ଅନ୍ୟ ପାଖକୁ ଗଲେ । ତେଣୁ ଓକିଲାତିରେ ବେଶୀ କେଶ୍ ପାଇପାରିଲି ନାହିଁ । ରାଜନୈତିକ ଜୀବନ ପୂରା ବ୍ୟର୍ଥ ହୋଇଗଲା । ଲେଖାଲେଖି କରିବାକୁ ଚେଷ୍ଟା କଲି । ଅନେକ ଲେଖା ଖବରକାଗଜମାନଙ୍କରେ ଛପାଇଲି; ସେସବୁ ଆଧୁନିକ ସମସ୍ୟା ନେଇ । ସେସବୁ ଖୁବ୍ ଆଦୃତ ହୋଇଥିଲା; କିନ୍ତୁ 'ସମାଜ' ଆମ ସମସ୍ୟାମୂଳକ ଲେଖା ପ୍ରକାଶ କରେନାହିଁ । ସବୁଲେଖା ରାଧାନାଥବାବୁ ଯାଞ୍ଚ କରିବେ ତ ଛପା ହେବ । ରାଧାନାଥବାବୁଙ୍କ ସମୟ ନାହିଁ । ତାପରେ କିଛି ସମାଲୋଚନା ଥିବ ତ ଛପେଇବେ ନାହିଁ । ବିଶ୍ଳେଷଣମୂଳକ ଲେଖା ଲେଖିବାକୁ ହେଲେ ବର୍ତ୍ତମାନ ମାନ୍ତର ସମାଲୋଚନା ନକରି ରହି ହେବନାହିଁ । ରାଧାନାଥବାବୁ ତାକୁ କିନ୍ତୁ ଛପେଇବେ ନାହିଁ । 'ପ୍ରଜାତନ୍ତ୍ର' କିଛି କିଛି ଛପାଏ; କିନ୍ତୁ ମହତାବବାବୁ ଯେତେବେଳେ ଇନ୍ଦିରାପନ୍ଥୀ ହୋଇଗଲେ, କେନ୍ଦ୍ରୀୟ ଶାସନର କୌଣସି କାର୍ଯ୍ୟକୁ ସମାଲୋଚନା କରିବା ତାଙ୍କ ପ୍ରତି ଅସହ୍ୟ ହୋଇଗଲା । ସେଠାକୁ ଲେଖା ପଠାଇଲେ ମାସ ମାସ ଛପା ନହୋଇ ଶେଷରେ ହଜିଯାଉଥିଲା । ତେଣୁ ଧାରାବାହିକ କିଛି ଲେଖି ନଥିଲି । ଲେଖା ମଧ୍ୟରେ ଏହି ଜୀବନୀ ମୋର ପ୍ରଥମ ଆଖିଦୃଷ୍ଟିଆ ଲେଖା । ରିଟାୟର ପରେ ପରେ ଗୋଟିଏ ଉପନ୍ୟାସ, ଗୋଟିଏ ନାଟକ ଏବଂ କେତେକ କବିତା ଲେଖିଥିଲି; କିନ୍ତୁ ତାର ପାଣ୍ଡୁଲିପି ମଧ୍ୟ କୁଆଡ଼େ ଗଲା । ସ୍କଲାର ହିସାବରେ କୌଣସି ଗୋଟିଏ ବିଦ୍ୟାରେ ବିଶେଷ ପ୍ରତିପତ୍ତି ହାସଲ କରିପାରିଲି ନାହିଁ ! ସବୁବିଦ୍ୟାରେ କିଛି କିଛି ସଂଗ୍ରହ କରିପାରିଥିଲି । ମୋର subject ଅର୍ଥନୀତି ଯେଉଁଥିରେ ମୁଁ ବିଶ୍ୱବିଦ୍ୟାଳୟରେ କୃତିତ୍ୱ ଲାଭ କରିଥିଲି । ରିଟାୟର ପରେ ସେଥିରେ ଆଉ କିଛି ପଢ଼ାପଢ଼ି ବା ଗବେଷଣା କଲିନାହିଁ । ଖାଇପିଇ ଆରାମରେ ମଧ୍ୟ ରହିଲି ନାହିଁ । ମୋ ଖାଇବା ପିଇବା ଅତି ସାଧାରଣଧରଣର ଥିଲା । ଦିନକୁ

ଯାହା ମାନ ଦୁଇଖଣ୍ଡ ଛଡ଼ା ଅମଳ କିଛି ନଥିଲା । ବହୁକୁଟୁମ୍ବ, ଘରଦ୍ୱାର ଓ ଜମିବାଡ଼ି ବୁଝାସୁଝା କରିବାରେ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ୁଥିଲା । ଗୋଟିଏ ଜାଗାରେ ମୋର ସବୁ ସମ୍ପତ୍ତି ଥିଲେ ଏତେ କଷ୍ଟ ହେଉ ନଥାନ୍ତା । ଗୋଟିଏ ଘର କଟକରେ ତ ଆଉ ଗୋଟିଏ ଭୁବନେଶ୍ୱରରେ ଏବଂ ଜମିଖଣ୍ଡେ ୯୦ ମାଇଲ୍ ଦୂରରେ କେଶପୁର ଛକ ପାଖରେ, ଯାହାକୁ ମୁଁ ହାତରେ ଚାଷ କରୁଥିଲି ଏବଂ ଯେଉଁଠାରେ ଜଙ୍ଗଲ ସଫା କରି ଘର, ପୋଖରୀ ଓ ବଗିଚା କରିବାରେ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ୁଥିଲା ଏବଂ ଯେଉଁଠିକି ମୋତେ ଘନଘନ ଯିବା ଆସିବା କରିବାକୁ ପଡ଼ୁଥିଲା । ସେଠାରେ ପଡ଼ିଯାଇ ଗୋଡ଼ ଜଖମ ହୋଇଯିବାରୁ ତିନି ମାସ କାଳ ଭଲ ଚାଲିପାରିଲି ନାହିଁ । ତା ପରେ ମୋର ଜନ୍ମସ୍ଥାନ ବୁଦ୍ଧିବିର ଏବଂ ଶୈଶବସ୍ଥାନ ତଳଗ୍ରାମପଲ୍ଲୀଠାରୁ ସୁଦ୍ଧା ମୋର ସମ୍ପର୍କ ମଧ୍ୟ ତୁଟାଇନଥିଲି । ଶେଷ ଜୀବନରେ ବୁଦ୍ଧିବିରରେ ମଧ୍ୟ ଘର ଖଣ୍ଡେ କରିଥିଲି ଏବଂ ତଳଗ୍ରାମପଲ୍ଲିରେ ଗ୍ରାମଚଣ୍ଡୀ ଠାକୁରାଣୀ ପାଖକୁ ଅନେକ ସମୟରେ ଯାଉଥିଲି ।

ତଳଗ୍ରାମପଲ୍ଲୀ ଲୋକମାନଙ୍କର ମୋର ଓକିଲାତି କରିବା ସମୟରେ ବହୁତ କାମ କରିଥିବାରୁ ସେମାନେ ମୋପ୍ରତି କୃତଜ୍ଞ ଥିଲେ । ତାଙ୍କ ପଡ଼ିଶା ଗ୍ରାମ ଦାନପୁର ଧାଡ଼ିରେ ଝାଡ଼େଶ୍ୱର କୁଣ୍ଡରୁ ଯେଉଁ ଉଦ୍‌ବୃତ୍ତ ପାଣି ଯାଏ, ସେ ବିଷୟରେ ତାଙ୍କର ଶହେକାଳରୁ ଝଗଡ଼ା । ମାନ୍ଦ୍ରାଜ ହାଇକୋର୍ଟରେ ତଳଗ୍ରାମପଲ୍ଲୀ ଲୋକେ ସପ୍ତାହରେ ତିନିଦିନ ଏବଂ ଦାନପୁର ଲୋକେ ଚାରିଦିନ ପାଣି ନେବେ ବୋଲି ସ୍ଥିର ହୋଇଥିଲେ ମଧ୍ୟ ଦାନପୁର ଲୋକେ ତଳଗ୍ରାମପଲ୍ଲୀଆଡ଼କୁ ଯାଉଥିବା ନାଳକୁ ଏକଦମ୍ ବନ୍ଦ କରିଦେଲେ ଏବଂ ଏମାନଙ୍କ ନାମରେ କେସ୍ କଲେ ଯେ ସେମାନଙ୍କର ପାଣି ନେବାର ଅଧିକାର ନାହିଁ । ମୁନସଫ୍ କୋର୍ଟରେ ହାରିଲେ; କିନ୍ତୁ ସବ୍‌ଜଜ୍ କୋର୍ଟରେ ଆଶ୍ଚର୍ଯ୍ୟଜନକ ଭାବରେ ଜିତିଗଲେ, ଯଦ୍ଦ୍ୱାରା ତଳଗ୍ରାମପଲ୍ଲୀ ଲୋକଙ୍କର ଜୀବନ ନାଟିକା ତୁଟିଗଲା । ଆବହମାନ କାଳରୁ ତଳଗ୍ରାମପଲ୍ଲୀ ଲୋକେ ପାଣି ନେଇଆସିଛନ୍ତି; ଅଥଚ ସବ୍‌ଜଜ୍ କହୁଛନ୍ତି ଯେ ସେମାନେ ନେଇପାରିବେ ନାହିଁ । ଏପରି ସ୍ଥିତିରେ ଗାଁରେ କାନ୍ଦ-ବୋବାଳି ପଡ଼ିଲା । ଏହି ନାଳଦ୍ୱାରା ସେମାନଙ୍କର ପ୍ରାୟ ଦୁଇଶ' ଏକର ଜମିରେ ପାଣି ମାଡ଼ୁଥିଲା ଏବଂ ଏହା ବନ୍ଦ ହୋଇଗଲେ ସେମାନେ ସର୍ବସ୍ୱାନ୍ତ ହୋଇଯିବେ । ମୋ ପାଖକୁ ଆସିଲେ । ମୁଁ ହାଇକୋର୍ଟରେ ରିଭିଜନ କରି ସେମାନଙ୍କୁ ପାଣି ଦିଆଇଦେଲି । ଏଥିରେ ଲୋକମାନଙ୍କର ଯେ କି ଆନନ୍ଦ, କହି ହେବ

ନାହିଁ । ତା ପରେ ଝାଡ଼େଶ୍ୱର ଠାକୁରଙ୍କ ଟ୍ରଷ୍ଟିମାନେ ଦେଉଳର କିଛି ଉନ୍ନତି-କାମ କରୁ ନ ଥିଲେ । ମୁଁ ସେ ଟ୍ରଷ୍ଟିବୋର୍ଡ଼ ବଦଳାଇ ଦେଲି ଏବଂ ଆଜି ଗୋଟିଏ ଉପରମୁଣ୍ଡେ ନାଳ ଖୋଳିବାର ଜଳସେଚନ ବିଭାଗ ତରଫରୁ ବନ୍ଦୋବସ୍ତ କରୁଛି । ଯେଉଁ ସ୍ଥାନରେ ମୋର ଶୈଶବ ଓ କୈଶୋର ସମୟ କଟିଥିଲି ଏବଂ ଯେଉଁ ଜାଗାର ଜଳବାୟୁରେ ମୋର କିଶୋର ଅବସ୍ଥାର ପ୍ରଥମ ସ୍ନେହ ଓ ସ୍ୱପ୍ନ ଜଡ଼ିତ ହୋଇଥିଲା, ସେ ଜାଗାର କିଛି ଉପକାର କରିପାରିଥିବାରୁ ମୋର ମନରେ ଅପୂର୍ବ ଆନନ୍ଦ ହେଲା ଏବଂ ଲୋକମାନଙ୍କର କୃତଜ୍ଞତା ମୋର ଶେଷ ଜୀବନର ଶ୍ରେଷ୍ଠ ଧନ ହୋଇ ରହିଲା । ମୋର ଜନ୍ମସ୍ଥାନ ମାଲୁଦ ପାରିକୁଦର ବନ୍ଧବାନ୍ଧ ଏବଂ ହେଡ଼ କାମ କରିବାରେ ସାହାଯ୍ୟ କରିଥିବାରୁ ମଧ୍ୟ କିଛି ଆନନ୍ଦ ପାଇଥିଲି ଏବଂ ଭବିଷ୍ୟତରେ ଆହୁରି କିଛି କରିବି ବୋଲି ଆଶା ଅଛି । କିନ୍ତୁ କେଶପୁର ଛକ ପାଖରେ ମୋ ଘର ଥିବା ଲୋଂଘର ଗାଁ ଯାହାକୁ ମୁଁ ମଫସଲ ଘର ବୋଲି ବରଣ କରି ନେଇଥିଲି, ସେଠାର ଲୋକମାନଙ୍କୁ ଶତ ଚେଷ୍ଟା ସତ୍ତ୍ୱେ ମୁଁ ଆପଣାର କରିପାରିଲି ନାହିଁ । ମୁଁ ଯେତେବେଳେ ନେଲି ସେହି ଜାଗାର ପ୍ରାଧାନ୍ୟ କିଛି ନ ଥିଲା; କିନ୍ତୁ ମେନ୍‌ରୋଡ଼ କର ଜାଗା, ଖୋଲା ଜଳବାୟୁ, ଓ ମୋର ଜନ୍ମସ୍ଥାନ ଓ ଶୈଶବ ସ୍ଥାନର ମଧ୍ୟବର୍ତ୍ତୀ ସ୍ଥାନ ହୋଇଥିବାରୁ ଏବଂ ମୋର ଏହି ଉଭୟ ସ୍ଥାନ ସହିତ ସମ୍ପର୍କ ଅକ୍ଷୁଣ୍ଣ ରଖିବାକୁ ମୁଁ ଏ ଜାଗା ନେଇ-ଥିଲି । ସେତେବେଳେ ଏ ଜାଗା ଗୋଟେ ଜଙ୍ଗଲପୂର୍ଣ୍ଣ ଥିଲା । ଏହା ବ୍ରହ୍ମୋତର ଇନାମ ଗାଁ ଥିବାରୁ ଏବଂ ଏଠା ଇନାମଦାରମାନେ ଅଧିକାଂଶ ମୋର ବନ୍ଧୁ-ବାନ୍ଧବ ଥିବାରୁ ଏବଂ ଏହି ଗାଁରେ ଆମର ପୂର୍ବପୁରୁଷମାନେ ମାଲୁଦ ଇଲାକାକୁ ଯିବା ପୂର୍ବରୁ ବାସ କରୁଥିବାରୁ ମୁଁ ଏହି ଜାଗାଟିକୁ ମୋର ମଫସଲ ଘର ଭାବେ ବାଛିଲି । ସେତେବେଳେ ୧୯୪୭ ସାଲ । ମୁଁ ଭଞ୍ଜନଗରରେ ଥାଏ । ଏ ବାଟେ ଯିବା-ଆସିବା କଲାବେଳେ ଏହି ଜାଗାଟି ମୋର ମନକୁ ଖୁବ୍ ପାଇଲା । ଏହାର ସେତେବେଳେ ବର୍ତ୍ତମାନ ନଥିଲା; କିନ୍ତୁ ଭବିଷ୍ୟତ ଥିଲା । ଏହି ସୁଦୂର ଭବିଷ୍ୟତକୁ ଲକ୍ଷ୍ୟ ରଖି ମୁଁ ଏହାକୁ ନେଲି । ବ୍ରାହ୍ମଣ ମହାଜନମାନେ ସେମାନଙ୍କର ଏ ପଡ଼ିତ ଓ ଜଙ୍ଗଲ ଜାଗାକୁ ଦେବାକୁ ଉତ୍କଣ୍ଠିତ ଥିଲେ । ମାହାଳିଆ ଏ ଜାଗା ନେବାକୁ ଲୋକ ନ ଥିଲେ । ମୁଁ ଯେତେବେଳେ ପଇସା ଦେଇ ନେଉଛି, ସେମାନେ ଖଣ୍ଡେ ଖଣ୍ଡେ ଜାଗା ରେଜିଷ୍ଟ୍ରି କରିଦେଲେ ଏବଂ ସେମାନେ ଯାହା କହିଲେ ମୁଁ ଦେଲି । ଏହି ଅପନ୍ତରା ଜଙ୍ଗଲ ନେଇ କାଟି ବାଡ଼ବନ୍ଧ କଲି । ଏଥିରେ ପ୍ରାୟ ୧୦ ବର୍ଷ ଲାଗିଗଲା । ଏହାର ଆୟତନ ଥିଲା ୮ ଏକର । ଗୋଟିଏ ଚେତର ଗାଡ଼ିଆ

ଥିଲି । ଦଶହଜାର ଟଙ୍କା ଖର୍ଚ୍ଚ କରି ଏହାକୁ ଖୋଳାଇଲି । ଏହାର ଆୟତନ ପ୍ରାୟ ଏକରେ । ଏଥିରେ ମାଛ ଛାଡ଼ିଲେ ବଢ଼ିଯାଉଛି । ଖରାଦିନେ ମଣିଷେ ପାଣି ରହୁଛି ଏବଂ ଏ ମରୁଡ଼ି ଜଳାଭାବ ଇଲାକାର ପ୍ରାୟ ଶହେ ଲୋକ ଏଠି ରୋଜ ଗାଧୋଆନ୍ତି । ବାହାର ଲୋକ ଯେଉଁମାନେ ଆସନ୍ତି, ମୁଁ ଗୋଟିଏ ବଡ଼ିଆ ଜଳକାର୍ଯ୍ୟ କରିଛି ବୋଲି ପ୍ରଶଂସା କରନ୍ତି । କିନ୍ତୁ ସ୍ଥାନୀୟ ଲୋକଙ୍କ କୌଣସି କଥାରେ ମନ ତୃପ୍ତି ନାହିଁ । ବ୍ରାହ୍ମଣମାନେ ଭାବନ୍ତି, ମୁଁ ତାଙ୍କର ଛକଜାଗାଟି ନେଇଗଲି । ଯେଉଁମାନେ ବିକିଥିଲେ, ସେମାନଙ୍କ ଉତ୍ତରାଧିକାରୀମାନେ ମୋତେ ଈର୍ଷାଚକ୍ଷୁରେ ଦେଖନ୍ତି । ଚାଷୀମାନଙ୍କର ଦୁଃଖ ଯେ ଏହି ଜାଗା ଥିଲେ ସେମାନେ ଚାଷ କରିଥାନ୍ତେ । ମୁଁ ଅନେକ ଟଙ୍କା ଖର୍ଚ୍ଚ କରି ଏ ଜାଗାରେ ନିଜର ହଳବଳଦ ରଖି ଫସଲ କରୁଥିବାରୁ ସେମାନଙ୍କ ଚକ୍ଷୁଶୂଳ ହୋଇଛି । ଏପରି ଅବସ୍ଥାରେ ସେମାନେ ଯେ ମୋତେ ଭୋଟ ନ ଦେଲେ ଏବଂ ଅନ୍ୟମାନଙ୍କୁ ଭୋଟ ନ ଦେବାକୁ ପ୍ରବର୍ତ୍ତାଇଲେ, ଏଥିରେ ଆଶ୍ଚର୍ଯ୍ୟ କଥା କିଛି ନାହିଁ । ମୁଁ ଏହି ଜାଗାକୁ ପ୍ରାୟ ୧୫ ଦିନରେ ଥରେ ଯାଇ ଯାହା ହାଇରାଣ ଖର୍ଚ୍ଚାନ୍ତ ହେଉଛି, ଯାହା ଖର୍ଚ୍ଚ କରୁଛି ସେହି ଦରରେ କିଏ ଏହାକୁ ଖରିଦ କରିନେଲେ ଗଙ୍ଗାରେ ସ୍ନାନ କରନ୍ତି । କିନ୍ତୁ ଏ ଗରିବ ଦେଶରେ ସେପରି ଲୋକ ନାହିଁ । ଖାଲି ଖର୍ଚ୍ଚ ଏବଂ କିଛି ରୋଜଗାର ନ ଥିବାରୁ ମୁଁ ଏହି ରୋଡ଼ ପାଖରେ କେତୋଟି ଘର କରି ଦୋକାନୀମାନଙ୍କୁ ଭଡ଼ା ଦେଇଛି । ବାରମ୍ବାର ମାଗି ମଧ୍ୟ ଭଡ଼ା ମିଳେ ନାହିଁ । କିଏ ଭଡ଼ା ବାକି ରଖି ପଳେଇଯାଏ । ଏହା ସତ୍ତ୍ୱେ ମୋର ଏ ଘର ସ୍ଥାନୀୟ ଲୋକଙ୍କ ଚକ୍ଷୁରେ ଯାଏ ନାହିଁ । ଏହି ଗାଁର ସ୍କୁଲର ଗୃହ ବର୍ଷି ପଡ଼ିଥିଲା । ମୁଁ ଚେଷ୍ଟା କରି ଆଜବେଷ୍ଟୋଜ ଛାତ କରାଇ ଦେଇଛି । ତେବେ ମଧ୍ୟ ଶାନ୍ତି ନାହିଁ । ଏ ଗାଁରେ ୨୧ଟି ବୁଲାଡଣ୍ଡି ଲୋକଙ୍କର ବହୁତ କ୍ଷତି କରୁଥିଲେ । ସେମାନଙ୍କୁ ପଡ଼ରଙ୍କ ହାତରେ ବଦାୟ କଲି । ଫସଲ-ରକ୍ଷା ସକାଶେ କାଞ୍ଜିଆଡ଼ର ବସାଇଲି । ତେବେ ମଧ୍ୟ ପ୍ରଶଂସା ନାହିଁ । ଏହି ଜାଗାର ଲୋକଙ୍କୁ ମୋର କରି ନ ପାରିବାରୁ ଶେଷରେ ଚିଲିକା ଭିତରେ ଥିବା ମୋର ଜନ୍ମସ୍ଥାନ ବୃନ୍ଦାବନରେ ଗୋଟିଏ ଘର କଲି । ଯିବା ଆସିବାର ଅସୁବିଧା ହେଲେ ମଧ୍ୟ ଯେଉଁ ଜାଗାରେ ସ୍ନେହ-ସହାନୁଭୂତି ପାଇ ପାରିବି, ସେଠାକୁ ଯିବାକୁ ମୋର ଅନ୍ତର କାନ୍ଦିଲା । ଆଉ ଗୋଟିଏ ଜାଗା ହେଉଛି ମୋର ଶୈଶବର ତନଗ୍ରାମପଲ୍ଲୀ, ଯେଉଁଠି ଲୋକମାନେ ମୋତେ ଦେବତା ପରି ପୂଜା କରନ୍ତି ।

ବର୍ତ୍ତମାନ ମୁଁ ଜୀବନ-ସନ୍ଧ୍ୟାରେ ପହଞ୍ଚିଛି । ଅତୀତକୁ ସମୀକ୍ଷା କରି ଭବିଷ୍ୟତକୁ ମଧ୍ୟ ଦୃଷ୍ଟି ପକାଉଛି । ବୟସ ୭୫ ହେଲେ ମଧ୍ୟ ଶରୀରରେ ସାମର୍ଥ୍ୟ

ଅଛି, ମନରେ ବଳ ଅଛି । ସ୍ମରଣଶକ୍ତି କମିଯାଇଥିଲେ ମଧ୍ୟ ବୁଦ୍ଧି କାମ କରୁଛି । ଜୀବନପଥ ଆହୁରି ସରିନାହିଁ । ତେବେ ଘଟଣାବହୁଳ ଜୀବନ କଟିଯାଇଛି । ଜୀବନ-ନୌକାର ହାଉଲରେ ବିଶ୍ରାମ ନେଉଛି । ନୌକା କାଳ-ସ୍ରୋତରେ ଭାସି ଭାସି ଯାଉଛି । ଏହି ଧୀରମନ୍ଥର ଗତିରେ ଯାଉ ଯାଉ ଯଦି କିଛି ଘଟଣା ଘଟେ, ପରେ ଲେଖିବ ବୋଲି ଆଶା ଅଛି । କିନ୍ତୁ ପ୍ରଧାନ କଥା ଏଇଠି ଶେଷ କଲି । ପାଠକମାନଙ୍କ ସମୟ ନଷ୍ଟ କରିଥିବାରୁ କ୍ଷମା ଦେବେ ।

—ବିଦାୟ—